# ଭୋଳାର ଆତ୍ମସ୍ମୃତି



—ବିଶୁଦ୍ଧାନନ୍ଦ

ଜୟ ଗୁରୁ

# ପରିବର୍ଦ୍ଧିତ ସଂସ୍କରଣର ମୁଖବନ୍ଧ

ଆନନ୍ଦମାନନ୍ଦକରଂ ପ୍ରସନ୍ନଂ, ଜ୍ଞାନ ସ୍ୱରୂପଂ ନିଜବୋଧ ଯୁକ୍ତଂ
ଯୋଗୀନ୍ଦ୍ରମୀଡ୍ୟଂ ଭବରୋଗବୈଦ୍ୟଂ ଶ୍ରୀମଦ୍‌ଗୁରୁଂ ନିତ୍ୟମହଂ ଭଜାମି ।

ଉତ୍କଳ, ବଙ୍ଗ, ଏବଂ ଆନ୍ଧ୍ର ପ୍ରଦେଶବାସୀ ଶତାଧିକ ଧର୍ମପ୍ରାଣ ଭାଇ ଭଉଣୀଙ୍କର ଆଗ୍ରହ ସଦ୍‌ଗୁରୁ ଶ୍ରୀମତ୍ ସ୍ୱାମୀ ବିଶୁଦ୍ଧାନନ୍ଦ ସରସ୍ୱତୀଙ୍କ ଆତ୍ମଜୀବନୀ 'ଭୋଳାର ଆତ୍ମସ୍ମୃତି' ଓଡ଼ିଆ ଭାଷାରେ ପ୍ରକାଶିତ ହେଲା । ବଙ୍ଗ ଭାଷାରେ ଶ୍ରୀମତ୍ ଗୁରୁଦେବଙ୍କର ସ୍ୱହସ୍ତ ଲିଖିତ ଜୀବନଚରିତ ଏବଂ ତଦୀୟ ଶ୍ରୀମୁଖନିଃସୃତ ବାଣୀ ଓ ଅନୁଭୂତିର ସମନ୍ୱୟରେ ଏହା ରଚିତ । ଦୁଇ ବର୍ଷ ପୂର୍ବେ ଏହାର କେତେକାଂଶ ପ୍ରକାଶିତ ହୋଇଥିଲା । ଇଦାନୀଂ ପୂର୍ଣ୍ଣାଙ୍ଗ ରୂପେ ଏହା ପ୍ରକାଶିତ ହୋଇଥିବାରୁ ଆତ୍ମଜ୍ଞାନପିପାସୁ ପାଠକମାନଙ୍କର ଆବଶ୍ୟକତା ପୂରଣ କରିବ ବୋଲି ଆଶା କରାଯାଏ ।

ତତ୍କାଳୀନ ବିହାର ପ୍ରଦେଶର ମାନଭୂମି ବା ଆଧୁନିକ ପଶ୍ଚିମ ବଙ୍ଗର ପୁରୁଲିଆ ଜିଲ୍ଲା ଅନ୍ତର୍ଗତ ଲଧୂଡ଼ୁକା ଗ୍ରାମରେ ୧୯୦୬ ମସିହା ଫେବୃୟାରୀ ମାସ ୨୬ ତାରିଖ (ଫାଲ୍‌ଗୁନ ଶୁକ୍ଳ ଚତୁର୍ଥୀ, ମଙ୍ଗଳବାର) ଦିନ ଆମର ପୂଜ୍ୟ ଗୁରୁଦେବ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀଯୁକ୍ତ ଲଳମୋହନ ଗଙ୍ଗୋପାଧ୍ୟାୟ । ମାତା ଶାରଦାସୁନ୍ଦରୀ ଦେବୀଙ୍କ କୋଳକୁ ଆସିଥିଲେ ଗୋଟିଏ କନ୍ୟା ଓ ତିନି ପୁଅ । କନିଷ୍ଠ ପୁତ୍ର ଭୋଳାନାଥହିଁ ପରବର୍ତ୍ତୀ କାଳରେ ସ୍ୱାମୀ ବିଶୁଦ୍ଧାନନ୍ଦ ସରସ୍ୱତୀ ନାମରେ ପରିଚିତ ହୁଅନ୍ତି ।

ଭୋଳାନାଥଙ୍କୁ ଦୁଇମାସ ହୋଇଥିବା ଅବସ୍ଥାରେ ତାଙ୍କ ଜନନୀ ଇହ-ଲୀଳା ସାଙ୍ଗ କରନ୍ତି । ମାତୃହୀନ ଶିଶୁର ପରିଚର୍ଯ୍ୟା କରିବା ପିତାଙ୍କ ପକ୍ଷେ ଅସାଧ୍ୟ ହୋଇପଡ଼େ । ସାନ ମାମୁ ଶ୍ରୀଯୁକ୍ତ ଗଦାଧର ମିଶ୍ରଙ୍କଠାରୁ ଏହି ଦୁଃସମୟରେ ଲାଭ ହୁଏ ଅମୂଲ୍ୟ ସହାନୁଭୂତି ଓ ସାହାଯ୍ୟ । ମାମୁ ଶିଶୁଟିକୁ ନିଜ ଗ୍ରାମ ମହେଶପୁରକୁ ନେଇଯାଆନ୍ତି । ସେଠାରେ ମାଇଁମାନଙ୍କଦ୍ୱାରା ଲାଳିତ ପାଳିତ ହୋଇ ଭୋଳାନାଥ କୈଶୋରରେ ଉପନୀତ ହୁଅନ୍ତି । ଉପନୟନ କରାଇବାର କିଛିକାଳ ପରେ ତାଙ୍କ ପିତାଙ୍କର ପରଲୋକ ହୁଏ ।

ବାଳକ ଭୋଳାନାଥ ଥିଲେ ଖୁବ୍ ଲାଜକୁଳା ଓ ସରଳ ପ୍ରକୃତର । ଅଧିକାଂଶ ସମୟ ସେ ସ୍ତ୍ରୀ ଲୋକମାନଙ୍କ ଗହଣରେ ରହି ଯେପରି ନିଜ ମା'ଙ୍କୁ ଖୋଜିବୁଲୁଥିଲେ । ବାଲ୍ୟାବସ୍ଥାରେ ତାଙ୍କର ସ୍ମୃତି ଶକ୍ତି ଖୁବ୍ ଦୁର୍ବଳ ଥିଲା । ତେଣୁ ପାଠଶାଳାକୁ ଯାଇ ଲେଖା ପଢ଼ା ଶିଖିବାରେ ସେ ଆଦୌ ଆଗ୍ରହୀ ନ ଥିଲେ । ରାମାୟଣ ଓ ମହାଭାରତ ପାଠ ଛଡ଼ା ଅନ୍ୟ କୌଣସି ଆନୁଷ୍ଠାନିକ ଶିକ୍ଷା ଲାଭର ସୁଯୋଗ ତାଙ୍କର ହୋଇନଥିଲା ।

ପ୍ରାୟ ଷୋଳ ବର୍ଷ ବୟସରୁ ଗତାନୁଗତିକ ସାଂସାରିକ କର୍ମ ପ୍ରତି ଅନାସକ୍ତି ଏବଂ ସାଧୁ ସଙ୍ଗ ପାଇଁ ଆଗ୍ରହ ତାଙ୍କ ଚରିତ୍ରରେ ସ୍ୱାଭାବିକ ଭାବେ ଫୁଟି ଉଠିଥିଲା । ଏତେ ଅଳ୍ପ ବୟସରେ ସେ ଏକା ଏକା ପ୍ରୟାଗ କୁମ୍ଭ-ମେଳା ଦର୍ଶନ କରି ଫେରିଆସିଥିଲେ । ତାଙ୍କଠାରେ ବୈରାଗ୍ୟର ଆଭାସ ପାଇ ମାମୁଁମାନେ ତାଙ୍କୁ ନାନା କର୍ମରେ ଲିପ୍ତ କରିବାକୁ ଚେଷ୍ଟା କରନ୍ତି । ସମୟକ୍ରମେ ତନ୍ତ୍ରଦ୍ୱାରା ଲୁଗାବୁଣା ଶିକ୍ଷା କରିବାକୁ ଭୋଳାନାଥଙ୍କର ସ୍ୱତଃ ଆଗ୍ରହ ଜାତ ହୁଏ । ସେ ନିଜ ଜନ୍ମସ୍ଥାନ ଲଧୂଡ଼ୁକାଠାରେ ତନ୍ତ ବସାଇ ଏବଂ ଲୁଗା ବୁଣି ଋଣଗ୍ରସ୍ତ ହୋଇପଡ଼ିଥିବା ଭାଇମାନଙ୍କୁ ଋଣ ଭାରରୁ ମୁକ୍ତ କରନ୍ତି । ଏହା ଫଳରେ ପୈତୃକ ସମ୍ପତ୍ତି ରକ୍ଷା କରିବା ସମ୍ଭବ ହୁଏ । ପରନ୍ତୁ ଏହି ବିଷୟ ଆଶୟ ପ୍ରତି ତାଙ୍କର କୌଣସି ଆଶକ୍ତି ଜାଗେ ନାହିଁ ।

ପ୍ରଥମ ଜୀବନରେ ପଢ଼ା ଶୁଣା ଓ ଭୋଗ ବିଳାସରେ ବୀତସ୍ପୃହ ଭୋଳାନାଥ କର୍ମବିମୁଖ ଅବା ଆଳସ୍ୟପରାୟଣ ହୋଇପଡ଼ିବେ ବୋଲି ମାମୁଁଙ୍କର ଆଶଙ୍କା ଥିଲା । କିନ୍ତୁ କେବଳ ଲୁଗାବୁଣା କାମରେ ନୁହେଁ, କ୍ରମେ କୃଷି ଓ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କର କର୍ମଦକ୍ଷତା ଓ ଅଧ୍ୟବସାୟର ପରିଚୟ ପାଇ ସମସ୍ତେ ଆଶ୍ଚର୍ଯ୍ୟ ହୁଅନ୍ତି । ସଂସାରୀ ମାତ୍ରକେ କର୍ମ ମାଧ୍ୟମରେ ଜୀବିକାର୍ଜ୍ଜନ କରନ୍ତି, କିନ୍ତୁ ପ୍ରତ୍ୟେକ ବିଚକ୍ଷଣ କର୍ମୀ ଯେ ଗୃହସ୍ଥ ହେବାକୁ ବାଧ୍ୟ ନୁହନ୍ତି ଏହା ଭୋଳାନାଥଙ୍କ ପରବର୍ତ୍ତୀ ଜୀବନରେ ପ୍ରମାଣିତ ହୋଇଥିଲା ।

ମାମୁଙ୍କ ଗ୍ରାମଠାରୁ ଅନତିଦୂରରେ ଦୋକାନଟିଏ ଦେଇ ବ୍ୟବସାୟ କଲାବେଳେ ଥରେ ରାସମେଳା କରୁଥିବା ଜଣେ ସାଧୁଙ୍କର ଦର୍ଶନ ପାଇଁ ଭୋଳାନାଥ ଆକୃଷ୍ଟ ହୁଅନ୍ତି । ଜାତିରେ ବ୍ରାହ୍ମଣ ବୋଲି ଅଭିମାନ ଜାଗିବାରୁ



ଶ୍ରୀମତ୍ ସ୍ୱାମୀ ବିଶୁଦ୍ଧାନନ୍ଦ ପରମହଂସ

ସେ ସାଧୂଙ୍କର ପଦ ବନ୍ଦନା ନ କରି ଗୋଟିଏ କୋଣକୁ ବସି ରହନ୍ତି । ସାଧୂଟି କିନ୍ତୁ ସ୍ୱତଃ ଭୋଳାନାଥଙ୍କ ପାଖରେ ପହଞ୍ଚି ତାଙ୍କର ତତ୍କାଳୀନ କର୍ମ ଓ କାର୍ଯ୍ୟଭିମାନର ବିରୋଧ ଧରାଇ ଦେବାକୁ ସେ ସବୃନ୍ଦନ ପାଇଁ ବ୍ୟବସାୟ ବୃତ୍ତିକୁ ବିରତ ହୁଅନ୍ତି ।

ଆଉ ଏକ ଘଟଣା ମାଧ୍ୟମରେ ତାଙ୍କର ସଂସାର ତ୍ୟାଗ ଓ ଯତିବ୍ରତ ଗ୍ରହଣର ପଥ ସୁଗମ ହୋଇପଡ଼େ । ମାମୁ ତାଙ୍କ ରହିବା ପାଇଁ ଗୋଟିଏ ଘର ତିଆରି କରାଉଥାନ୍ତି । ଦିନେ ମିସ୍ତ୍ରୀ ଆସିନଥିବା ଅବସରରେ ଭୋଳାନାଥ ନିଜେ ଖୁବ୍ ଉତ୍ସାହରେ ପାଚେରି ଗଢ଼ା କାମରେ ହାତ ଦେଲେ । ଦୁଇ ପ୍ରହର ଖରାରେ କାମ କରିସାରି ସେ ଦିନ ଯେଉଁ କ୍ଳାନ୍ତି ତାହାହିଁ ଅତର୍କିତ ଭାବେ ଆଣିଦେଲା ତାଙ୍କମନରେ ଜୀବନ ଏବଂ ସଂସାରର ଅନିତ୍ୟତା ବୋଧ । ସେ ଭାବିବାକୁ ଲାଗିଲେ ଯେ, ଦିନେ ନା ଦିନେ ଯଦି ମନୁଷ୍ୟର ଦେହପାତ ହେବା ସୁନିଶ୍ଚିତ, ତେବେ ଘର ତିଆରି ଏବଂ ଅନ୍ୟାନ୍ୟ ଆନୁସଙ୍ଗିକ କୃଚ୍ଛ୍ର ସାଂସାରିକ କର୍ମ ସମ୍ପାଦନର ଅଭିପ୍ରାୟ କଣ ? ଅନିତ୍ୟ ମାନବ ଜୀବନର ସାର୍ଥକତା ବା କେଉଁଠି ? ସେ ପୁଣି ଲକ୍ଷ୍ୟ କଲେ ଯେ ସଂସାରବାସୀ ସାଧାରଣ ଜୀବଠାରୁ ଏପରି ପ୍ରଶ୍ନର ଉତ୍ତର ପାଇବା ହୁଏତ ସମ୍ଭବ ନୁହେଁ, ତେଣୁ ସଂସାର-ବିରାଗୀ ସାଧୁଙ୍କ ପାଖକୁ ଯାଇ ଏହାର ମୀମାଂସା କରିବାକୁ ହେବ । ଅତଏବ ସେ ଅନତିବିଳମ୍ବେ ପୂର୍ବ ଭାରତ ଖଣ୍ଡର ବିଖ୍ୟାତ ସାଧୁ ସ୍ୱାମୀ ନିଗମାନନ୍ଦ ପରମହଂସଙ୍କ ପ୍ରତିଷ୍ଠିତ ଖଡ଼କୁସମା ଆଶ୍ରମକୁ ଯାଇ ଆଶ୍ରମ ଅଧ୍ୟକ୍ଷ ଶ୍ରୀମତ୍ ସ୍ୱାମୀ ସଦାନନ୍ଦ ସରସ୍ୱତୀଙ୍କ ସଙ୍ଗେ ସାକ୍ଷାତ କଲେ । ସ୍ୱାମୀଜୀ ଜଣେ ଉଚ୍ଚସ୍ତରର ସାଧୁ ଓ ଯୋଗୀ ହୋଇଥିବାରୁ ଭୋଳାନାଥ ତାଙ୍କ ଉପଦେଶ ଲାଭ କରି ପ୍ରାୟ ତିନି ଚାରିବର୍ଷ ମଧ୍ୟରେ ଯମ ନିୟମର ଅନୁଶୀଳନ ଓ ତ୍ୟାଗ ତିତିକ୍ଷା ଅଭ୍ୟାସଦ୍ୱାରା କ୍ରମଶଃ ବ୍ରହ୍ମଚର୍ଯ୍ୟ ପାଳନ ଓ ଚିତ୍ତଶୁଦ୍ଧି ପଥରେ ଅଗ୍ରସର ହେବାକୁ ଲାଗିଲେ ।

୧୯୩୪ ମସିହା ମାର୍ଚ୍ଚ ମାସରେ ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ ସରସ୍ୱତୀ ଦେବ ସେହି ଆଶ୍ରମଠାକୁ ସ୍ୱାଗତ କରିଥାଆନ୍ତି । ଗୃହସ୍ଥ ଶିଷ୍ୟଙ୍କ ଦୀକ୍ଷା ଶେଷରେ ଆଶ୍ରମାନ୍ତେବାସୀ ବ୍ରହ୍ମଚାରୀ ସେବକଙ୍କ ମଧ୍ୟରୁ ଅନ୍ୟୂନ ଜଣକୁ ଦୀକ୍ଷା ଦେବାପାଇଁ ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍କଳ୍ପ ଜ୍ଞାତ ହୋଇ ଆଶ୍ରମାଧ୍ୟକ୍ଷ ତତ୍ସ୍ଥ

ଦେବୁ ଉପଯୁକ୍ତ ନୁହନ୍ତି ବୋଲି ଠାକୁରଙ୍କୁ ଜଣାଇଲେ । ଶ୍ରୀ ଶ୍ରୀ ଠାକୁର କିନ୍ତୁ ସ୍ୱେଚ୍ଛାରେ ଭୋଳାନାଥଙ୍କୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେବାକୁ ଚାହିଁବାରୁ ଅଧ୍ୟକ୍ଷ ଏହାଙ୍କର ଶିକ୍ଷାର ଅଭାବ ଏବଂ ସରଳ ସ୍ୱଭାବର ଦୁହାଇ ଦେଇ ଏ କଥାରେ ଆପତ୍ତି କରନ୍ତି । ଅଧ୍ୟକ୍ଷଙ୍କଠାରୁ ଏପରି ମନ୍ତବ୍ୟ ଶୁଣି ଭୋଳାନାଥ ଭାବିଲେ ସେ ବୋଧହୁଏ ଦୀକ୍ଷା ନେବାପାଇଁ ଉଚିତ ଅଧିକାର ଅର୍ଜନ କରିନାହାନ୍ତି । କିନ୍ତୁ ଠାକୁର ଆଦେଶ କଲେ, "ସଦାନନ୍ଦ, ଭୋଳାକୁ ଡାକିରେ ବସାଇ ଏଠାକୁ ଆଣିବାକୁ ହେବ । ଆଶ୍ରମରେ ଆଜି ବ୍ରହ୍ମଚର୍ଯ୍ୟ ଦୀକ୍ଷା ଅବଶ୍ୟ ଉପସ୍ଥିତ ଏବଂ ଯୁବକ ଭୋଳାନାଥହିଁ ସେଥିରେ ଅଭିଷିକ୍ତ ହେବାପାଇଁ ଯୋଗ୍ୟ ।" ଏକଥା ଶୁଣି ଉଚ୍ଛ୍ୱସିତ ଆନନ୍ଦ ମଧ୍ୟରେ ସଦାନନ୍ଦ ମହାରାଜ ଭୋଳାନାଥଙ୍କୁ ନେଇ ଶ୍ରୀ ଶ୍ରୀ ଠାକୁରଙ୍କୁ ସମର୍ପଣ କରନ୍ତି । ଭୋଳା କିନ୍ତୁ ସମ୍ଭ୍ରମରେ ଏବଂ ଭୟରେ ଉଚିତ ଦୀକ୍ଷା ଗ୍ରହଣ କରିବା ପାଇଁ ଅନିଚ୍ଛୁକ—ଭାବିଲେ ଗୁରୁଦତ୍ତ କଠିନ ମନ୍ତ୍ର ତାଙ୍କପରି କ୍ଷୀଣ ଧୀଶକ୍ତିସମ୍ପନ୍ନ ବ୍ୟକ୍ତି ପକ୍ଷରେ ମନେ ରଖିବା ଓ ଆବୃତ୍ତି କରିବା ଅସାଧ୍ୟ ହୋଇପଡ଼ିବ ! ଭୋଳାନାଥଙ୍କର ଏପରି ଅବସ୍ଥା ଅନ୍ତର୍ଯ୍ୟାମୀ ଓ କୃପାଳୁ ଠାକୁର କ୍ଷଣକ ପାଇଁ ଧ୍ୟାନସ୍ଥ ହେଲା ପରେ ଅଭୟ ଦେଇ ବୁଝାଇଲେ, "ଭୋଳା ! ତୁମକୁ ଚେଷ୍ଟାକରି ମନ୍ତ୍ର ମନେ ରଖିବାକୁ ହେବନାହିଁ, ମୋର ଶ୍ରୀଗୁରୁଦେବ ସର୍ବଦା ତୁମର ସ୍ମୃତିକୁ ଚୈତନ୍ୟମୟ କରି ରଖିବେ ।" ସତକୁ ସତ ଦୀକ୍ଷା ନେବାର କିଛିଦିନ ପରେ ଏକଦା ଗୁରୁଦତ୍ତ ମନ୍ତ୍ର ବିସ୍ମୃତ ହେବାରୁ ଭୋଳା ଚୈତନ୍ୟ ବ୍ରହ୍ମଚାରୀଙ୍କର ବାହ୍ୟ ଚୈତନ୍ୟ ଲୋପ ହୋଇଯିବା ଏବଂ ମନ୍ତ୍ରର ଅନ୍ତର୍ଜପ ନିଜେ ସ୍ୱତଃ ଅବିରାମ ଭାବରେ ଚାଲିବା ଏକ ଉଲ୍ଲେଖଯୋଗ୍ୟ ଅସାଧାରଣ ଘଟଣା ।

୧୯୩୫ ମସିହା ବୈଶାଖ, ଜ୍ୟେଷ୍ଠ ମାସର ପ୍ରାକ୍କାଳରେ ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦଙ୍କ ସ୍ଥୂଳ ଲୀଳାବସାନର କିଛିଦିନ ପୂର୍ବରୁ ଏକ ଅଭାବନୀୟ ପ୍ରସଙ୍ଗ ମାଧ୍ୟମରେ ବ୍ରହ୍ମଚାରୀ ଭୋଳା ଚୈତନ୍ୟଙ୍କର ନାମ ଦୀକ୍ଷା ପର୍ଯ୍ୟନ୍ତ ସାଧନାର ପଥ ନିର୍ଦ୍ଦିଷ୍ଟ ହୋଇଯାଏ । ସ୍ୱପ୍ନାବସ୍ଥାରେ ତାଙ୍କ ସାନି ମାଈଁ (ଗଦାଧର ମାମୁଙ୍କ ସ୍ତ୍ରୀ)ଙ୍କୁ ତାଙ୍କର ପରବର୍ତ୍ତୀ ସାଧନ ଜୀବନର ଭାର ଗ୍ରହଣ କରିବାକୁ ଶ୍ରୀଶ୍ରୀ ଠାକୁର ଅନୁରୋଧ କରିବା ଦେଖି ଭୋଳାନାଥ ବ୍ରହ୍ମଚାରୀଙ୍କର ବିସ୍ମୟର ସୀମା

ରହେ ନାହିଁ । ପ୍ରାୟ ଦୁଇବର୍ଷ ମଧ୍ୟରେ ଗଦାଧର ମାମୁଙ୍କ ବିବାହ ହୋଇଲା; ସତ୍ୟ ହୁଏ, ପରନ୍ତୁ ସେତେବେଳକୁ ମାଙ୍କ ଆଧାରରେ ସ୍ୱାମୀଙ୍କର ଅମୂର୍ତ୍ତକର ଆବେଶ ହେବା ଯୋଗୁଁ ମାଙ୍କୁ ନିରବଚ୍ଛିନ୍ନ ଭାବ ସୁଖରେ ନାନା ଭକ୍ତି ସଙ୍ଗୀତ ଗାଇବାକୁ ଲାଗନ୍ତି, ଘଟଣା ଚକ୍ରରେ ବ୍ରହ୍ମଚାରୀଙ୍କୁ ମାମୁଁ ଘରଠାରୁ ଆସିବାକୁ ପଡ଼େ ଏବଂ ମାଙ୍କ ମଧ୍ୟରେ ଈଶ୍ୱର ଅନୁଭୂତି ଲୀଳା ପ୍ରତ୍ୟକ୍ଷ କରି ସେ ବିସ୍ମୟ ବିମୂଢ଼ ହୋଇପଡ଼ନ୍ତି । ଏହା ଭୌତିକ କାଣ୍ଡ ଅବା ଉନ୍ମାଦ ରୋଗ ବୋଲି ଭାବି ପ୍ରଥମେ ସେ ଏଥିପ୍ରତି ଅନାସକ୍ତ ହୋଇ ରହିବାକୁ ଚେଷ୍ଟା କରନ୍ତି । ଅଧିକନ୍ତୁ, ନିଗମାନନ୍ଦ ଠାକୁରଙ୍କର ବ୍ରହ୍ମଚାରୀ ଶିଷ୍ୟ ପକ୍ଷରେ ଜଣେ ଉନ୍ମାଦିନୀ ସ୍ତ୍ରୀ ବିଶେଷତଃ ନିଜ ମାଙ୍କୁ ଦିବ୍ୟଶକ୍ତିସମ୍ପନ୍ନା ବୋଲି ଧରିନେବା ପାଇଁ ତାଙ୍କର ବିବେକ ବାଧାଦିଏ । ଦିନକୁ ଦିନ କିନ୍ତୁ ମାଙ୍କର ଅଲୌକିକ ଚମତ୍କାର ପ୍ରମାଣ ପାଇ ଏବଂ ଶେଷରେ ମାଙ୍କର ମାତ୍ର ନବବର୍ଷ ବୟସ୍କା କନ୍ୟାର ଇଙ୍ଗିତରେ ସେ ମାମୁଁଙ୍କ ବାହାର ଘରେ ଗୋଟିଏ ରାତି ଯାପନ କରିବାକୁ ବାଧ୍ୟ ହୁଅନ୍ତି । ମଧ୍ୟରାତ୍ରିରେ କେହି ଆଘାତ କରି ତାଙ୍କର ନିଦ୍ରା ଭଙ୍ଗ କରିବାରୁ ଅଦୂରସ୍ଥିତ ଗୋଟିଏ ବୃକ୍ଷତଳେ ଅତୁଳ ତେଜୋଦୃପ୍ତ ମଧ୍ୟସ୍ଥା ଦେବୀ ମୂର୍ତ୍ତି ପ୍ରତ୍ୟକ୍ଷ କରି ସେ ବିଶେଷ ଆଶ୍ଚର୍ଯ୍ୟାନ୍ୱିତ ହୁଅନ୍ତି । ନିଜ ମାଙ୍କୁ ଶକ୍ତିର ଆଧାର ଜ୍ଞାନରେ ପୂଜା କରିବାକୁ ଆଦେଶ ଦେଇ ଦେବୀ ଅନ୍ତର୍ହିତା ହୁଅନ୍ତି । ଅତଃପର ବ୍ରହ୍ମଚାରୀଙ୍କ ଜୀବନରେ ବିଷମ ଦ୍ୱନ୍ଦ୍ୱ ଉପସ୍ଥିତ ହୁଏ । ଜୀବନ ପଣ କରିବା ସତ୍ତ୍ୱେ ପରାଜିତ ହୋଇ ଅବଶେଷରେ ସର୍ବସମକ୍ଷରେ ମାଙ୍କର ପାଦ ପୂଜା କରିବାକୁ ସେ ବାଧ୍ୟ ହୁଅନ୍ତି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଏହି ଘଟଣାର ପରିଣାମରେ ଶରୀରସ୍ଥ ନାନା ସୂକ୍ଷ୍ମ ଚକ୍ରକୁ ମାତୃଶକ୍ତି ସହଜେ ବିଚରଣ କରି ତାଙ୍କର ବ୍ରହ୍ମରନ୍ଧ୍ର ଭେଦ କରିଦିଏ ଏବଂ ଫେରେ । ପୁଣି ଶରୀରକୁ ଫେରି ଆସିବାରୁ ତାଙ୍କ ଆତ୍ମସତ୍ତାର ଶିବତ୍ୱ ସ୍ମୃତି ଜାଗି ଉଠିବା ଦ୍ୱାରା ସାଧନା ପଥରେ ତାଙ୍କର ଅଗ୍ରଗତି ତ୍ୱରାନ୍ୱିତ ହୁଏ ।

ଶକ୍ତି ସାଧନାର ସିଦ୍ଧିରେ ଆପ୍ତକାମ ସାଧକବ୍ରହ୍ମଚାରୀ ମାତୃ ଚିନ୍ମୟ ବିଗଳିତ ସୁଧାଧାର ପାନକରି ବୀର ଭାବରେ ମାତାଲ ହୋଇ ଉଠନ୍ତି । ମାଙ୍କର ଦିବ୍ୟ ଭାବୋନ୍ମାଦ ତାଙ୍କ ମଧ୍ୟରେ ସଙ୍କ୍ରମିତ ହେବାରୁ ତାଙ୍କର ସ୍ଥୂଳ

ଶରୀରରେ ଅଷ୍ଟ ସାତ୍ତ୍ୱିକ ବିକାର ପ୍ରକାଶିତ ହୁଏ । ଶକ୍ତିର କ୍ରିୟା ଫଳରେ ସାଧକ ମଧ୍ୟରେ ଜାଗିଉଠେ ଯେଉଁ ଶୈବ ଚେତନା ତାର ସ୍ଥାୟିତ୍ୱ ପାଇଁ ପ୍ରୟୋଜନ ସକଳ ସଂଶୟର ପରପାରରେ ଅପରୋକ୍ଷାନୁଭୂତି ଉପରେ ପ୍ରତିଷ୍ଠିତ ବ୍ରହ୍ମଜ୍ଞାନ । ଅଳ୍ପକାଳ ମଧ୍ୟରେ ସାଧକଙ୍କର ମନରେ ପୁନର୍ବାର ଜାଗେ ସଂଶୟ ତଥା ଅପୂର୍ଣ୍ଣତା । ମାଈଙ୍କଠାରୁ ଅନୁମତି ନେଇ ଏଥରକ ପାଣ୍ଡୁଇ ଗ୍ରାମସ୍ଥ ନନ୍ଦକ୍ଷେପାଙ୍କ ସଙ୍ଗେ ଶକ୍ତି ପ୍ରସାଦ ଲବ୍ଧ ଅନୁଭୂତିର ମୀମାଂସା କରିବାକୁ ସେ ବାହାରି ପଡ଼ନ୍ତି । କ୍ଷେପାଙ୍କ ନିର୍ଦ୍ଦେଶରେ ନିକଟବର୍ତ୍ତୀ ଏକ ପାହାଡ଼ର ନିଭୃତ ଗୁମ୍ଫାରେ ଅଭୁକ୍ତ ହୋଇ ସାଧନ ଏବଂ ରାତ୍ରିର ପ୍ରାୟ ପ୍ରଥମ ପ୍ରହର ବସି ରହିଲା ପରେ ଦିବ୍ୟକାନ୍ତି ଋଷ୍ୟଶୃଙ୍ଗ ମୁନିଙ୍କର ଆବିର୍ଭାବ ହୁଏ । ସକଳ ନିଗମାଗମର ସାରଭୂତ ବ୍ରହ୍ମଜ୍ଞାନର ଉପଦେଶ ସାଧକ ତାଙ୍କ ଠାରୁ ପ୍ରାପ୍ତ କରନ୍ତି । ସାଧକଙ୍କର ବିବିଧ ତତ୍ତ୍ୱ ଜିଜ୍ଞାସା ସତ୍ୟଦ୍ରଷ୍ଟା ଋଷିଙ୍କର ଜ୍ଞାନଦୀପ୍ତ ଉପଦେଶବାଣୀ ଦ୍ୱାରା ନିରସ୍ତ ହୁଏ । ବ୍ରହ୍ମର୍ଷିଙ୍କ ସାଧନ ଜୀବନରେ ଶ୍ରବଣଦ୍ୱାରା ଅବତୀର୍ଣ୍ଣ ହୋଇ ଆସିଥିବା ଏହି ନୂତନ ଜ୍ଞାନାଲୋକ ବିମଣ୍ଡିତ ବ୍ରାହ୍ମୀଚେତନାର ଅବଧାରଣା ଓ ଆତ୍ମୀକରଣ ପାଇଁ ଆନୁଷଙ୍ଗିକ ସାଧନକ୍ରିୟା ହେଲା ନିରବଚ୍ଛିନ୍ନ ମନନ ଏବଂ ଯୋଗ ସମାଧିଲବ୍ଧ ନିଦିଧ୍ୟାସନ । ପରବର୍ତ୍ତୀ କେତୋଟି ବର୍ଷ ମିତାହାର ଏବଂ ଗୁରୂପଦିଷ୍ଟ ମନ୍ତ୍ର ଚୈତନ୍ୟ ପ୍ରଣାଳୀ ସାହାଯ୍ୟରେ ସାଧକ ଚରମ ଯୋଗସମାଧିରେ ନିମଗ୍ନ ରହି ଜଡ଼ ଓ ଚେତନ ସମ୍ବନ୍ଧୀ ସୂକ୍ଷ୍ମାତିସୂକ୍ଷ୍ମ ତତ୍ତ୍ୱ ସମୂହ ଉପଲବ୍ଧି କରନ୍ତି । କିଛିକାଳ ପରେ ତନ୍ତ୍ର, ଜ୍ଞାନ ଓ ଯୋଗସିଦ୍ଧ ଭଗବାନ ତରୁଣ ବ୍ରହ୍ମର୍ଷିଙ୍କ ଭାବଜଗତର ଲୀଳା ରହସ୍ୟ ଆସ୍ୱାଦନ କରିବାର ସୁଯୋଗ ମଧ୍ୟ ମିଳେ । ହରିଦ୍ୱାରଠାରେ କୁମ୍ଭ-ମେଳା ଦର୍ଶନ କରିସାରି ବଦ୍ରୀନାରାୟଣଧାମ ପରିବ୍ରାଜନ ପଥରେ ପ୍ରେମସିଦ୍ଧା କରୁଣାମୟୀ ଯୋଗିନୀଙ୍କ ସହିତ ସାକ୍ଷାତକାର ହେବାପରେ ଈଶ୍ୱରୀୟ ଲୀଳା ବିଚର୍ଚ୍ଚିତ ନିତ୍ୟଲୋକର ଗୁରୁପୀଠୋପରି ସେ ପ୍ରତିଷ୍ଠିତ ହୁଅନ୍ତି । ତଦବଧି ବହୁ ତତ୍ତ୍ୱଜିଜ୍ଞାସୁ ସାଧକ ଓ ସାଧାରଣ ଗୃହସ୍ଥ ତାଙ୍କର ଶରଣାପନ୍ନ ହୋଇ ଏବଂ ତାଙ୍କଠାରୁ ପୂର୍ଣ୍ଣାଙ୍ଗ ଯୋଗର ଦୀକ୍ଷା ଗ୍ରହଣ କରି ସାଧନ ଭଜନରେ ଲିପ୍ତ ଅଛନ୍ତି ।

ପ୍ରାୟ ଦ୍ୱାଦଶ ବର୍ଷ ପର୍ବତ ଗୁହାରେ ବାସ କଲ ପରେ ପୁନଶ୍ଚ ସେ ଖଡ଼୍‌କୁସୁମା ଆଶ୍ରମଠାକୁ ଫେରି ଆସନ୍ତି ଓ କିଛିଦିନ ପାଇଁ ଆଶ୍ରମର ପରିଚାଳନା ଦାୟିତ୍ୱରେ ରହି କୃଷି, ଗୋସେବା ଆଦି ବିଭାଗ ମାନଙ୍କର ବହୁବିଧ ଉନ୍ନତି ବିଧାନ କରନ୍ତି । ପରବର୍ତ୍ତୀ କାଳରେ ୧୯୬୪ ମସିହା ଆଶ୍ୱିନ ମାସ ମହାଷ୍ଟମୀ ତିଥିରେ ଭୁବନେଶ୍ୱର ନିଗମାନନ୍ଦ ମଠରେ ନିଗମାନନ୍ଦ ପରମହଂସ-ଦେବଙ୍କ ଦ୍ୱାରା ନିର୍ବାଚିତ ଆସାମ ବଙ୍ଗୀୟ ସାରସ୍ୱତ ମଠର ପୂର୍ବତନ ମହନ୍ତ ପୂଜ୍ୟପାଦ ଶ୍ରୀମତ୍ ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀ ମହାରାଜଙ୍କଠାରୁ ବୈଦିକ ସନ୍ନ୍ୟାସ ଲାଭ କରିବାର ସୁଯୋଗ ତାଙ୍କର ଘଟେ । କିନ୍ତୁ ସନ୍ନ୍ୟାସଦାତା ତାଙ୍କର ନିରାଲମ୍ବସ୍ଥିତି ଓ ସାକ୍ଷୀ ଭାବ ଲକ୍ଷ୍ୟ କରି ତାଙ୍କଠାରୁ ଦଣ୍ଡ କମଣ୍ଡଳୁ ପ୍ରତ୍ୟାହାର କରିନିଅନ୍ତି । ଏହାଦ୍ୱାରା ତାଙ୍କର ପରମହଂସତ୍ୱ ମଧ୍ୟ ପ୍ରତିପାଦିତ ହୁଏ । ବହୁ ସାଧୁ ଜନପ୍ରିୟ ସନ୍ନ୍ୟାସାଶ୍ରମୀ ସେହି କୃପାସିନ୍ଧୁ ସଦ୍‌ଗୁରୁ ଶ୍ରୀମତ୍ ସ୍ୱାମୀ ବିଶୁଦ୍ଧାନନ୍ଦ ସରସ୍ୱତୀ ଆମମାନଙ୍କର ବରେଣ୍ୟ ଦୀକ୍ଷାଦାତା ଗୁରୁଦେବ ।

ମେଦିନୀପୁର ଜିଲ୍ଲା ଗଡ଼ବେତା ଷ୍ଟେସନ ନିକଟବର୍ତ୍ତୀ ଝାଡ଼ବଣୀଠାରେ ନିଗମାନନ୍ଦ ସେବାଶ୍ରମ ନାମକ ଏକ କ୍ଷୁଦ୍ର ଏବଂ ମନୋରମ ଆଶ୍ରମ ପ୍ରତିଷ୍ଠା କରି ଶ୍ରୀ ଶ୍ରୀ ଗୁରୁଦେବ ୧୯୬୭ ମସିହାରୁ ଅବସ୍ଥାନ କରି ଆସୁଛନ୍ତି । କଲିକତାର ଶାରଦେଶ୍ୱରୀ ଆଶ୍ରମ ପ୍ରତିଷ୍ଠାତ୍ରୀ ମା ଦୁର୍ଗା ପୁରୀଙ୍କର ଜନୈକା ମନ୍ତ୍ରଶିଷ୍ୟା ସଂସାର ତ୍ୟାଗ କରି ଅନେକ ଦିନ ତାଙ୍କ ନିର୍ଦ୍ଦେଶରେ ସାଧନ ଭଜନ କରିବା ପରେ ତାଙ୍କଠାରୁ ସନ୍ନ୍ୟାସ ଗ୍ରହଣ କରନ୍ତି ଓ ଆନନ୍ଦମୟୀ ସରସ୍ୱତୀ ନାମରେ ଅଭିହିତା ହୋଇ ତାଙ୍କ ସଙ୍ଗେ ଉକ୍ତ ଆଶ୍ରମଠାରେ ବାସ କରୁଛନ୍ତି । ପୁନଶ୍ଚ ୧୯୭୩ ମସିହା ଦୁର୍ଗାପୂଜା ଅବସରରେ ଖଡ଼୍‌କୁସୁମା ଆଶ୍ରମାନ୍ତେବାସୀ ଶ୍ରୀ ଗୁରୁଦାସ ବ୍ରହ୍ମଚାରୀଙ୍କର ଶ୍ରୀ ଶ୍ରୀ ଗୁରୁଦେବଙ୍କଠାରୁ ବୈଦିକ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିବା ସୁଯୋଗ ଲାଭ ହୁଏ । ଶ୍ରୀ ଗୁରୁଦାସଙ୍କର ସନ୍ନ୍ୟାସ ନାମ ରଖାଯାଏ ସ୍ୱାମୀ ବିରଜାନନ୍ଦ ସରସ୍ୱତୀ । ବର୍ଷାଧିକକାଳ ଭାରତ ପରିବ୍ରାଜନ ଓ ବେଦାଧ୍ୟୟନରେ ବ୍ୟାପୃତ ରହିବା ପରେ ଇଦାନୀଂ ସ୍ୱାମୀ ବିରଜାନନ୍ଦ ମେଦିନୀପୁରଠାରେ ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କ ପ୍ରତିଷ୍ଠିତ ଆଶ୍ରମର ଉପାଧ୍ୟକ୍ଷ ଭାବେ ନିଯୁକ୍ତ ଅଛନ୍ତି ।

ଶ୍ରୀ ଶ୍ରୀ ଗୁରୁଦେବଙ୍କ ବାଣୀ ଗମ୍ଭୀର ଜ୍ଞାନଦ୍ୟୋତକ ଅଥଚ ମାଧୁର୍ଯ୍ୟପୂର୍ଣ୍ଣ । ଏହି ବାଣୀର ଉତ୍ସ ଏକ ସ୍ୱତନ୍ତ୍ର ଆଧ୍ୟାତ୍ମ ଭୂମିରୁ ସ୍ୱତଃ ନିଃସ୍ୟନ୍ଦିତ ହୁଏ । ଏଥିରେ ନଥାଏ କୃତ୍ରିମତା କିମ୍ବା ଶାସ୍ତ୍ରଜ୍ଞାନ ଆଧାରିତ ପାଣ୍ଡିତ୍ୟର ଶବ୍ଦାଡମ୍ବର । ତାଙ୍କର ବାଚନ ଭଙ୍ଗୀକୁ ଲକ୍ଷ୍ୟ କଲେ ତାଙ୍କୁ ତତ୍ତ୍ୱଦ୍ରଷ୍ଟା ଅବା ଅଖିଳ ଶାସ୍ତ୍ରର ମର୍ମଜ୍ଞ ବୋଲି ଅନୁଭୂତ କରିବାରେ ଅନ୍ତରଙ୍ଗଜନର ଲେଶମାତ୍ର ନାହିଁ । ଯାହାର ଅବତାର ତତ୍ତ୍ୱ, ଶଙ୍କରଙ୍କର ମତ ଓ ଗୌରାଙ୍ଗଙ୍କ ପଥ, କାମ କ୍ରୋଧ ଦମନର କୌଶଳ, ଗୁରୁ କରିବାର ଆବଶ୍ୟକତା ଏବଂ ଯୁଗସନ୍ଧିରେ ଗୃହସ୍ଥର କର୍ତ୍ତବ୍ୟ ଇତ୍ୟାଦି ସମ୍ବନ୍ଧରେ ତାଙ୍କ ମୁଖନିଃସୃତ ଉପଦେଶ ବାଣୀ ବହୁ ଜିଜ୍ଞାସୁଙ୍କର ସଂଶୟ ନିରସନ କରିପାରିଛି ଏବଂ ସାଧନ ପଥରେ ଅଗ୍ରସର ହେବାପାଇଁ ଭକ୍ତ ତଥା ସାଧକଙ୍କୁ ବଳିଷ୍ଠ ପ୍ରେରଣା ଯୋଗାଇଛି । ଶିଷ୍ୟମାନେ ତାଙ୍କଠାରୁ ଗ୍ରହଣ କରୁଥିବା ଦୀକ୍ଷା ଓ ଜପର କୌଶଳକୁ ଭିତ୍ତିକରି ସେ ନାନା ଜଟିଳ ପ୍ରଶ୍ନ ତଥା ସମସ୍ୟାର ସମାଧାନ ଅବଲୀଳାକ୍ରମେ କରି-ଦେଇପାରନ୍ତି ।

ସମୁନ୍ନତ ଜ୍ଞାନ ଓ ସୂକ୍ଷ୍ମ ସ୍ତରର ଭୂମିରେ ଅଧିରୂଢ଼ ହୋଇ ମଧ୍ୟ ସେ ଜଣେ ନିରଳସ ତଥା ନିପୁଣ କର୍ମୀ । ଇଦାନୀଂ ପ୍ରାୟ ବାସ୍ତରି ବର୍ଷ ବୟସରେ ପ୍ରବେଶ କରୁଥିଲେହେଁ ସେ ସ୍ୱହସ୍ତରେ କୃଷିକର୍ମ, ଗୋସେବା, ବୟନକର୍ମ, କାଠଗଢ଼ା ଏବଂ ଆଶ୍ରମିକ ସମସ୍ତ ପ୍ରକାର ଦୈନନ୍ଦିନ କର୍ମ ଅନାୟାସରେ ସମ୍ପାଦନ କରି-ପାରନ୍ତି । ଅଧିକନ୍ତୁ "ଯୋଗଃ କର୍ମସୁ କୌଶଳଂ" ଏହି ଗୀତୋକ୍ତି ଶ୍ରୀ ଶ୍ରୀ ଗୁରୁଦେବଙ୍କ ପ୍ରତି ପଦକ୍ଷେପରେ ପ୍ରତିଫଳିତ । ତାଙ୍କର କର୍ମ କୌଶଳ ସମସ୍ତଙ୍କୁ ପ୍ରେରଣା ଯୋଗାଇ ଥାଏ । ଜୀବିକାର୍ଜ୍ଜନ ପାଇଁ ପ୍ରୟୋଜନ ହେଉ-ଥିବା କର୍ମ ଜଞ୍ଜାଳକୁ ତ୍ୟାଗ ନ କରି ତାହା ମାଧ୍ୟମରେ ମନୋଲୟଦ୍ୱାରା ଯୋଗରେ ପ୍ରତିଷ୍ଠିତ ହେବା କିପରି ସମ୍ଭବପର, ସେହି ଉପାୟ ସେ ଶିକ୍ଷା ଦିଅନ୍ତି ।

ସଦ୍‌ଗୁରୁ ଶରଣାଗତିର ଆବଶ୍ୟକତା ସମ୍ବନ୍ଧରେ ତାଙ୍କର ବକ୍ତବ୍ୟ ଏହି କି, ଅନ୍ତର୍ଜ୍ଞାନ ଲାଭଦ୍ୱାରା ଜୀବ ଓ ପରମାତ୍ମାଙ୍କର ବ୍ୟବଧାନ ତଥା [illegible]

କଲ୍ୟାଣ, ଶାନ୍ତ ଏବଂ ଅନାବିଲ ଆନନ୍ଦ ଲଭନ୍ତି ଗୁରୁ ଶିଷ୍ୟ ଲୀଳାର ପରମ ଲକ୍ଷ୍ୟ । ଏହି ମହାପୁରୁଷଙ୍କର * ଚରଣାଶ୍ରିତ ହୋଇ ଆମେମାନେ ଆଜ ଗୌରବାନ୍ୱିତ ।

ଜୟଗୁରୁ

ଶିଷ୍ୟ ଓ ଭକ୍ତବୃନ୍ଦ
ନିଗମ ସାରସ୍ୱତ ସଂଘ,
ଭୁବନେଶ୍ୱର

ଫାଲ୍‌ଗୁନ ଶୁକ୍ଳ ଚତୁର୍ଥୀ
ଫେବୃୟାରୀ, ୧୯୭୭

---

* ସ୍ୱାମୀଜୀଙ୍କ ସଙ୍ଗେ ନିମ୍ନୋକ୍ତ ଠିକଣାରେ ପତ୍ରବ୍ୟବହାର ବା ସାକ୍ଷାତ୍ କରାଯାଇପାରେ : ଶ୍ରୀମତ୍ ସ୍ୱାମୀ ବିଶୁଦ୍ଧାନନ୍ଦ ସରସ୍ୱତୀ, ଶ୍ରୀ ନିଗମାନନ୍ଦ ଯୋଗାଶ୍ରମ, ଝାଡ଼ବଣୀ, ପୋ: ଅ: ଆମଲାଗୋଡ଼ା, ଜି: ମେଦିନୀପୁର (ପଶ୍ଚିମ ବଙ୍ଗ) ।

ଜୟ ଗୁରୁ

# ପ୍ରଥମ ଅଧ୍ୟାୟ

## ଜୀବନ ପ୍ରଭାତ

### ଜନ୍ମ ଓ ମାତୃବିୟୋଗ

ତତ୍କାଳୀନ ବିହାର ପ୍ରଦେଶର ମାନଭୂମି ବା ଆଧୁନିକ ପଶ୍ଚିମବଙ୍ଗ ପ୍ରଦେଶର ପୁରୁଲିଆ ଜିଲ୍ଲା ଅନ୍ତର୍ଗତ ଲଧୂଡ଼ୁକା ମୋର ଜନ୍ମସ୍ଥାନ । ଏହା ଏକ ପ୍ରକାଣ୍ଡ ଗ୍ରାମ । ସେଠାର ଅଧିକାଂଶ ଗ୍ରାମବାସୀ ବ୍ରାହ୍ମଣ । ପ୍ରାକୃତିକ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ସ୍ଥାନଟି ବିଶେଷ ଚିତ୍ତାକର୍ଷକ ।

ବଙ୍ଗାବ୍ଦ ୧୩୧୨ ସାଲ, ଫାଲ୍‌ଗୁନ (ଶୁକ୍ଳ ଚତୁର୍ଥୀ, ମଙ୍ଗଳବାର) ୧୫ ଦିନ (ଫେବୃୟାରୀ ତା ୨୭ ରିଖ, ୧୯୦୬ ମସିହା) ମୁଁ ସଂସାରକୁ ଆସିଲି । ମୋର ପିତା ଶ୍ରୀଯୁକ୍ତ କାଳମୋହନ ଗଙ୍ଗୋପାଧ୍ୟାୟ ଥିଲେ ନିଷ୍ଠାବାନ୍ ସାବର୍ଣ୍ଣୀ ଗୋତ୍ରୀୟ ବ୍ରାହ୍ମଣ । ମାତା ଶାରଦା ସୁନ୍ଦରୀ ଦେବୀଙ୍କ କୋଳରେ ଆସିଥିଲେ ଗୋଟିଏ କନ୍ୟା ଓ ତିନି ପୁଅ । ଶୈଶବକାଳରୁ ହିଁ ଭଉଣୀ ଇନ୍ଦୁବାଳା ସ୍ୱର୍ଗ କରନ୍ତି । ପୁଅଙ୍କ ମଧ୍ୟରେ ବଡ଼ ଅବନୀକାନ୍ତ, ମଧ୍ୟମ ନଗେନ୍ଦ୍ରନାଥ ଓ ମୁଁ ସମସ୍ତଙ୍କଠୁ ଶ୍ରେଷ୍ଠ ଭୋଳାନାଥ ।

୧୩୧୨ ସାଲର ବୈଶାଖ ମାସ (ମଇ, ୧୯୦୬) ମୁଁ ଏହି ପୃଥିବୀର ବିଚିତ୍ର ପରିବେଶରେ ପ୍ରବେଶ କରିବାର ମାତ୍ର ଦୁଇ ମାସ ପରେ ମୋ ମା ପରଲୋକ ଗମନ କରନ୍ତି । ବଡ଼ ହେଲି ପରେ ଜାଣିଲି ଯେ, ପୁଅ ଅଯୋଗ୍ୟ ହୋଇପାରେ; କିନ୍ତୁ ମା କଦାପି କୁମାତା ହୋଇନପାରନ୍ତି । ମୋତେ ଅକାଳରେ ଛାଡ଼ିଯାଇଥିବାରୁ ତାଙ୍କର ସୁଖ୍ୟାତି ବୋଧହୁଏ ଅକ୍ଷୁଣ୍ଣ

ରହିଲ । କାରଣ ତାଙ୍କର ସ୍ଥୂଳରୂପ ଦେଖିଛୁ କମ୍ପା ଦେଖିନ ବୋଲି କହିବା ସୁଯୋଗରୁ ମୁଁ ବଞ୍ଚିତ ହେଲି ସତ, କିନ୍ତୁ ଏହାର ପରିଣାମରେ ପରବର୍ତ୍ତୀ ଜୀବନରେ ସଂସାରର ଦେଉଟି ସ୍ଥୂଳରୂପର ବାହାରେ ଏବଂ ଅନ୍ତ-ରାଳରେ ମା'ଙ୍କୁଇ ସନ୍ତତ ଉପଲବ୍ଧି କରିବା ସୁଯୋଗ ମୁଁ ଲାଭ କରିପାରିଲି । ଯେଉଁ ଘାତ ପ୍ରତିଘାତ ଓ ସାଧନ ସଂଗ୍ରାମ ମାଧ୍ୟମରେ ଏହା ଘଟିଥିଲା ସେ ସମସ୍ତ ଇତିବୃତ୍ତିକୁ ମୋର ଜୀବନ ପ୍ରସଙ୍ଗ ରୂପେ ଉପସ୍ଥାପିତ କରିବାକୁ ଯାଉଛି ।

## ପିତାଙ୍କ ଦୁରବସ୍ଥା

ପତ୍ନୀ ବିୟୋଗ ପରେ ପରେ ମୋର ପିତାଙ୍କର ଦୁରବସ୍ଥାର ଅନ୍ତ ନ ଥାଏ । ମୋର ପରିଚର୍ଯ୍ୟା ପାଇଁ ଗୋଟିଏ ଧାଈ ନିଯୁକ୍ତ କରାଗଲା । କିନ୍ତୁ ଏହା ମାତ୍ର ଦିନକ ପାଇଁ । ମୋ ମା ଘରେ ମୋତେ ଡ଼ାକୁଛନ୍ତି ବୋଲି ସେ ଭୟରେ ଅସ୍ଥିର ହୋଇ ସେ ଥରେ ଚାଲିଗଲା ଯେତେ ଅନୁରୋଧ କଲେହେଁ ଆଉ ଫେରିଲା ନାହିଁ । ଧାଈ ମୁଖରୁ ଏ କଥା ଯେ ଶୁଣିଲା ସେ ଆଶ୍ଚର୍ଯ୍ୟ ହେଲା । ମୋର ପରିପାଳନ ପାଇଁ ଆଉ କେହି ଜୁଟିଲେ ନାହିଁ । ମା ତ ସବୁଦିନେ ନ ଥାନ୍ତି ! ମର ସଂସାରରେ ଅମର ହୋଇ କିଏ ବା ରହେ ? ମୋ ପିତାଙ୍କୁ ଏ କଥା ସମସ୍ତେ ବୁଝାଇଲେ । କିନ୍ତୁ ତାଙ୍କର ମର୍ମାନ୍ତିକ ଦୁଃଖର ଦାହ ତ ଖାଲି ପତ୍ନୀ ବିୟୋଗଜନିତ ନୁହେଁ— ନବଜାତ ଶିଶୁର ଦାୟିତ୍ୱ କାହାକୁ ଦିଆଯିବ ? ଶିଶୁର ଯତ୍ନ କରିବ କିଏ ? —ଏଇ ଚିନ୍ତା ତାଙ୍କର ଅକଥନୀୟ ଦୁର୍ଦ୍ଦଶାର କାରଣ ହେଲା । ସେ ଅନୁମାନ କଲେ କିଛି ଦିନ ପରେ ଶିଶୁ ବାଳକଟିକୁ ବଞ୍ଚାଇ ରଖିବା ଅସମ୍ଭବ । ପୁରୁଷ କୋଳରେ ସେ ବଞ୍ଚିବ କିପରି ? ଜନନୀର କୋଳହିଁ ତାର ଆଶ୍ରୟ ।

ମୋ ଉପର ଭାଇ ନରେନ୍ଦ୍ରର ବୟସ ସେତେବେଳକୁ ମାତ୍ର ଅଢ଼େଇବର୍ଷ । ତାର ଲାଳନ ପାଳନ ସାଙ୍ଗକୁ ଦୁଇମାସ ବୟସ ଆଉ ଏକ ଶିଶୁର ଯତ୍ନ କରିପାରିବା ମୋ ପିତାଙ୍କ ପକ୍ଷେ ଅସାଧ୍ୟ ହୋଇପଡ଼ିଲା । ଏପରି ଦୁର୍ବିପାକରେ ପଡ଼ି ଦୁଃଖରେ ଓ କ୍ଷୋଭରେ ଦିନେ ସେ ମୋ ବଡ଼ଭାଇଙ୍କୁ

କହିଲେ, "ଅବନୀ, ସହିବାର ଗୋଟିଏ ସୀମା ଅଛି । ଏଭଳି ପ୍ରତିକୂଳ ଅବସ୍ଥା ମଧ୍ୟରେ ଏ ଶିଶୁଟିକୁ ବଞ୍ଚାଇ ରଖିବା ଅସମ୍ଭବ । ଦୁଇପହର ଝଡ଼ରେ ଶୁଆଇ ଦେଇ ଏହାର ଦାୟିତ୍ୱରୁ ଚିରକାଳ ପାଇଁ ମୁକ୍ତ ପାଇବା ।"

ସେ ଦିନ ସତକୁସତ ମୋତେ ଖୋଲା ଅଗଣାରେ ଚଟିକ ଗଡ଼ାଇ ଦେଇ ପିତା ସ୍ନାନ କରିବାକୁ ଚାଲିଗଲେ । ଘରେ ବୁଢ଼ୀ ଶୁଢ଼ୀ କାଳଭଳି ବଡ଼ଭାଇ ଅବନୀ ଛଡ଼ା ଆଉ କେହି ନଥାନ୍ତି । କିଛି ସମୟ ପରେ ମୋର ଚିତ୍କାର ଆରମ୍ଭ ହୋଇଗଲା । ଭାଇ ଆଉ ଧୈର୍ଯ୍ୟ ଧରିନପାରି ଅଳ୍ପ ଦୁଧ ପିଆଇବାକୁ ଚେଷ୍ଟା କଲାବେଳେ ମୁଁ ଅଧିକ ଉଚ୍ଚ ସ୍ୱରରେ କାନ୍ଦି ଉଠିଲି । କିଛି ସମୟ ପରେ ମୋର କ୍ରନ୍ଦନ ଶାନ୍ତ ହୋଇ ଆସିଲା । ମୋର ଚିତ୍କାର ସ୍ତିମିତ ହୋଇ ଆସୁଥିବା ଦୂରରୁ ଶୁଣିପାରି ପିତା ଭାବିଲେ ଯେ, ଶେଷମୁହୂର୍ତ୍ତ ଉପସ୍ଥିତ । ଆଉ ଅଳ୍ପ ସମୟ ପରେ ହୁଏତ ଶିଶୁର ପଞ୍ଚତ୍ୱ-ପ୍ରାପ୍ତି ଘଟିବ । ଘରେ ପ୍ରବେଶ କରି ସେ ଆଉ ମୋ ଆଡ଼କୁ କାଣ୍ଡି ଶୁଣି ଗୁହୁଁ ନ ଥାନ୍ତି । ମନରୁ ସମସ୍ତ ମାୟାମମତା ପୋଛି ଦେବା ପାଇଁ ଯେପରି ଚେଷ୍ଟା କରୁଥିଲେ । ସକାଳୁ ଖିଆପିଆ ହୋଇନଥାଏ । ସବୁଠି ବିଷାଦ ଓ ବିମର୍ଷର ନୀରବ ଗୁପ୍ତା । ବଡ଼ ଭାଇ ଅବନୀ ଏବଂ ଅବୋଧ ନଗେନ୍ଦ୍ର ପିତାଙ୍କର ଭାବଭଙ୍ଗୀ ଲକ୍ଷ୍ୟ କରୁଥାନ୍ତି । ମାତୃବିୟୋଗର ବ୍ୟଥା ଅନୁଭବ କରିପାରିଲାଭଳି ବୟସ ସୀମାକୁ ସେମାନେ ସ୍ପର୍ଶ କରି ନ ଥାନ୍ତି । ଦୁଗ୍ଧ ପାନ କରି ଆଶ୍ୱସ୍ତି ହେବା ପରେ ମୁଁ ବୈଶାଖ ମାସର ପ୍ରଖର ସୂର୍ଯ୍ୟାଲୋକବଧୌତ ହୋଇ ଶୋଇ ରହିଥାଏ ।

## ମାମୁଙ୍କ ସହାନୁଭୂତି

ଇତି ମଧ୍ୟରେ ବାହାର ଦ୍ୱାର ପାଖରେ ପରିଚିତ କଣ୍ଠସ୍ୱର ଶୁଭିଲା 'ଅବନୀ' ! ଘର ଭିତରୁ ଭାଇ ଅବନୀ ଓ ପଛେ ପଛେ ସାନ ଭାଇ ନଗେନ୍ ଉଦ୍‌ବେଗରେ ଛୁଟିଯାଇ ଦେଖନ୍ତି ତ ଗଦାଧର ମାମୁଁ । ମାମୁଁ ଘର ଭିତରକୁ ଆସି ମୋ ପିତାଙ୍କୁ ଭେଟିଲେ ।

ଉଭୟଙ୍କର ମୁଖ ବିଷାଦପୂର୍ଣ୍ଣ । କ୍ଷଣକ ପରେ ମାମୁଁଙ୍କ କରୁଣ ଦୃଷ୍ଟି ମୋ ଉପରେ ନିବଦ୍ଧ ହୁଏ । କିଛି ସମୟ ମୋର ଅବସ୍ଥା ଲକ୍ଷ୍ୟ କରି ମାମୁଁ

ବୋଧହୁଏ ଅନୁଭବ କରୁଥିଲେ ଯେ ଶିଶୁଟିର କୋମଳ ଅଙ୍ଗ ସ୍ପର୍ଶରେ ଉତ୍ତପ୍ତ ସୂର୍ଯ୍ୟାଂଶୁ ଚନ୍ଦନଭଳି ଶୀତଳାୟିତ ହୋଇ ଉଠିଛି । ଅବସ୍ଥାର ଗୁରୁତ୍ୱ ବିବେଚନା କରି ସେ ଭଗ୍ନୀପତିଙ୍କୁ କହିଲେ, "ଭାଇ, ମୋର ଗୋଟିଏ ପ୍ରସ୍ତାବ ଅଛି । ଏଇ ଶିଶୁପୁତ୍ରଟିକୁ ମୋତେ ଦିଅ । ମୁଁ ଏହାର ଲାଳନ ପାଳନ କରିବି । ସମସ୍ତ ଦୁଃଖ ତୁମେ ଏକା ଭୋଗିବା ଅପେକ୍ଷା କିଛି ଅଂଶ ମୁଁ ସ୍ୱେଚ୍ଛାରେ ବରଣ କରିବାକୁ ଚାହୁଁଛି ।" ମାମୁଁଙ୍କଠାରୁ ଏ କଥା ଶୁଣି ପିତାଙ୍କ ମନର ଦୁଃଖ ଅନେକ ଲାଘବ ହୋଇଯାଏ । "ଏଥିରେ ଆପତ୍ତି କରିବାର ତ କିଛି ନାହିଁ ! ଶିଶୁର ମା'ହିଁ ହୁଏତ ନିଜ ଭାଇକୁ ପଠାଇ-ଦେଇଛନ୍ତି ଓ ସମ୍ପ୍ରତି ମାମୁଁଙ୍କ ମୁଖରୁ ନିଃସୃତ ହେଉଥିବା ବାଣୀର ପୃଷ୍ଠଭୂମିରେ ରହିଛି ସେହି ମାତୃଶକ୍ତିର ଚିରନ୍ତନ ଇଚ୍ଛା । ନଚେତ୍, ଭଲେ। ପ୍ରତି ଗଦାଧର ମାମୁଁଙ୍କର ଏପରି ସ୍ୱତଃସ୍ଫୂର୍ତ୍ତ ଆକର୍ଷଣ ହୁଅନ୍ତା କାହିଁକି ?"

ମୁହୂର୍ତ୍ତିକ ପାଇଁ ବୋଧହୁଏ ମାମୁଁଙ୍କ ଚକ୍ଷୁ ସମକ୍ଷରେ ମୋ ମାଙ୍କର ଦିବ୍ୟଲୋକଗତ କରୁଣାମୟୀ ମୂର୍ତ୍ତିଟି ଫୁଟି ଉଠିଥିଲା । ତାହାରେ ମୋତେ ଚାହିଁଥାନ୍ତି; କିନ୍ତୁ ମା'ଙ୍କର ଅଭାବ ଟୋକଟି ତାଙ୍କ ମାନସ ପଟରେ ଅଙ୍କା ହୋଇଥାଏ । ମୁଁ ତଥାପି ଧରଣୀଶାୟୀ; ଧରଣୀ ଜନନୀଙ୍କର ଅନ୍ୟ ରୂପ ନୁହେଁ କି ? ସକାଳେ ଭାଇ ଅବନୀ (ଧରଣୀରହିଁ ଅନ୍ୟ ନାମ) ମା ଭଳି ମୋତେ ଦୁଗ୍ଧ ପାନ କରାଇଛନ୍ତି । ଗଦାଧର ମାମୁଁ ଜନନୀର ସ୍ନେହ ଦେଇ ନ ପାରିବେ କାହିଁକି ? ମା ତୁଳା ବୋଲି ତ ସେ ମାତୁଳ !

## ମାତୁଳାଳୟରେ ପରିଚର୍ଯ୍ୟା

ପୁରୁଲିଆ'ର ମାନବଜାରଠାରୁ ମୋର ଜନ୍ମସ୍ଥାନ ଲଧୁଡ଼ୁକା ପ୍ରାୟ ବତିଶି କିଲୋମିଟର ଦୂରରେ ଅବସ୍ଥିତ । ମୋର ମାତୁଳାଳୟ ମହେଶପୁର ମାନବଜାର ଓ ଲଧୁଡ଼ୁକାର ସମଦୂରବର୍ତ୍ତୀ । ଏହା ଫୁଗୁ ଥାନା ଅନ୍ତର୍ଗତ କଂସାବତୀ ନଦୀ ତୀରବର୍ତ୍ତୀ ଏକ କ୍ଷୁଦ୍ର ଗ୍ରାମ । ମୋର ମାମୁଁମାନେ ଥିଲେ କୁଳୀନ ବ୍ରାହ୍ମଣ । ମହେଶ୍ୱରପୁର ଜମିଦାର ଘରରେ ମଧ୍ୟ ତାଙ୍କର ଖ୍ୟାତି ସୁପ୍ରତିଷ୍ଠିତ ଥିଲା । ମୋର ଗୁରୁ ମାମୁଁ । ବଡ଼ କୈଳାସନାଥ ମିଶ୍ର, ମଧ୍ୟମ

ବେଣୀମାଧବ ମିଶ୍ର ଓ ଗୋପାଳ ଚନ୍ଦ୍ର ମିଶ୍ର ଏବଂ କନିଷ୍ଠ ଗଦାଧର ମିଶ୍ର । ମୋ ମାଙ୍କର ଅକାଳ ମୃତ୍ୟୁ ଗଦାଧର ମାମୁଁ ଓ ବଡ଼ ମାଈଁ ଗିରିବାଳାଙ୍କ ପ୍ରାଣରେ ବିଶେଷ ଆଘାତ ଦିଏ । ମୋର ପିତାଙ୍କ ଜୀବନରେ ଚରମ ବିପର୍ଯ୍ୟୟ ଉପସ୍ଥିତ ହେବା ଜାଣି ସେମାନଙ୍କର ପ୍ରାଣ କାନ୍ଦି ଉଠେ ।

ସେ ଦିନ ଗଦାଧର ମାମୁଁଙ୍କ ହାତରେ ମୋତେ ଦେଖି ବଡ଼ମାଈଁ ଗିରିବାଳା ଆବେଗପୂର୍ଣ୍ଣ ସ୍ୱରରେ କହି ଉଠନ୍ତି, "ପିଲାଟିକୁ ନେଇଆସି ବେଶ୍ କଲ, ବାପ ! ଲଲମୋହନଙ୍କ ଦୁର୍ଦ୍ଦଶାର କଥା ଭାବି ମୋର ଅଶାନ୍ତିର ସୀମା ନ ଥିଲା । ପତ୍ନୀ ବିୟୋଗ ପରେ ପରେ ଦୁଇଟି ଅଳ୍ପ ବୟସ୍କ ବାଳକ ସହ ଏ ଦୁଇ ମାସର ଦୁଗ୍ଧପୋଷ୍ୟଶିଶୁକୁ ସେ ବଞ୍ଚାଇ ପାରନ୍ତେ କିପରି ?" ଗଦାଧରଙ୍କ ହାତରୁ ଛଡ଼ାଇ ନେଇ ବିଧବା ବଡ଼ମାଈଁ ମୋତେ କୋଳରେ ଜାକି ଧରିଲେ । ମୋ ଜନ୍ମଦାତ୍ରୀ ମା ଓ ମାମିମାଙ୍କ (ବଙ୍ଗ ଦେଶରେ ମାଈଁଙ୍କୁ ମାମିମା କୁହାଯାଏ) ମଧ୍ୟରେ ମୋ ପାଇଁ ସମସ୍ତ ଭେଦ ସବୁଦିନ ପାଇଁ ଦୂର ହୋଇଗଲା । ମୋ ମାମିମାଙ୍କ ପ୍ରାଣରେ ମୋ ପାଇଁ ଏ ଯେଉଁ ମମତା, ବଡ଼ ହେଲା ପରେ ବିଶ୍ଳେଷଣ କରି ଜାଣିଲି ଯେ, ଏହା ମାତୃମୂର୍ତ୍ତିରହିଁ ଅନ୍ୟତମ ରୂପ । କହିବା ବାହୁଲ୍ୟ, ମାମୁ ଓ ମାଈଁଙ୍କର ଅକୃତ୍ରିମ ସ୍ନେହରେ ଲାଳିତ ହୋଇ ପିତାମାତାଙ୍କ ଅଭାବ ମୋ ଜୀବନରେ ଖୁବ୍ ବଡ଼ ବୋଲି ମନେ ହୋଇନ ।

ଗଦାଧର ମାମୁଁ ପ୍ରତ୍ୟେକ ଦିନ ତାଙ୍କ ଦୋକାନର ଗୋଟିଏ କୋଣରେ ଗ୍ରେଟ ବିଛଣାଟିଏ ଉପରେ ମୋତେ ଶୁଆଇ ରଖନ୍ତି । ତାଙ୍କ ଦୋକାନକୁ ଜାତିଧର୍ମନିର୍ବିଶେଷରେ ନାନା ଗ୍ରାମବାସିନୀ ବଧୂ ଓ ମା ବ୍ୟବସାୟ ସୂତ୍ରରେ ଆସନ୍ତି । ମୋତେ ଦେଖି ସେମାନଙ୍କର ଆନନ୍ଦର ସୀମା ରହେ ନାହିଁ । ସମସ୍ତେ ଆଦର ଓ ସୋହାଗର ସହିତ ମୋତେ କୋଳରେ ଧରନ୍ତି ଏବଂ କେହି କେହି ସ୍ତନ୍ୟପାନ କରାଇ ଆନନ୍ଦ ପାଆନ୍ତି । ମାଈଁମାନେ ଥିଲେ ଆତ୍ମୀୟ ସ୍ୱଜନ, କିନ୍ତୁ ଏମାନେତ ମୋର କେହି ନୁହନ୍ତି । ଅଥଚ ଏମାନଙ୍କର ମାୟା-ମମତା ଏବଂ ସ୍ନେହ-ସେବାର ତୁଳନା ନାହିଁ । ସେଥିପାଇଁ ସମସ୍ତଙ୍କ ପାଖରେ ମୁଁ ଅନୁଗୃହୀତ । କିନ୍ତୁ ଏ ଅନୁଗ୍ରହର ପରିଣାମରେ ମୋର

ଜୀବନ ରକ୍ଷା ଯେ ହୋଇ ପାରିଥିଲା, କେବଳ ସେତିକ ନୁହେଁ ବରଂ ପରବର୍ତ୍ତୀ ଜୀବନରେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତିଙ୍କ ମଧ୍ୟରେ ମଙ୍ଗଳୋଜ୍ଜ୍ୱଳ ଅନୁଭବ କରିବାକୁ ସମର୍ଥ ହୋଇପାରିଥିବା ମୋ ଜୀବନର ଏକ ଗୌରବମୟ ସୁଯୋଗ ଓ ବିଶେଷ ସାର୍ଥକତା ।

## ଉପନୟନ ସଂସ୍କାର

ମା ଗର୍ଭ ଧାରଣ କରିଥିଲେ, ଜନ୍ମ ଦେଇଥିଲେ, କିନ୍ତୁ ଲାଳନ-ପାଳନର କାମଟି ନିଜର ଅନୁପସ୍ଥିତିରେ ଅନ୍ୟଦ୍ୱାରା କରାଇ ନେଲେ । ଏବେ ମୋର ଏଗାର ବର୍ଷ ବୟସ ଆସି ହେଲା । ଶିକ୍ଷାଦୀକ୍ଷାପାଇଁ ଉପନୟନ ସଂସ୍କାର ନ ହେଲେ ନ ଚଳେ । ମୋର ପିତା ଏ ବିଷୟରେ ଯଥାସମ୍ଭବ ତତ୍ପରତା ପ୍ରକାଶ କରନ୍ତି । ଆଗେ ବ୍ରାହ୍ମଣ ମାନଙ୍କେ ଏ ସମ୍ବନ୍ଧରେ ଯଥେଷ୍ଟ ସଚେତନ ରହୁଥିଲେ ଏବଂ ଆନ୍ତରିକତା ସହକାରେ ସମସ୍ତ କ୍ରିୟାକର୍ମ ସମ୍ପାଦିତ ହେଉଥିଲା ।

ମଝିଆ ଭାଇର ଓ ମୋର ଏକା ସାଙ୍ଗରେ ବ୍ରତଘର ହେବା ନିଶ୍ଚିତ ହୁଏ । ଉପନୟନ ଉପଲକ୍ଷେ ପିତା ମାମୁଁ ଘରଠାରୁ ମୋତେ ଲଧୂଡ଼ୁଲା ନେଇଗଲେ । ଉପନୟନ କର୍ମ ଯଥାବିଧି ସମ୍ପାଦିତ ହେବାର କିଛିଦିନ ପରେ ମୁଁ ମାମୁଁଙ୍କ ସଙ୍ଗେ ପୁଣି ମହେଶପୁର ଫେରି ଆସିଲି ।

## ପିତୃ ବିୟୋଗ

ସମୟର ସ୍ରୋତ ଆଗେଇ ଚାଲିଥାଏ । ହଠାତ୍ ଦିନେ ଖବର ପହଞ୍ଚିଲା ଯେ ମୋର ପିତା, ସାନଭାଇ ଓ ଭାଉଜ (ଅବନୀଦାଙ୍କ ସ୍ତ୍ରୀ) ବିଶେଷ ଅସୁସ୍ଥ । ମୁଁ ସଙ୍ଗେ ସଙ୍ଗେ ଲଧୂଡ଼ୁଲା ଯାତ୍ରା କଲି । ପିତା ସେତେବେଳକୁ ବେଶ ବୟସ୍କ ଏବଂ ତାଙ୍କର ଅନ୍ତିମ ସମୟ ଆଗତ ପ୍ରାୟ । ବଡ଼ଭାଇଙ୍କ ଉପରେ ସଂସାରର ସକଳ ଦାୟିତ୍ୱ ନ୍ୟସ୍ତ ଥାଏ । ଜମି ଗୃହବାସ କାମ ନିଜେଇ କରିବାକୁ ପଡ଼େ । ମୁଁ ଘରେ ରୋଗୀମାନଙ୍କୁ ପଥ୍ୟ ଯୋଗାଇ ଦେଇ ବଡ ଭାଇଙ୍କ ପାଇଁ ଖେତଠାକୁ ଖାଦ୍ୟ ନେଇଯାଏ ।

କିଛିଦିନ ଏପରି ଭାବେ ଅତିବାହିତ ହେବା ପରେ ମୋ ପକ୍ଷରେ ଏ ସବୁ ଦାୟିତ୍ୱ ତୁଲାଇବା ଓ ରୋଗୀସେବା କରିବା ବିଶେଷ କଷ୍ଟକର ବୋଧ ହେଲା । ଜ୍ଞାନ ହେବା ପରଠାରୁ ଦୁଃଖ ଦୁର୍ବିପାକ ସଙ୍ଗେ ଏହି ମୋର ପ୍ରଥମ ପରିଚୟ । ମୋର ବାଳକ ସୁଲଭ ମନ ଚଞ୍ଚଳ ହୋଇଉଠିଲା । ମୁଁ ଏକ ଖିଆଲରେ ଭାବିଲି ଯେ, ସମସ୍ତେ ତ ରୋଗ ଭୋଗୁଛନ୍ତି । ମୁଁ ସୁସ୍ଥ ହୋଇଥିବାରୁ ସିନା ଏତେ କଷ୍ଟ କରିବାକୁ ପଡ଼ୁଛି । ତେଣୁ ଭଗବାନଙ୍କ ଉଦ୍ଦେଶ୍ୟରେ କରୁଣ ବିନତି ଜଣାଇ କହିଲି, "ପ୍ରଭୁ ! ମୋର ମଧ ସ୍ୱାସ୍ଥ୍ୟଭଙ୍ଗ ହେଉ ଏବଂ ମୋତେ ଉପସ୍ଥିତ କଷ୍ଟରୁ ମୁକ୍ତି ମିଳୁ ।" ଦୈବକ୍ରମେ ସତ ସତ ଦିନେ ଦୁଇଦିନ ମଧ୍ୟରେ ମୁଁ ଜ୍ୱରରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେଲି ।

"ଭଗ୍ନିପତିଙ୍କ ପରିବାରର ଅବସ୍ଥା ସାଂଘାତିକ, ଖୋକା'ନାଅଙ୍କ ସହିତ ସମସ୍ତେ ରୋଗ ଶଯ୍ୟାରେ" ଏ ଖବର ମାମୁଙ୍କ ପାଖରେ ପହଞ୍ଚିବାକ୍ଷଣି ମାମୁ ଅବିଳମ୍ବେ ଆମ ଘରକୁ ଆସିଲେ ଓ ଆମର ଶୁଶ୍ରୂଷାରେ ଲାଗିପଡ଼ିଲେ । କିନ୍ତୁ ତାଙ୍କର ସକଳ ସେବା ଯତ୍ନ ସତ୍ତ୍ୱେ ମୋର ପିତାଙ୍କୁ ରକ୍ଷା କରିବା ସମ୍ଭବ ହେଲା ନାହିଁ । ପ୍ରାୟ ଏକୋଇଶ ଦିନ ପରେ ସେ ଆମ ତିନିଭାଇଙ୍କ ପାଖରୁ ଚିରଦିନ ପାଇଁ ବିଦାୟ ନେଇଥିଲେ । ସନ ୧୩୨୫ ସାଲ ମାର୍ଗଶିର ମାସ (୧୯୧୮ ମସିହା ନଭେମ୍ବର)ରେ ଆମର ଏହି ଦ୍ୱିତୀୟ ବିପର୍ଯ୍ୟୟ ଘଟିଗଲା । ବାପାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଶେଷ ହେଲା ପରେ ମୁଁ ମାମୁଁଙ୍କ ଘରଠାକୁ ଫେରି ଆସିଲି ।

## ଲେଖାପଢ଼ାର ଚେଷ୍ଟା

ଏତେବେଳକୁ ମୋର ବୟସ ତେରବର୍ଷ ହୋଇ ସାରିଥିଲେ ମଧ୍ୟ ପାଠଶାଳାର ନିମ୍ନତମ ଶ୍ରେଣୀକୁ ମୁଁ ଅତିକ୍ରମ କରିପାରିନଥିଲି । ଅଭିଜାତ ଜମିଦାର ବଂଶରେ ଅର୍ଥ ବା ସୁଯୋଗର ଅଭାବ ନ ଥିଲା । କିନ୍ତୁ ଲେଖା ପଢ଼ା ପ୍ରତି ମୋର କୌଣସି ଆକର୍ଷଣ ଜାଗୁନଥାଏ । ମାମୁଁ ତଥାପି ଆଶା ଛାଡ଼ିନଥିଲେ । ଅନ୍ୟମାନଙ୍କ ପରି ତାଙ୍କ ଭଣଜା ମଧ୍ୟ ଶିକ୍ଷାଦୀକ୍ଷା ଲାଭକରି

ବନେ ସମାଜରେ ପ୍ରତିଷ୍ଠିତ ହେବ—ଏପରି ଆକାଂକ୍ଷା ନେଇ ସେ ମୋପାଇଁ ସ୍ୱତନ୍ତ୍ରଭାବେ ଗୃହଶିକ୍ଷକ ମଧ୍ୟ ନିଯୁକ୍ତ କରିଥିଲେ ।

ମୁଁ ସ୍ୱଭାବତଃ ଲାଜକୁଳା ଥିଲି । ମୋର ନାମ ଓ ବାଲ୍ୟକାଳୀନ ସ୍ୱଭାବ ମଧ୍ୟରେ କିଛି ପରିମାଣ ସାମଞ୍ଜସ୍ୟ ଥିଲା । ଘରେ ସ୍ତ୍ରୀଲୋକଙ୍କ ଗହଣରେ ମୁଁ ଅଧିକ ସମୟ କଟାଇବାକୁ ଭଲ ପାଉଥିଲି । ଅକାଳରେ ପିତାମାତାଙ୍କୁ ହରାଇ ମୋର ମାନସିକ ବଳ କେତେକାଂଶରେ ଭାଙ୍ଗି-ଯାଇଥିଲା । ମୁଁ ଯେପରି ସମସ୍ତଙ୍କ ମଧ୍ୟରେ ମୋର ମାଙ୍କୁ ଖୋଜି ବୁଲୁଥିଲି । ଦୁଇ ତିନିବର୍ଷ ସ୍କୁଲକୁ ଯାଇ ପଢ଼ାଶୁଣା କରିବାକୁ ଚେଷ୍ଟାକଲି । ମନରେ କିନ୍ତୁ କୌଣସି ଆଗ୍ରହ ନଥାଏ । କ୍ରମଶଃ ମୁଁ ବୁଝିପାରିଲି ଯେ ମାମୁ ଖୁସି ହେବେ ବୋଲି ମୁଁ ସ୍କୁଲକୁ ଯାଉଛି । ସ୍କୁଲ ନ ଗଲେ ମାମୁ ଦୁଃଖ କରିବେ ଓ ଶିକ୍ଷକ ମଧ୍ୟ ମାଡ଼ଦେବେ, ଅଥଚ ସ୍କୁଲରେ ଯାହା ମୁଖସ୍ଥ କଲି ଘରକୁ ଆସି ସମସ୍ତ ଭୁଲିଯାଉଥିଲି । ଷୋଳବର୍ଷ ବୟସରେ ପାଠଶାଳାର ଦ୍ୱିତୀୟଭାଗ ଅତିକ୍ରମ କରିନପାରି ଦିନେ ଭାବିବାକୁ ଲାଗିଲି ଯେ କେତେଦିନ ଏପରି ଆଉ ଚେଷ୍ଟା କରାଯିବ ? ମୋ ଭାଗ୍ୟରେ ଯାହା ନାହିଁ ତାହା ସମ୍ଭବ ହେବ କିପରି ? ମୋ ସାଙ୍ଗରେ ପଢୁଥିବା ପିଲାଏ ଉପର କ୍ଲାସକୁ ଗଲେ—କ୍ରମେ ମୋତେ ଖୁବ୍ ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କ ସଙ୍ଗେ ପଢ଼ିବାକୁ ହେଲା । କିନ୍ତୁ ମୋର ବର୍ଣ୍ଣ ପରିଚୟ ଠିକ୍ ଠିକ୍ ହୋଇପାରିଲା ନାହିଁ । ଲଜ୍ଜା ଓ ଅପମାନ-ବଶତଃ ଥରେ ମାମୁଙ୍କୁ କହିଲି, "ମାମୁ, ମୋର ସ୍ମୃତି ଶକ୍ତି ଖୁବ୍ ଦୁର୍ବଳ ତେଣୁ ଆଉ ଲେଖାପଢ଼ା ପାଇଁ ଚେଷ୍ଟାକରିବା ବୃଥା ।"—ମୋର ଏପରି ପରାମର୍ଶ ଶୁଣି ମାମୁ କୌଣସି ଉତ୍ତର ଖୋଜି ପାଆନ୍ତି ନାହିଁ ।

ଦିନେ ପାଠ ନ ଆସିବାରୁ ଶିକ୍ଷକ ମୋତେ ଖୁବ୍ ଜୋରରେ ମାଡ଼ ଦେଲେ । ମାମୁ ଏ କଥା ଜାଣିପାରି ତାଙ୍କର ଭାବରେ ପରିବର୍ତ୍ତନ ଘଟିଲା । ସେ ଶିକ୍ଷକଙ୍କୁ କହିଲେ, "ଆପଣ ତ ପିଲାକୁ ବିଦ୍ୟା ଦାନ କରିପାରିଲେ ନାହିଁ, କେବଳ ମାଡ ଦେଇପାରୁଛନ୍ତି । ମାଡ଼ ତ ଯେ କେହି ଦେଇପାରିବ, ଶିକ୍ଷାଦାନ କରିବ କିଏ ? ଆଜିଠୁ ତାର ପଢ଼ା ବନ୍ଦ ରହୁ ।' ମାମୁଙ୍କର ଏହି ସିଦ୍ଧାନ୍ତ ମୋତେ ଖୁବ୍ ଆନନ୍ଦ ଦେଇଥିଲା । ଲେଖାପଢ଼ାର

ପୀଡ଼ାରୁ ମୁଁ ବଞ୍ଚିଗଲି । ସେହିଦିନଠାରୁ ଆନୁଷ୍ଠାନିକଭାବେ ମୋର ଅଧ୍ୟୟନର ପରିସମାପ୍ତି ଘଟିଲା । ଲୋକେ ପଚାରିଲେ ମାମୁ କହନ୍ତି, "ପୁସ୍ତକଗତ ବିଦ୍ୟା ହାସଲ କରି କେତେଜଣ ପ୍ରକୃତ ମନୁଷ୍ୟ ହୋଇପାରନ୍ତି ? ମୁଁ ଭଣଜାକୁ ମଣିଷପରି ଜଣେ ମଣିଷ କରିବି ।" ମୁଁ ଏକଥା ଶୁଣି ଭାବେ, 'ମୋଭଳି ବୋକା ପିଲାକୁ ନେଇ ମାମୁ କିପରି ନିଜର ଉଚ୍ଚ ଆକାଂକ୍ଷା ପୂରଣ କରିପାରିବେ ତାହା ତାଙ୍କୁ ହିଁ ଜଣା ।'

ଇତିମଧ୍ୟରେ ମୋର ସାନ ମଝିଆ ମାମୁ ଇହଲୀଳା ସାଙ୍ଗ କରନ୍ତି । ମାଇଁମାନେ ରାମାୟଣ ଶୁଣିବାକୁ ଆଗ୍ରହ ପ୍ରକାଶ କରିବାରୁ ପ୍ରଥମ ଶ୍ରେଣୀ ପାସ୍ ପଣ୍ଡିତ ହିସାବରେ ମୋ ଉପରେ ସେ ଦାୟିତ୍ୱ ଆସି ପଡ଼େ । ପ୍ରଥମେ ରାମାୟଣ ଶେଷ କରିବାକୁ ପ୍ରାୟ ମାସେ ବିତିଯାଏ ଓ ପରେ ମହାଭାରତ ପଢ଼ା ଆରମ୍ଭ ହୁଏ । ମହାଭାରତ ଗ୍ରନ୍ଥ ପାଠ ଶେଷ ହେବା ପରେ ମୋର ସାରା ଜୀବନ ପାଇଁ ପୁରାଣପାଠ କର୍ମ ଉଦ୍‌ଯାପିତ ହୁଏ । ବସ୍ତୁତଃ, ପରବର୍ତ୍ତୀ ଜୀବନକାଳରେ ମୁଁ କେବଳ ଠାକୁର ନିଗମାନନ୍ଦ ପରମହଂସଙ୍କ ଲିଖିତ ବହିର କେତେକାଂଶ, ଶ୍ରୀମଦ୍ ଭଗବଦ୍-ଗୀତା ଏବଂ ଆର୍ଯ୍ୟ ଦର୍ପଣ ମାସିକ ପତ୍ର * ବ୍ୟତୀତ ଅନ୍ୟ କୌଣସି ଗ୍ରନ୍ଥ ପାଠ କରିବାକୁ ମନ ବଳାଇନାହିଁ ।

—:o:—

* ଆସାମ ବଙ୍ଗୀୟ ସାରସ୍ୱତ ମଠରୁ ପ୍ରକାଶିତ ଶ୍ରୀ ଶ୍ରୀ ନିଗମାନନ୍ଦ ସରସ୍ୱତୀ ପ୍ରବର୍ତ୍ତିତ ସନାତନ ଧର୍ମର ମୁଖପତ୍ର ।

# ଦ୍ୱିତୀୟ ଅଧ୍ୟାୟ

## ଜିଜ୍ଞାସା

### କର୍ମ ପ୍ରସଙ୍ଗ

"ଗଦାଧର ! ଲୋକଙ୍କ ଜୀବନର ଦାୟିତ୍ୱ ଗ୍ରହଣ କଲ ସତ, କିନ୍ତୁ କେତେବେଳେ ତାକୁ ଉପଯୁକ୍ତ ଭାବେ ଶାସନ କରିଛ ? ଲେଖାପଢ଼ା ହେଲାନି, ଏପରିକି ଜୀବନଯାପନର କୌଣସି କର୍ମ ସନ୍ଧାନ ମଧ୍ୟ କରିପାରିଲା-ନାହିଁ । ଅକର୍ମାର ଜୀବନ ଦୁର୍ବହ ଏବଂ ଦୁଃଖମୟ ହେବ ସିନା ।" ଘରର ସମସ୍ତଙ୍କ ମୁଖରେ ସେହି ଗୋଟିଏ କଥା - ଗୋଟିଏ ଅଭିଯୋଗ । ମାମୁ ନୀରବ ହୋଇ ସବୁ ଶୁଣନ୍ତି । ପରେ ମୁଁ ଶୁଣିବାକୁ ପାଇଲି ଯେ, ମାମୁ ଘରେ ସମସ୍ତଙ୍କୁ କହୁଛନ୍ତି, "ଦେଖ, ତୁମେମାନେ ପିଲାକୁ ବଳପୂର୍ବକ କୌଣସି କର୍ମର ବନ୍ଧନରେ ବାନ୍ଧିବାକୁ ଚେଷ୍ଟା କର ନାହିଁ । ଭବିଷ୍ୟତରେ ତା' ଦ୍ୱାରା ମହତ୍ କର୍ମ ସାଧିତ ହେବ । କେବଳ ଧନ ସମ୍ପତ୍ତି ଠୁଳକରିବା ତା ଜୀବନର ଲକ୍ଷ୍ୟ ନ ହେଉ ।" କଥାଟି ମୋତେ ପ୍ରଭାବିତ କରେ । ମୁଁ ଭାବିବାକୁ ଲାଗେ—ମାମୁ ଆଜି କେଉଁ ମହତ୍ କର୍ମର ଇଙ୍ଗିତ କରୁଛନ୍ତି ? ମୋର ତ କୌଣସି କର୍ମ ବିଷୟରେ ଶିକ୍ଷା କିମ୍ବା ଜ୍ଞାନ ନାହିଁ । କେଉଁ କାମ ମହତ୍, କିଏ ପୁଣି ସାମାନ୍ୟ, ସେ କଥା ମଧ୍ୟ ମୁଁ ଠିକ୍ ବୁଝିପାରୁନାହିଁ । ମୋପରି ଅଯୋଗ୍ୟ ତ କେଉଁଠି ନାହାନ୍ତି । ତଥାପି ମନରେ ଏକ ସଙ୍କଳ୍ପ ଜାଗିଲା ଯେ, ମନୁଷ୍ୟ ଜୀବନର ସବୁଠୁ ମହତ୍ କର୍ମ କ'ଣ, କେବେ ନା କେବେ ମୁଁ ତାହା ନିରୂପଣ କରିବି ।

କର୍ମମୟ ସଂସାରରେ ସମସ୍ତେ ଯେତେବେଳେ ବ୍ୟସ୍ତ ମୁଁ ନିଷ୍କର୍ମା ହୋଇ ଆଉ କେତେଦିନ ବା ରହନ୍ତି ? ସମୟକ୍ରମେ ମୋର ମଧ୍ୟ କର୍ମୀ-ସୁଲଭ ଉତ୍ସାହ ପ୍ରବଳ ହୋଇ ଉଠିଲା। କର୍ମ ପ୍ରେରଣାରେ ମୁଁ ପାଗଳ ପ୍ରାୟ ହୋଇଗଲି। ବଡ଼ ହୋଇ ସିଦ୍ଧି ଲାଭ ହେଲା ପରେ ବୁଝିଁ ପାରିଲି ଯେ, ସକଳ କର୍ମର ସୂତ୍ର ବିନଷ୍ଟ ହେବା ପୂର୍ବରୁ ଏପରି କର୍ମୋନ୍ମାଦନା ସାଧକ ଜୀବନରେ ନାନାଭାବରେ ପ୍ରକାଶିତ ହୁଏ। ସଂସାରରେ ତ କର୍ମର ଅଭାବ ନାହିଁ, ସମସ୍ତେ କର୍ମର ସୂତ୍ର ନେଇ ଜନ୍ମ ହୁଅନ୍ତି। କର୍ମର ଦଶା ଏଠାରେ ସ୍ୱାଭାବିକ। କି ଜଡ଼ କି ଚେତନ, କେହି ସ୍ୱତଃପ୍ରବୃତ୍ତ ହୋଇ କେହି ବା ପରପ୍ରେରିତ ହୋଇ ନାନାପ୍ରକାର କର୍ମବ୍ୟାପାରରେ ବ୍ୟସ୍ତ। ଅଭାବବୋଧ ଏବଂ ଆନନ୍ଦ ଆସ୍ୱାଦନର ପ୍ରେରଣା ସମସ୍ତଙ୍କୁ କର୍ମବନ୍ଧନରେ ଆବଦ୍ଧ କରେ। ଅନେକ କ୍ଷେତ୍ରରେ ସତ୍‌କର୍ମର ଫଳ ସଙ୍ଗେ ସଙ୍ଗେ ମିଳେ ନାହିଁ ବରଂ ଅସତ୍‌କର୍ମର ଫଳ ସ୍ୱରୂପ ହଠାତ୍ ନାନା ସୁଯୋଗ ଓ ସମ୍ପଦ ଅସ୍ଥାୟୀଭାବେ ଲାଭ ହୋଇଥାଏ। ଏଭଳି ବୈଷମ୍ୟ ଏବଂ ବିଫଳତାବୋଧ ମଧ୍ୟରେ ସାଧାରଣ ଜୀବ ଭଗ୍ନମୂର୍ତ୍ତି ହୁଏ। ଗୁରୁ ଶୁଶ୍ରୂଷା ଏବଂ ତପସ୍ୟାର ବଳରେ ଅନୁଜ୍ଞାନ ଲାଭ ହେଲେ କଣାଯାଏ ଯେ, ଜୀବର ପ୍ରାରବ୍ଧ ତଥା ସଞ୍ଚିତ କର୍ମଫଳ ଭୋଗ ଏବଂ ସ୍ୱାଭାବିକ ମୋହ (ଅଥାତ୍ ମାୟିକ ଆବରଣୀ ଶକ୍ତି) ଏ ସମସ୍ତ ଆପାତ ବିରୋଧର ମୂଳ ହେତୁ। ମହାମାୟା ବା ମା'ଙ୍କର କୃପା (ବିକ୍ଷେପ ଶକ୍ତିର କ୍ରିୟା) ବ୍ୟତୀତ ଏହି ମୋହ ଭାଙ୍ଗେ ନାହିଁ। ପୁଣି ଭୋଗ କରିନଗଲେ ପ୍ରାରବ୍ଧ ଖଣ୍ଡିତ ହୋଇପାରେନାହିଁ। ପ୍ରାରବ୍ଧ ଭୋଗ ସାଙ୍ଗକୁ ତାଙ୍କ ଅପାର କରୁଣାଦ୍ୱାରା ସାଧକର ମୋହ ନାଶ ହେଲେ ସେ ଯୋଗଯୁକ୍ତ ହୋଇ ସମସ୍ତ କର୍ମ ସମ୍ପାଦନ କରିବାକୁ ସମର୍ଥ ହୁଏ। ସେ ଆଉ ମୋହଗ୍ରସ୍ତ ହୋଇ ଦୁଃଖାଭିଭୂତ ହୁଏ ନାହିଁ, ବରଂ ଆନନ୍ଦ ଏବଂ ଶାନ୍ତିରେ ବୁଡ଼ି ରହିଥାଏ।

## ବୟନ ଶିକ୍ଷା

କୃଷୀ କୃଷି କରୁଛି, ତନ୍ତୀ ଲୁଗା ବୁଣୁଛି। ପାଠ ପଢ଼ା ବା ହେଲାନି—ଆହୁରି କେତେକ ଧନ୍ଦା ତ ଅଛି। "ଠୁକ୍—ଠୁକ୍—ଠୁକ୍ ଏଇ ତ ସାକ୍ତା ଲଟି କି ସୁନ୍ଦର ଲୁଗା ବୁଣି ଗଲାଛି। "ଦେଖି ତୁମ୍ଭର ତନ୍ତ

କିପରି ?" ହଠାତ୍ ଦିନେ ଅନୁସନ୍ଧିତ୍ସୁ ହୋଇ ମୁଁ ଗୋଟିଏ ସାନ୍ତାଳ ପାଖରେ ଲୁଗାବୁଣା କାମ ନିରୀକ୍ଷଣ କରିବାକୁ ଲାଗିଲି । ତନ୍ତ୍ରଟିର ସମସ୍ତ ଅଂଶ ଭିନ୍ନ ଭିନ୍ନ କରି ପରୀକ୍ଷା କଲି ଏବଂ ପରଦିନ ବାଙ୍କୁଡ଼ା ଯାଇ ତନ୍ତ୍ରଟିଏ କିଣି ଆଣିଲି । ବହୁ ପରିଶ୍ରମ ସତ୍ତ୍ୱେ ତନ୍ତ୍ରଟି ବସିବାକୁ ପ୍ରାୟ ଏକମାସ ସମୟ ଅତୀତ ହୋଇଗଲା । କ୍ରମେ ଅଭ୍ୟାସ ଫଳରେ ଲୁଗା ବୁଣିବା କାମ ଦ୍ରୁତ ଗତିରେ ଆଗେଇ ଚାଲିଲା । ଆଉ ତ ଏଣିକି କେହି ମୋତେ ନିଷ୍କର୍ମା କହିବେନି । ବୟନ କର୍ମରେ ମୁଁ ସିଦ୍ଧହସ୍ତ ହୋଇଗଲି ।

## ଘର କରଣା

କାହାପାଇଁ ଏ ସମସ୍ତ କର୍ମର ଆୟୋଜନ ? କର୍ମର ଫଳ ଭୋଗ କରିବ କିଏ ? ବସ୍ତ୍ର ବୟନ କରି ଯେଉଁ ଅର୍ଥ ବା ଦ୍ରବ୍ୟ ଲାଭ ହେଲା, ମାମୁ ଘରେ ତ ତାର କୌଣସି ପ୍ରୟୋଜନ ନାହିଁ । କାରଣ ଏଠାରେ ତ କୌଣସି ଆଶୟର ଅଭାବ ନାହିଁ । ଆଉ ନିଜର ହୋଇ କେବଳ ଭାଇମାନେ ସେମାନେ କ'ଣ କରୁଛନ୍ତି ? ହଠାତ୍ ମୋ ମନରେ ମାତୃଭୂମିର ସ୍ମୃତି ଜାଗି ଉଠେ । ଥରେ ଗ୍ରାମକୁ ଯାଇ ଭାଇମାନଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ମନ ଚଞ୍ଚଳ ହେଲା । ମାମୁଙ୍କଠାରୁ ଅନୁମତି ନେଇ ଜନ୍ମସ୍ଥାନ ଲଟଡ଼ୁଆ ଚଳି । ମୋତେ ପାଖରେ ପାଇ ଭାଇମାନଙ୍କ ଆନନ୍ଦର ସୀମା ନହେଲା । ଛଅଭାଇଙ୍କ ମଧ୍ୟରେ ଦିନରାତି ଆଳାପ ଆଲୋଚନାର ସୁଅ ଛୁଟେ ।

କେତେଦିନ ମଧ୍ୟରେ ମୁଁ ଲକ୍ଷ୍ୟ କଲି ଯେ ଘରର ଆର୍ଥିକ ପରିସ୍ଥିତି ଶୋଚନୀୟ । ପିତୃବିୟୋଗ ପରେ ଭାଇମାନେ ପ୍ରାୟ ଦୁଇ ହଜାର ଟଙ୍କା କରଜଭାର ବହନ କରି ଆସିଛନ୍ତି । କୋଡ଼ିଏ ଏକର ଜମିରୁ ପ୍ରାୟ ସାତ ଏକର ପର୍ଯ୍ୟନ୍ତ ବିକି ନ ଦେଲେ ଋଣ ଓ ସୁଧ ପରିଶୋଧ ହୋଇପାରିବ ନାହିଁ । ବଡ଼ଭାଇ ନିରୁପାୟ ହୋଇ ଜମି ବିକି ଦେବାକୁ ସିଦ୍ଧାନ୍ତ କରନ୍ତି । ମୁଁ କିନ୍ତୁ ଏ ପ୍ରସ୍ତାବରେ ଏକମତ ହୋଇ ନ ପାରି ଭାଇମାନଙ୍କୁ କହିଲି, "ଭାଇ, ଆପଣ ଦୁହେଁ ଚାକିରି କରିବାକୁ ବିଦେଶକୁ ଯାଆନ୍ତୁ । ମୁଁ ଏକା ଘର ଦାୟିତ୍ୱ ନେଇ ଏଠାରେ ରହିବି । ଜମି ବିକିଦେଲେ ଭବିଷ୍ୟତ ସଂସାର ଯାତ୍ରା ଚାଳିବ କିପରି ?"

ଭଇମାନେ ମୋର ପ୍ରସ୍ତାବକୁ ସ୍ୱୀକାର କରି ବାଧ୍ୟ ହୋଇ ଗୃହର ଅନୁସନ୍ଧାନରେ ବାହାରିଲେ । ବଡ ଭାଇଙ୍କ ସହ ଅଖ୍ୟବଗ୍ରସ୍ତ ସଂସାରର ଗୁରୁଭାର ମୋ ଉପରେ ନ୍ୟସ୍ତ ହୁଏ । ସେତେବେଳେ କର୍ମ ସମ୍ପାଦନର ପ୍ରବଳ ନିଶା ମୋତେ ଅଚ୍ଛନ୍ନ କରିଥାଏ । ଅଧିକନ୍ତୁ ଏହି ନୂତନ କର୍ମବନ୍ଧନ ମୋର ସ୍ୱେଚ୍ଛାକୃତ ହେଲେହେଁ ଭଗବତ୍ ନିର୍ଭରତାରୁ ଏହା ମୋତେ ବିଚ୍ୟୁତ କରିପାରୁନଥାଏ । ଅଥଚ ନୂତନ ସ୍ଥାନରେ ଏବଂ ଅପରିଚିତ ଲୋକଙ୍କ ସଙ୍ଗେ ସମ୍ବନ୍ଧ ସ୍ଥାପନ କରି ନିର୍ଭୀକଭାବେ କର୍ମ କରିଯିବା କ୍ରମେ ମୋର ଅଭ୍ୟାସଗତ ହୋଇଯାଏ । ଦୋକାନ ମାଲିକ ମୋତେ ବାକିରେ ସଉଦା ଦେବାକୁ ରାଜି ହୁଅନ୍ତି । ମୁଁ କାନ୍ଧେ ଭାର ବହାଇ ଲୁଗା ବୁଲେ । ଦୁଇ ଦିନରେ ଖଣ୍ଡିଏ ଲୁଗା ଛାଅଁଳ ହେଲେ ଗଡ଼କୁ ଯାଇ କିଣି କରାହୁଏ । ଲାଭ ମାତ୍ର ଆଠଅଣା (ପଚିଶ ନୂଆପଇସା) । ସେ ଯୁଗରେ ଏହି ସ୍ୱଳ୍ପ ଆୟଦ୍ୱାରା କ୍ଷୁଦ୍ର ପରିବାରଟି ବେଶ୍ ଚାଲିଯାଏ ।

ସମସ୍ତ କ୍ରମେ ମୁଁ ଋଣଦାତା ମହାଜନମାନଙ୍କ ସଙ୍ଗେ ସଦ୍‌ଭାବ ସ୍ଥାପନ କରି ଭୋଗ ବନ୍ଧକ ସୂତ୍ରରେ ଜମି ସବୁ ସେମାନଙ୍କୁ ଦେଇଦିଏ । ଜମିର ଅମଳରୁ ଋଣ ଓ ସୁଧ ପରିଶୋଧ ହୋଇ ଦୁଇ ତିନିବର୍ଷ ମଧ୍ୟରେ ସମସ୍ତ ଋଣ ଜଞ୍ଜାଳରୁ ମୁକ୍ତି ମିଳେ । ସଂସାର ଯାତ୍ରା ପୁନରାୟ ସୁଗମ ହୋଇ ଉଠେ ।

ଏଥରକ ମୁଁ ଭାଇମାନଙ୍କ ପାଖକୁ ଖବର ପଠାଇ ଜଣାଇ ଦିଏ, "ଭାଇ, ନିଜ ଜମି ଜମା ଓ ସଂସାର ଦାୟିତ୍ୱ ଆପଣମାନେ ବୁଝି ନିଅନ୍ତୁ । ମୋର ଏଠା କାମ ଶେଷ ହୋଇଛି । ଏଣିକି ମୁଁ ମାମୁଁ ଘରକୁ ଫେରିଯିବାକୁ ଚାହେଁ ।" ବନ୍ଧୁସ୍ତ-ବିମୂଢ଼ ଦୁଇ ଅଗ୍ରଜ ଏକାଧାରରେ ମୋର ସ୍ୱଭାବ ସୁଲଭ କର୍ମଦକ୍ଷତା ଓ ନିଃସ୍ପୃହତାକୁ ଲକ୍ଷ୍ୟ କରନ୍ତି । ସ୍ନେହସିକ୍ତ ଅଥଚ ମୋହପୂର୍ଣ୍ଣ ବନ୍ଧନକୁ ଛିନ୍ନ କରି ନିର୍ବିକାର ଭାବେ ମୁଁ ମାମୁଁ ଘରଠାକୁ ଫେରି ଆସେ ।

## ବୈରାଗ୍ୟର ଆଭାସ ଓ କୁମ୍ଭମେଳାର ଆକର୍ଷଣ

ମାମୁଁଙ୍କ ପାଖରେ ପହଞ୍ଚି ଆଦ୍ୟୋପାନ୍ତ ସକଳ ସମ୍ବାଦ ଜଣାଇଲା ପରେ ମୁଁ କହେ, "ମାମୁ, ମୋର ସଂସାର ଭୋଗ କରିବା ଶେଷ ହେଲା ।

ଅଳ୍ପ ସମୟ ମଧ୍ୟରେ ଅନେକ ଅନୁଭୂତ ଲଭ କଲି । ଏଣିକି ମୋର କର୍ତ୍ତବ୍ୟ ନିରୂପଣ କରନ୍ତୁ ।' ମାମୁଁ ମୋତେ ଆନ୍ତରିକ ସ୍ନେହ କରୁଥିଲେ, ପ୍ରକାଶ୍ୟରେ ମଧ୍ୟ ଖୁବ୍ ଯତ୍ନ କରୁଥିଲେ । ମୋର ସରଳ ସ୍ୱଭାବ ଏବଂ ସଂସାର-ବିମୁଖ-ତାର ଆଭାସ ପାଇଲେହେଁ ମୋଲାଗି କି ପରାମର୍ଶ ଦେବେ ଖୋଜି ସ୍ଥିର କରି ପାରନ୍ତି ନାହିଁ । ସମ୍ଭବତଃ, ତାଙ୍କ ମନରେ ମୋ ଭବିଷ୍ୟତ ଜୀବନର ଗତି ସମ୍ପର୍କରେ ନାନା ପ୍ରଶ୍ନ ଜମାଟ ବାନ୍ଧୁଥାଏ ।

ଦିନେ ଖବର ମିଳିଲି ଯେ, ପ୍ରୟାଗଠାରେ ସେ ବର୍ଷ କୁମ୍ଭମେଳା ଲାଗିଛି । କଥା ଅଛି ଲକ୍ଷ ଲକ୍ଷ ସାଧୁ ଦର୍ଶନ କଲେ କୋଟି ଜନ୍ମର ପାପ ଧ୍ୱଂସ ହୁଏ । ଏ କଥା ଶୁଣି ମେଳା ଦେଖିବା ପାଇଁ ମୋର ମନ ଖୁବ୍ ଆନ୍ଦୋଳିତ ହୋଇ ଉଠିଲା । କୁମ୍ଭମେଳା ଯାଇ ସାଧୁ ଦର୍ଶନ କରିବାକୁ ସଙ୍କଳ୍ପବଦ୍ଧ ହେଲି ! କେହି ଜାଣିପାରିଲେତ ଆଉ ଯାଇଦେବେ ନାହିଁ । ତେଣୁ କାହାରିକୁ କିଛି ନ ଜଣାଇ ବାହାରିପଡ଼ିଲି । ସାଙ୍ଗରେ ସମ୍ବଳମାତ୍ର ପାଞ୍ଚଟି ଟଙ୍କା । ଆଡ୍ରା ଷ୍ଟେସନଠାରେ ପହଞ୍ଚି କୁମ୍ଭମେଳା ପାଇଁ ଟିକେଟ୍ ମାଗିବାରୁ ଟିକେଟବାବୁ କାଶୀ ପର୍ଯ୍ୟନ୍ତ ଗୋଟିଏ ଟିକେଟ ଦେଲେ । ଭଡ଼ା ସାଢ଼େ ଚାରି ଟଙ୍କା ଲାଗିଲା । ପାଖରେ ଅବଶିଷ୍ଟ ମାତ୍ର ଆଠଅଣା । କାଶୀଠାରୁ ପ୍ରୟାଗ ନିକଟ ବୋଲି ଶୁଣିଥିଲି । ରେଳଯାତ୍ରା ଆରମ୍ଭ ହେଲା । ମୋଗଲସରାଇଠାରେ କାଶୀ ଉଦ୍ଦେଶ୍ୟରେ ଟ୍ରେନ ବଦଳେଇବାକୁ ପଡ଼ିଲା । ଗାଡ଼ିରେ ଜଣେ ବଙ୍ଗୀୟ ଯୁବକଙ୍କ ସଙ୍ଗେ ସାକ୍ଷାତ ଓ ଆଳାପ ହେଲା । ତାଙ୍କ ମା କାଶୀରେ ବାସ କରନ୍ତି । ସହଯାତ୍ରୀଟି ନିଜ ମା'ଙ୍କୁ ଦେଖିବାକୁ କାଶୀ ଯାଉଥାନ୍ତି । ଅଜଣା ଅଶୁଣା ଜାଗା । ସେଥିପାଇଁ ତାଙ୍କର ଭଦ୍ରୋଚିତ ଭାବ ଲକ୍ଷ୍ୟ କରି ମୁଁ କହିଲି, ଦେଖନ୍ତୁ, ଆପଣ ଚିନ୍ତା କରିବେନି, ଆପଣଙ୍କୁ ମାଙ୍କ ପାଖରେ ପହଞ୍ଚାଇ ଦେଲା ପରେ ମୁଁ ମୋର ଗନ୍ତବ୍ୟ ପଥରେ ଯିବି । ଆମେ ଦୁହେଁ ଗୋଟିଏ ଘୋଡ଼ାଗାଡ଼ିରେ ଚଢ଼ି ତାଙ୍କ ମା ଯେଉଁଠି ରହୁଥିଲେ, ସେଠାରେ ଯାଇ ପହଞ୍ଚିଲୁ ।

କିନ୍ତୁ ଦେଖାଗଲା ଯେ ସେତେବେଳେ ତାଙ୍କ ମା ସେଠି ନ ଥାନ୍ତି । ଦିନକ ଆଗରୁ ସ୍ୱଦେଶକୁ ଚାଲିଯାଇଥାନ୍ତି । ଆମେ ଦୁହେଁ ସେଠାରେ ନିଜ

ପରିଚୟ ଦେବାରୁ ସେ ଘରର ମାଲିକ ଅତି ଆଦର ସତ୍କାରରେ ଘର ଭିତରକୁ ନେଇଗଲେ । ପରେ ପରେ ଆମେ ଗଙ୍ଗାସ୍ନାନ କରିବାକୁ ବାହାରିଲୁ ଏବଂ ମଣିକର୍ଣ୍ଣିକା ଘାଟରେ ସ୍ନାନ ସମାପନାନ୍ତେ ବିଶ୍ୱନାଥ ବାବାଙ୍କ ଦର୍ଶନ କଲୁ ।

ଆମେ ଦୁଇଜଣଯାକ ଅଳ୍ପ ବୟସ୍କ । ବିଦେଶରେ ଆପଣାର ଲୋକ କାହାକୁ ନ ପାଇ ଏବଂ ପରବର୍ତ୍ତୀ ଦିନଗୁଡ଼ିକର କଥା ଚିନ୍ତାକରି ମନ ବିଷାଦରେ ପୂର୍ଣ୍ଣ ହୋଇଗଲା । ଆଖିରୁ ଲୁହ ଗଡ଼ିବାକୁ ଲାଗିଲା । ଘର କଥା ମନେ ପଡ଼ିଲା । କିପରି ଘରକୁ ଫେରିଯିବି ଏଇ ଚିନ୍ତା ମୋତେ ଅସ୍ଥିର କଲା । ମନର ଭାବକୁ ଏବଂ ଆଖିର ଲୁହକୁ କୌଣସି ପ୍ରକାର ରୋଧ କରି ଘର ମାଲିକଙ୍କ ପାଖକୁ ଆସିଲି । ମାଲିକ ମୋତେ ପଚାରିଲେ, "ତୁମେ କ'ଣ ଏଠାକୁ ତୀର୍ଥାଟନ ଉଦ୍ଦେଶ୍ୟରେ ଆସିଛ ? ମୁଁ ସମ୍ମତି ଜଣାଇବାରୁ ସେ କହିଲେ, "ତେବେ ତୁମର କୁମ୍ଭମେଳାକୁ ଯାତ୍ରା କରିବା ଉଚିତ ।" ଏ କଥା ଶୁଣି ମୋର ମନ ପରିବର୍ତ୍ତିତ ହେଲା । ଘରର ମାଲିକ ମୋ ପାଇଁ ରାତିବେଳା ଖାଇବା ବ୍ୟବସ୍ଥା କରିଦେଲେ । ପରଦିନ କାଶୀରୁ ବାହାରି ସନ୍ଧ୍ୟା ସାତଟା ବେଳେ ପ୍ରୟାଗଠାରେ ପହଞ୍ଚିଲି ।

## ସାଧୁ ସଙ୍ଗ

ସେତେବେଳକୁ ପ୍ରଚଣ୍ଡ ଶୀତ ପଡ଼ୁଥାଏ । କୁଆଡ଼େ ଯିବି, କଅଣ ବା କରିବି, ଏ ଭଳି ଚିନ୍ତା କରୁ କରୁ ହଠାତ୍ ମନେ ହେଲା, ସାଧୁମାନେ ତ ଯତ୍‌ସାମାନ୍ୟ ପରିଧାନ ନେଇ ପ୍ରାୟ ମୁକ୍ତ ଆକାଶ ତଳେ ବାସ କରନ୍ତି । ତାଙ୍କ ଧୂନୀ ସମ୍ଭବତଃ ତାଙ୍କୁ ଶୀତରୁ ରକ୍ଷା କରେ । ଦୈବାତ୍ ଦେଖିଲି ନିକଟରେ ଦଳେ ସାଧୁ ଧୂନୀ ଜଳାଇ ବସିଛନ୍ତି । ମୁଁ ସେଠାକୁ ଯାଇ ଗୋଟିଏ ପାଖରେ ବସି ରହିଲି । ଭକ୍ତ ସାଧାରଣ ତଥା ଧନୀ ଲୋକେ ସାଧୁ ସେବାପାଇଁ ମିଠେଇ ଆଣି ସେଠାରେ ବିତରଣ କରିବାକୁ ଲାଗିଲେ । ମୁଁ ମଧ୍ୟ ସେତେ-ବେଳେ ସାଧୁଙ୍କ ମଧ୍ୟରେ ଜଣେ ହୋଇ କିଛି ମିଠେଇ ଖାଇବାକୁ ପାଇଲି । ଭାବିଲି ଜୀବନରେ ସାଧୁ ହୋଇପାରିଲେ ଆଉ ଚିନ୍ତା କ'ଣ ? ବିନା ପରିଶ୍ରମରେ ଯଥେଷ୍ଟ ମିଠେଇ ଖାଇବାକୁ ମିଳିବ !

ହରିଦ୍ୱାରରୁ ଶୌଚ କର୍ମ ସମାପନ କରିବା ପାଇଁ ଗଙ୍ଗା କୂଳେ କୂଳେ ଅନେକ ଦୂର ଯିବାକୁ ପଡ଼ିଲା । ହଠାତ୍ ଦେଖିଲି ଜଣେ ଦଶ୍‌ବର୍ଷର ନାଗା (ଭୈରବୀ) ମୋତେ ତଡ଼ି ଗୋଡ଼ାଉଛୁ । ମୁଁ ଖୁବ୍ ଭୟବିହ୍ୱଳ ଅବସ୍ଥାରେ ଦଉଡ଼ିବାରେ ଲାଗିଲି । ସେ କିନ୍ତୁ ମୋ ପଛରେ ଛୁଟି ଆସିଲା । ଏପରି ଅବସ୍ଥାରେ ଜନଗହଳି ମଧ୍ୟରେ ଲୁଚିଯାଇ ମୁଁ ନିସ୍ତାର ପାଇଲି । ମୋର ଭଜନ ସାଧନ ବା ସାଧୁ ସଙ୍ଗପାଇଁ ଘରଠାରୁ ବହୁ ଦୂର ସ୍ଥାନକୁ ଆସିବା ଅନାବଶ୍ୟକ ବୋଲି ସୂଚାଇ ମୋତେ ଏଠାରୁ ବିତାଡ଼ିତ କରିବା ଉଦ୍ଦେଶ୍ୟରେ ମା ଏପରି ଲୀଳା କରିଥିବା ସମ୍ଭବପର ।

ଏହା ପରେ ଦୁଇ ତିନି ଦିନ ମୋଟାମୋଟି ଭଲରେ କଟିଗଲା । ମୋ ମନରେ ସାଧୁ ହେବାର ବାସନା ପ୍ରଚ୍ଛନ୍ନ ହୋଇ ରହିଥାଏ । ଅନେକ ସ୍ଥାନରେ ସାଧୁମାନଙ୍କ ପାଖକୁ ଯାଇ ମନର ଅଭିଳାଷ ଜଣାଇଲି । କିନ୍ତୁ କେହି ଜଣେ ହେଲେ ମୋତେ ଶିଷ୍ୟ କରି ରଖିବାକୁ ଚାହିଁଲେନି । ଅଗତ୍ୟା ଫେରିଲି । ମାମୁ ଘରେ ଆସି ପହଞ୍ଚିବାରୁ ମୋତେ ଦେଖି ସମସ୍ତେ ଆନନ୍ଦିତ ହେଲେ ।

## ନୂତନ କର୍ମସଂସ୍ଥାନ

ପିଲାଦିନୁ ତୀର୍ଥ ଭ୍ରମଣ ଓ ସାଧୁ ସଙ୍ଗରେ ମୋର ଆଗ୍ରହ ମୋ ମାମୁ ମାନଙ୍କର ଉଦ୍‌ବେଗର କାରଣ ହୋଇପଡ଼ିଥିଲା । ଏଥରକ ସେମାନେ ମୋ ର ଭବିଷ୍ୟତ କଥା ଚିନ୍ତା କରି ମୋତେ ସଂସାର ବନ୍ଧନରେ ଆବଦ୍ଧ କରିବା ପାଇଁ ଯତ୍ନବାନ ହେଲେ । ମୋ ପାଇଁ କିଛି ଚାଷ ଜମିର ବ୍ୟବସ୍ଥା କରି ଦିଆଗଲା । ହଳେ ବଳଦ ଓ ଲଙ୍ଗଳ ନେଇ ମୁଁ କୃଷିକର୍ମ ଆରମ୍ଭ କରିଦେଲି । ମୋର ପ୍ରବଳ କର୍ମପ୍ରେରଣା ଓ ଉତ୍ସାହ ଲକ୍ଷ୍ୟ କରି ସମସ୍ତେ ଆଶ୍ୱସ୍ତ ହେଲେ— ଭାବିଲେ ଯେ ଭୋଳାନାଥ ବଡ଼ ହୋଇ ଜଣେ ପ୍ରବୀଣ କର୍ମୀ ଏବଂ ଗୃହସ୍ଥାଶ୍ରମୀ ହୋଇପାରିବ । ଗୃହସ୍ଥକୁ କର୍ମର ଆଶ୍ରୟ ନେଇ ଜୀବିକା ନିର୍ବାହ କରିବାକୁ ପଡ଼େ । କିନ୍ତୁ ବିଚକ୍ଷଣ କର୍ମୀ ମାତ୍ରେ ଯେ ଗୃହସ୍ଥ ହେବାକୁ ବାଧ୍ୟ ନୁହନ୍ତି ମୋର ପରବର୍ତ୍ତୀ ଜୀବନରେ ଏହା ପ୍ରମାଣିତ ହେଲା ।

କୃଷିଠାରୁ ବାଣିଜ୍ୟରେ ଦୁଇଗୁଣ ଲାଭ ହୁଏ । ମାମୁମାନେ ଭାବିଲେ ଯେ, ଭୋଲାନାଥ ତ ଚାଷ କାମରେ ଦକ୍ଷତା ହାସଲ କରିପାରିଲା, ଯଦି ବାଣିଜ୍ୟ ବ୍ୟବସାୟରେ ମଧ୍ୟ ସଫଳକାମ ହୋଇପାରେ, ତେବେ କୃଷି ଅପେକ୍ଷା ବାଣିଜ୍ୟ ଶ୍ରେୟସ୍କର । ମାମୁମାନଙ୍କ ନୂତନ ଯୋଜନାନୁଯାୟୀ ମହେଶପୁରଠାରୁ ପ୍ରାୟ ଦୁଇ କିଲୋମିଟର ଦୂରସ୍ଥ ଦେଲଂ ଗ୍ରାମରେ ଗୋଟିଏ ଦୋକାନ ଖୋଲି ମୁଁ ସେଠି ସୌଦାଗର ସାଜିଲି । ଦିନାକେତେ ଖୁବ୍ ଚଳିବା ଚାଲିଲା ଓ ମୋର ବ୍ୟବସାୟିକ ବୁଦ୍ଧିର ପରିଚୟ ସମସ୍ତେ ପାଇଗଲେ ।

## ସାଧୁ ଦର୍ଶନ

କିନ୍ତୁ ଗୋଟିଏ ଛୋଟିଆ ଘଟଣା ମାଧ୍ୟମରେ ସବୁଦିନ ପାଇଁ ଏହି ବୈଶ୍ୟ ବୃତ୍ତିର ଅବସାନ ଘଟିଥିଲା । ଥରେ ସେ ଗ୍ରାମଠାରୁ ପ୍ରାୟ ତିନମାଇଲ ଦୂରସ୍ଥ ଗୋଟିଏ ସ୍ଥାନରେ ନନ୍ଦଖେପା ନାମକ ଜଣେ ସାଧୁ ରାସମେଳା* କରୁଥିବା ଖବର ପାଇଲି । ମୋ ମନରେ ସାଧୁ ଦର୍ଶନର ସ୍ୱାଭାବିକ ଆଗ୍ରହ ଏବଂ ମେଳା ଦେଖିବାର କୌତୂହଳ ଜାତ ହେଲା । ସନ୍ଧ୍ୟାବେଳେ ମେଳା ଦେଖିବାକୁ ବାହାରିଲି । ଦେଖିଲି ସାଧୁ ଜଣକ ଖୁବ୍ ବୟସ୍କ । ସିଦ୍ଧ ମହାପୁରୁଷ ବୋଲି ଶୁଣିଲି । ସମସ୍ତ ଆଗନ୍ତୁକ ଦର୍ଶକଗଣ ସାଧୁଙ୍କୁ ପ୍ରଣାମ କଲେ । ମୁଁ ବ୍ରାହ୍ମଣ ବୋଲି ମନରେ ଅଭିମାନ ଜାଗିବାରୁ ପ୍ରଣାମ ନ କରି ଗୋଟିଏ ପାଖରେ ବସିପଡ଼ିଲି । ଭକ୍ତମାନେ ତାଙ୍କର ସେବା କରିବାରେ ଲାଗିଥାଆନ୍ତି । ମୁଁ ଭାବିବାକୁ ଲାଗିଲି, ଏ ସାଧୁ କି ଜାତି ନା କି ଜାତି, ଏହାଙ୍କର ପାଦସେବା ଏବଂ ପ୍ରସାଦ ଗ୍ରହଣ କରିବା କ'ଣ ବ୍ରାହ୍ମଣବଂଶଜଙ୍କ ପକ୍ଷରେ ଠିକ୍ ହେବ ? ଅଳ୍ପ ସମୟ ପରେ କିନ୍ତୁ ଦେଖିଲି ସାଧୁ ଜଣକ ଆସି ମୋ ପାଖରେ ଉପସ୍ଥିତ ଏବଂ ସେ ମୋତେ ଉଦ୍ଦେଶ୍ୟ କରି କହିଲେ, "ଦେଖ ବ୍ରାହ୍ମଣ । ଅଥଚ ବ୍ରାହ୍ମଣର ଧର୍ମ ତ୍ୟାଗ କରି ପରଧର୍ମ କରୁଛ । ଦୋକାନ କରିବା କ'ଣ ବ୍ରାହ୍ମଣର ଧର୍ମ ?" ଏତକ କହି ସାଧୁ ଚାଲିଗଲେ । ମୁଁ ବସ୍ ସ୍ତବ୍ଧମୂଢ଼ ହୋଇ ପଡ଼ିଲି । ମନରେ ପ୍ରଶ୍ନ ଜାଗିଲା, "ତାହା ହେଲେ ଦୋକାନ କରିବା କ'ଣ

*କାର୍ତ୍ତିକ ପୂର୍ଣ୍ଣିମା ଉପଲକ୍ଷେ ଭକ୍ତ ସମାଗମ ଓ ସତ୍ସଙ୍ଗ ।

ବ୍ରାହ୍ମଣ୍ୟ କର୍ମର ସୀମା ବାହାରେ । ମୁଁ ଯେବେ ବ୍ରାହ୍ମଣ ବୋଲି ପରିଚୟ ଦେବି ତେବେ ମୋର କରଣୀୟ କର୍ମ କ'ଣ ହେବା ଉଚିତ୍ ?" ମୁଁ ସଙ୍ଗେ ସଙ୍ଗେ ସ୍ଥିର କଲି ଯେ, ଆଉ ଦୋକାନ କରିବି ନାହିଁ । ପୁଣି ବେଶ୍ ଚାଲୁଥିବା ଦୋକାନଟିକୁ ହଠାତ୍ ବନ୍ଦ କରିଦେବା ସାଧାରଣ ଦୃଷ୍ଟିରେ ବୋକାମି ବୋଲି ଧରାଯିବା କଥା । ମୁଁ କିନ୍ତୁ ଯଥାଶୀଘ୍ର ଦେଣା ପାଉଣା ସମସ୍ତ ନିକାଶ କରିଦେଇ ମାମୁଙ୍କ ଗୃହ ଫେରିଆସି ଦେଇ କହିଲି ଯେ, ମୁଁ ଆଉ ଦୋକାନକୁ ଫେରିବି ନାହିଁ । ଭାବିଥିଲି ମାମୁ କାଳେ ଏଥିରେ ବିରକ୍ତ ପ୍ରକାଶ କରିବେ । କିନ୍ତୁ ମାମୁ ମୋତେ ଗୋଟିଏ ବୋଲି ପ୍ରଶ୍ନ କଲେ ନାହିଁ । ତାଙ୍କର ଏପରି ନିରୁଦ୍‌ବେଗ ଭାବ ଲକ୍ଷ୍ୟ କରି ମୁଁ ନିଶ୍ଚିନ୍ତ ହେଲି ।

## ବିବାହ ପ୍ରସ୍ତାବ

ମୋର କର୍ମ ବିମୁଖତା ଓ ବୈରାଗ୍ୟ ଭାବ ଲକ୍ଷ୍ୟ କରି ମାମୁମାନେ ମୋତେ ବିବାହ ବନ୍ଧନରେ ଆବଦ୍ଧ କରିବାକୁ କଳ୍ପନା କରନ୍ତି । ନାନା ଆଲୋଚନା ପରେ ମାମୁ-ମାଈଙ୍କ ମହଲରେ ଧାର୍ଯ୍ୟ ହୁଏ ଯେ, ଉପଯୁକ୍ତ ପାତ୍ରୀ ସଙ୍ଗେ ପରିଣୀତ କରିଦେଇ ମୋତେ ସଂସାର କର୍ମରେ ଦୃଢ଼ଭାବରେ ସଂଶ୍ଲିଷ୍ଟ କରିଦଆଯିବ । ଗଦାଧର ମାମୁ କିନ୍ତୁ ଏଥିରେ ଏକମତ ହେବା ପୂର୍ବରୁ ମୋ ମନର ଭାବ ଜାଣିବା ସଙ୍ଗତ ମନେକରନ୍ତି । ଏ ବିଷୟରେ ପ୍ରଶ୍ନ କରାଯିବାରୁ ମୁଁ ଯେଉଁ ଉତ୍ତର ଦିଏ ତାହାର ମର୍ମ ନିମ୍ନପ୍ରକାର ବୋଲି ମନେପଡ଼ୁଛି— ମୁଁ କହେ, "ମାମୁ ! ଆପଣ ବୃଥା ପ୍ରୟାସରୁ ନିବୃତ୍ତ ହୁଅନ୍ତୁ । ପିଲାଦିନୁ ଆମ ଗ୍ରାମର ବା ଆଖପାଖର ସମସ୍ତ ସ୍ତ୍ରୀଲୋକଙ୍କୁ ମୁଁ ମୋର ମା କିମ୍ବା ପରିପାଳିକା ଭାବରେ ବିଚାର କରି ଆସିଛୁ ଏବଂ ଏହି ମନୋଭାବ ନେଇ ଅବାଧରେ ସ୍ତ୍ରୀମାନଙ୍କ ମହଲରେ ମିଳାମିଶା କରିଛୁ । ଇଦାନୀଂ ଯୌବନରେ ପଦାର୍ପଣ କରିଥିଲେହେଁ କୌଣସି କନ୍ୟା ପ୍ରତି ଜାୟା ଭାବ ଅପେକ୍ଷା ମାତୃଭାବନା ଅଧିକ ସ୍ୱାଭାବିକ ଭାବରେ ଜାଗିଉଠୁଛି । ଯଦି ଗତାନୁଗତିକ ରୀତିରେ ମୋତେ ବିବାହ କରିବାକୁ ହିଁ ହୁଏ ତେବେ ପରିଣାମ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ପାଇଁ ପ୍ରତିକୂଳ ହେବାର ସମ୍ଭାବନା ରହିଛି । ଏ ଯାବତ୍ ଆପଣ ମୋତେ

ଚଉନ୍ନ ସାସାରିକ କର୍ମରେ ଲିପ୍ତ କରାଇବାକୁ ଚେଷ୍ଟା କରି ପାଇଥିବା ଫଳାଫଳ ଦୃଷ୍ଟିରେ ମୋର ଭାବୀ ବିବାହିତ ଜୀବନର ପରିଣାମ ଚିନ୍ତା କରନ୍ତୁ ।" ମୋଠାରୁ ଏଭଳି ପରାମର୍ଶ ପାଇ ମାମୁଁ ବୋଧହୁଏ ଭାବନ୍ତି ଯେ ବାସ୍ତବରେ ପିଲା ତ ଭୁଲ କଥା କହୁନି । ସମସ୍ତେ ଯେ ସ୍ୱାଭାବିକ ରୀତିରେ ବିବାହ କରି ସଂସାର ଯାତ୍ରା କରିବେ ଏଭଳି ସ୍ୱତଃସିଦ୍ଧ ନିୟମ କେଉଁଠି ଅଛି ? ଅଧିକନ୍ତୁ ଏଭଳି ଭଲ ପିଲାକୁ ସ୍ୱେଚ୍ଛାରେ ଚଳିବାକୁ ଛାଡ଼ି ଦିଆଗଲେ କୌଣସି ଦୋଷ ତ ନାହିଁ । ବରଂ ଏହା ତା ପାଇଁ କଲ୍ୟାଣକର ହୋଇ-ପାରେ । ଏ ସମସ୍ତ ଚିନ୍ତା କରି ମାମୁଁ ମୋର ବୈବାହିକ ଯୋଜନାରୁ କ୍ଷାନ୍ତ ହୁଅନ୍ତି ।

## କର୍ମ ସନ୍ନ୍ୟାସର ପୂର୍ବରୂପ

ଏଣିକି ମୋ ମନରେ ବାରମ୍ବାର ପ୍ରଶ୍ନ ଉଠେ ଯେ ମୋର ପ୍ରକୃତ କର୍ମ କ'ଣ ? ମୋର କର୍ତ୍ତବ୍ୟ କ'ଣ ? ଇତିମଧ୍ୟରେ ଦେଖିପାରିଲି ଯେ ମାମୁଁ ମୋ ପାଇଁ ଗୋଟିଏ ନୂଆ ବାସଗୃହ ନିର୍ମାଣର ଯୋଜନା କରି କାମ ଆରମ୍ଭ କରିଦେଇଛନ୍ତି । ମୁଁ ନିର୍ବିଘ୍ନରେ ଯେଉଁଥିରେ ନିଜକୁ ଜଡ଼ିତ କରି-ଦେଇ ପୁଣି ନୂତନ କର୍ମର ନିଶାରେ ମାତିଉଠିଲି । ମୋତେ କେହି କିଛି ଆଦେଶ ନିର୍ଦ୍ଦେଶ ଦେବାକୁ ମାମୁ ଆଗରୁ ନିଷେଧ କରିଥାନ୍ତି । ମୋ ନିଜ ଖିଆଲରେ ବଶବର୍ତ୍ତୀ ହୋଇ ମୁଁ ଘର ତିଆରି କାମ ତଦାରଖ କରୁଥାଏ । ପାଠଶାଳା ଗଢ଼ା ଚାଲିଛି । ମୋର ମାମୁଁ-ପୁଅ ଭାଇ ସୃଷ୍ଟିଧର ଆସି ସେଠାରେ ପହଞ୍ଚିଗଲେ । କଥାପ୍ରସଙ୍ଗରେ ସେ ପ୍ରକାଶ କଲେ ଯେ କଲିକତାର କିଛି ଦୂର ଉତ୍ତରକୁ ଥିବା ହାଲିସହରଠାରେ ଠାକୁର ଶ୍ରୀ ଶ୍ରୀ ନିଗମାନନ୍ଦ ପରମ-ହଂସଙ୍କ ଆଶ୍ରମ ଅଛି । ସେଠାକୁ ଯାଇ ସେ ଶ୍ରୀ ଶ୍ରୀ ଠାକୁରଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଅଛନ୍ତି । ନିଗମାନନ୍ଦ ଠାକୁର ଜଣେ ସିଦ୍ଧ ଯୋଗୀ, ଶାସ୍ତ୍ରଜ୍ଞ, ଗ୍ରନ୍ଥ-ପ୍ରଣେତା ଏବଂ ଆଧ୍ୟାତ୍ମିକ ମହାପୁରୁଷ । ତାଙ୍କର ମୂଳ ମଠ ଆସାମ ପ୍ରଦେଶସ୍ଥ ଶିବସାଗର ଜିଲ୍ଲାର ଯୋରହାଟ ନିକଟବର୍ତ୍ତୀ । ବଙ୍ଗଦେଶର ନାନା ସ୍ଥାନରେ ତାଙ୍କ ପ୍ରତିଷ୍ଠିତ ଆଶ୍ରମ ଅଛି । ସେ ବିଭିନ୍ନ ଆଶ୍ରମରେ

ବିଭିନ୍ନ ସମୟରେ ଅବସ୍ଥାନ କରନ୍ତି । ଦକ୍ଷିଣାଞ୍ଚଳରେ ଆମମାନଙ୍କର ସବୁଠୁ ନିକଟବର୍ତ୍ତୀ ତାଙ୍କ ପ୍ରତିଷ୍ଠିତ ଖଡ଼କୁସମା ସାରସ୍ୱତ ଆଶ୍ରମ । ସେଠାରେ ଜଣେ ପାଚକ ବ୍ରାହ୍ମଣ ଦରକାର । ଇତ୍ୟାଦି । ଏ ସବୁ କଥାର ଅବତାରଣା କରିସାରିବା ପରେ ମୋତେ ପଚାରିଲେ, "ଖୋକା, ତୁମେ ତ ସାଂସାରିକ କର୍ମରେ ଅନାସକ୍ତ ହୋଇ ରହିପାରୁଛ । ଖଡ଼କୁସମା ଆଶ୍ରମରେ ପାଚକ ନିଯୁକ୍ତ ହୋଇ ସାଧୁ ମହାପୁରୁଷଙ୍କ ସେବା କରିବ" ? ପାଚକ ଭାବରେ ନିଯୁକ୍ତ ମୋ ପକ୍ଷରେ ଖୁବ୍ ଅପମାନଜନକ ମନେ ହେବାରୁ ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, "ସୃଷ୍ଟିଧର ! ତୁମେ ତୁମ ଠାକୁରଙ୍କୁ ମୋ ପାଖକୁ ପଠାଇ-ଦିଅ । ମୁଁ ତାଙ୍କୁ ପାଚକରୂପେ ନିଯୁକ୍ତ କରିଦେବି ।"

ମୋ ମୁହଁରୁ ଏପରି ଧୃଷ୍ଟତାପୂର୍ଣ୍ଣ କଥା ଶୁଣି ସୃଷ୍ଟିଧର ନୀରବରେ ସେଠାରୁ ଚାଲିଗଲେ । ତା ପରେ କିଛିଦିନ ପର୍ଯ୍ୟନ୍ତ ସେ ମୋତେ କଥା କହି-ନାହାନ୍ତି । ମୁଁ ମଧ୍ୟ ତାଙ୍କ ସଙ୍ଗେ କଥାବାର୍ତ୍ତା କରିନାହିଁ ।

ଘଟଣା କ୍ରମେ, ଦିନେ ପାଚେରି ଗଢ଼ିବା ପାଇଁ ନିଯୁକ୍ତ ମଜୁରିଆ ଆସି-ନଥାନ୍ତି । ମୋର ମନରେ ଖିଆଲ ହେଲା ଯେ ମୂଲିଆ କେବଳ ପାଚେରି ଗଢ଼ିପାରିବେ, ମୁଁ କ'ଣ ପାରିବି ନାହିଁ ? ଚେଷ୍ଟା କରି ଦେଖାଯାଉ । ସଙ୍ଗେ ସଙ୍ଗେ ଘରକୁ ଯାଇ ମୁଢ଼ି ଜଳଖିଆ ଖାଇ ଆସି ପାଚେରି କାମରେ ଲାଗିପଡ଼ିଲି । ସକାଳ ସାଢ଼େ ଆଠଟାଠାରୁ ବେଳ ଗୋଟାଏ ପର୍ଯ୍ୟନ୍ତ ଏକା ଏକା କାମ କରି ଚାଲିଲି । ଫାଲ୍‌ଗୁନ ମାସ ହୋଇଥାଏ । ରୌଦ୍ରତାପ ପ୍ରଖର ହେବାକୁ ଚାଲିଲା । ଅତଏବ କ୍ଲାନ୍ତ ହୋଇ ସେଠାରେ ବସିପଡ଼ିଲି । ମନରେ ଅନେକ ପ୍ରଶ୍ନ ଜାଗିଲା—"ମୁଁ କଅଣ କରୁଛି ? କାହାପାଇଁ ଏତେ ପରିଶ୍ରମ କରୁଛି ? ଆଜି ଯଦି ମୋର ମୃତ୍ୟୁ ହୋଇଯାଏ, ଏ ଘରେ କିଏ ରହିବ ? ଦିନେ ତ ମୋର ମୃତ୍ୟୁ ହେବ, ମର ସଂସାରରେ ଏହା ଏକ ଅଭ୍ରାନ୍ତ ନିୟମ । ତେବେ ମୁଁ ଘର ତିଆରି କରୁଛି କାହିଁକି ?" ଏ ସମସ୍ତ ବିଚିତ୍ର ପ୍ରଶ୍ନ ଏଥିପୂର୍ବେ କେବେ ହେଲେ ମୋତେ ଅସ୍ଥିର କରିନଥିଲା । କଠିନରୁ କଠିନ କର୍ମକୁ ଅନାୟାସରେ ସମ୍ପାଦନ କରିବା ଥିଲା ମୋର ସ୍ୱାଭାବିକ ବଳାୟ । ଆଜି

କିନ୍ତୁ ଘଣ୍ଟେଟି ଘଣ୍ଟା ଅକ୍ଳାନ୍ତ ପରିଶ୍ରମ ଶେଷରେ ମନରେ ଏଭଳି ବୈରାଗ୍ୟ ଭାବର ସଞ୍ଚାର ସମ୍ପୂର୍ଣ୍ଣ ଏକ ନୂତନ ଘଟଣା ବୋଲି ମନେ ହେଲା । ଜୀବନର ମୌଳିକ କର୍ତ୍ତବ୍ୟ ନିରୂପଣ କରୁ କରୁ ମୁଁ ବିଷମ ସମସ୍ୟାର ସମ୍ମୁଖୀନ ହୋଇପଡ଼ିଲି ।

## ଶ୍ରେୟ, ପ୍ରେୟ ଓ କର୍ତ୍ତବ୍ୟ

ମୋର କର୍ତ୍ତବ୍ୟ କ'ଣ ? ଯେଉଁଭଳି କର୍ମ ସମ୍ପାଦନରେ ଜୀବନର ଶ୍ରେୟ ଲାଭ ହେବ ସେପରି ଶିକ୍ଷା ମୋର ଆବଶ୍ୟକ—ସେ ଶିକ୍ଷା ମୋତେ ଆଜି କିଏ ଦେବ ? କେଉଁ କର୍ମର ପରିଣାମ ସ୍ଥାୟୀ ହୁଏ ? ମୋର ଜୀବନ କ'ଣ କେତେକ ନିରର୍ଥକ କର୍ମ ସମ୍ପାଦନ କରି ଶେଷ ହୋଇଯିବ ? ଏ ସମସ୍ତ ଚିନ୍ତା ଆସି ମୋ ମନକୁ ଖୁବ ପ୍ରବଳ ଭାବରେ ଆଲୋଡ଼ିତ କଲା । ମରଣ ଯଦି ଅବଶ୍ୟମ୍ଭାବୀ, ବାସଗୃହ ନିର୍ମାଣ ପାଇଁ ଯତ୍ନବାନ୍ ହେବା ଏକ ଅପକର୍ମ ନୁହେଁ କି ?—ତଥାପି ଏହି ଭଳି ଅନିତ୍ୟ କର୍ମ ସମ୍ପାଦନରେ ସମସ୍ତେ ବ୍ୟାପୃତ ରହନ୍ତି କାହିଁକି ? ଏଇ କଥାଟି ମୋ ମନକୁ ଭୂତଭଳି ଆବୋରି ବସିଲା । ଘରର ଲୋକେ ଆସି ଖାଇବାକୁ ଡାକିଲେଣି । ମୁଁ କଥା କଥାରେ ଉତ୍ତର ଦେବାକୁ ଲାଗିଲି, "ଆଉ ଖାଇବାରେ କି ପ୍ରୟୋଜନ? କେତେଦିନ ପାଇଁ ବା ଏ ଜୀବନ ?" ମୋ ପାଖକୁ ଯେତେବେଳେ ଯେ କେହି ଆସନ୍ତି ମୁଁ ସେଇ ଗୋଟିଏ କଥା ତାଙ୍କୁ ଶୁଣାଉଥାଏ । କ୍ଷୁଧା ତୃଷାର ମୋହ ଯେପରି ଛିନ୍ନ ହେବାକୁ ବସିଲା । ଖବର ପାଇ ମାମୁ ଜଣେ ସେଠାରେ ଆସି ପହଞ୍ଚିଲେ ଓ ମୋତେ ପଚାରିଲେ, "କିରେ, ଶୁଣି ତୋର କ'ଣ ହେଲା ?" ମୁଁ କହିଲି, "କାଲି ଯଦି ମୁଁ ମରିଯାଏ ମୋର ଘର କ'ଣ ହେବ ?" ଏପରି ଭାବେ ମାମୁଙ୍କୁ ମୁଁ ପ୍ରଥମ ଥର ସିଧା ସଳଖ ଉତ୍ତର ଦେଲି । ବିସ୍ମୟାବିଷ୍ଟ ହୋଇ ସେ କହିଲେ, "ଆଚ୍ଛା, ଚାଲ, ଚାଲ ଘରକୁ ଯିବା, ଆଉ ଦରକାର ନାହିଁ ।" ମୋତେ ସାଙ୍ଗରେ ନେଇ ଜଣେ ପାଣି ଆଣି ଗାଧୋଆଇ ଦେଲେ । ମୋର ଖିଆପିଆର ବନ୍ଦୋବସ୍ତ ହେଲା । କିନ୍ତୁ ମୁଁ କି ଖାଇବାକୁ ଆଉ ରାଜି ହୁଏ ? ସମସ୍ତେ କହିବାକୁ ଲାଗିଲେ, "ଯାଃ ପିଲାଟା ଡରିଗଲା

ହୋଇଗଲ—ତାର ଉପଯୁକ୍ତ ଚିକିତ୍ସା କରାଯିବା ଆବଶ୍ୟକ ।" ତେଣିକି ଆରମ୍ଭ ହେଲା ମୋର ଚିକିତ୍ସା ପର୍ବ । ନାନା ରକମ ଉପଚାର ଓ ଉପାୟ ସତ୍ତ୍ୱେ ମୋର ଭାବରେ କୌଣସି ପରିବର୍ତ୍ତନ ହେଲନାହିଁ । ପ୍ରାୟ ଚାରିଦିନ କାଳ ଏପରି ଉନ୍ମତ୍ତ ଅବସ୍ଥା ମଧ୍ୟରେ ମୁଁ କ୍ଷୁଧା ତୃଷା ଭୁଲି ଯାଇଥିଲି । ଚତୁର୍ଥ ଦିନ ରାତିରେ ମୋର ହଠାତ୍ ମନକୁ ଆସିଲା, ଆଚ୍ଛା ! ସୃଷ୍ଟିଧର ତ ମୋତେ ସାଧୁଙ୍କ ଆଶ୍ରମ କଥା କହୁଥିଲେ । ମନରେ ପ୍ରଶ୍ନ ଜାଗିଲା, କି ପ୍ରକାର କର୍ମ କରି ତାଙ୍କ ଗୁରୁ ନିଗମାନନ୍ଦ ଜଣେ ମହାପୁରୁଷ ହୋଇପାରିଲେ ? ଆଶ୍ରମକୁ ଯାଇ ଦେଖିବାକୁ ହେବ ସାଧୁମାନେ କି ଭଳି କର୍ମ କରନ୍ତି ଏବଂ କି ଜୀବ ରକ୍ଷା କରି ଚଳନ୍ତି ! ସଙ୍ଗେ ସଙ୍ଗେ ସୃଷ୍ଟିଧରଙ୍କ ପାଖରେ ଉପସ୍ଥିତ ହୋଇ ଆମୂଳଚୂଳ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲି ଏବଂ କହିଲି, "ଭାଇ, ଚାଲ ଥରେ ଯାଇ ତୁମ ଆଶ୍ରମ ଦେଖିଆସିବା । ଘରେ ଏ କଥା ଜାଣିଲେ ଯିବାକୁ ଛାଡ଼ିବେନି । କେଣୁ କାହାକୁ ନ ଜଣାଇ ରାତାରାତି ମୁଁ ଓ ସୃଷ୍ଟିଧର ଦୁଇ ଅଲଗା ରାସ୍ତାରେ ଘରୁ ବାହାରିପଡ଼ିଲୁ । ସିରଜାମ ଷ୍ଟେସନଠାରେ ଦୁଇଜଣ ଆସି ମିଳିତ ହେବାର କଥା ରହିଲା । ମୁଁ ପ୍ରଥମେ ଆସି ଷ୍ଟେସନଠାରେ ପହଞ୍ଚିଲି ଓ ଷ୍ଟେସନମାଷ୍ଟରଙ୍କ ସଙ୍ଗେ ଆଳାପ କଲି । ଜଣାଗଲା ଯେ, ଭଦ୍ରଲୋକ ନିଜେ ନିଗମାନନ୍ଦ ଠାକୁରଙ୍କ ଶିଷ୍ୟ । ·ମୋର ସୃଷ୍ଟିଧର· ସଙ୍ଗେ ସମ୍ବନ୍ଧ ଏବଂ ଆଶ୍ରମ ଯାତ୍ରା ଅଭିପ୍ରାୟ ବିବେଚନା କରି ସେ ମୋତେ ତାଙ୍କ ଘରଠାକୁ ଆଣିଲେ ଏବଂ ସେଠାରେ ଥିବା ଜଣେ ସାଧୁଙ୍କ ✻ ସଙ୍ଗେ ସାକ୍ଷାତ କରାଇଦେଲେ । ମୁଁ ସେହି ସାଧୁଙ୍କୁ ଶୋଇଥିବା ଅବସ୍ଥାରେ ଦେଖିଲି କିନ୍ତୁ ପ୍ରଣାମ ଦର୍ଶିତ୍ତ କଲି ନାହିଁ । ସେ ମୋତେ ମୋର ପରିଚୟ ଓ ଯାତ୍ରାର ଉଦ୍ଦେଶ୍ୟ ସମ୍ବନ୍ଧରେ ପ୍ରଶ୍ନ କଲେ । ମୋର ନାମ, ଜନ୍ମସ୍ଥାନ ଏବଂ ଆଶ୍ରମବାସର ଅଭିପ୍ରାୟ କଥା ସଂକ୍ଷେପରେ ତାଙ୍କୁ ଜଣାଇଲି ।

ମୁଁ ସେତେବେଳେ ବଡ଼ ଖାଉଥାଏ । ସାଧୁ ଏ କଥା ଜାଣିପାରି ମୋତେ କହିଲେ, "ଦେଖ, ଆଶ୍ରମରେ ଧୂମ୍ରପାନ ନିଷେଧ । ତେଣୁ ତୁମକୁ ଆଶ୍ରମରେ ରହିବାକୁ ଅନୁମତି ମିଳିବ ନାହିଁ ।" ଏକଥା ଶୁଣି ମୁଁ ବଡ଼

✻ ଶ୍ରୀମତ୍ ସତୀଶ ବ୍ରହ୍ମଚାରୀ । ସନ୍ନ୍ୟାସନାମ : ସ୍ୱାମୀ ବ୍ରହ୍ମାନନ୍ଦ ସରସ୍ୱତୀ ।

ଚିନ୍ତାରେ ପଡ଼ିଗଲି ଓ ତାଙ୍କୁ ପଚାରିଲି, "ଆଶ୍ରମରେ କେହି ହେଲେ ବିଡ଼ି ଖାଆନ୍ତି ନାହିଁ ? ସାଧୁ କହିଲେ, ସେଠାରେ ସକଳ ପ୍ରକାର ନିଶାଦ୍ରବ୍ୟର ବ୍ୟବହାର ସମ୍ପୂର୍ଣ୍ଣ ନିଷିଦ୍ଧ ! ନିଶାଖୋରଙ୍କୁ ଆଶ୍ରମରେ ସ୍ଥାନ ଦିଆଯାଏ ନା !" ମୁଁ ମନେ ମନେ ଭାବିଲି ଯେ ଆଶ୍ରମରେ ରହିବାକୁ ହେଲେ ବିଡ଼ିଖିଆ ଛାଡ଼ିବାକୁ ହେବ ! ତେଣୁ ସାଧୁଙ୍କୁ କହିଲି, "ମୁଁ ଆପଣଙ୍କ ପାଖରେ ଶେଷ ଥରକ ପାଇଁ ଟିକିଏ ତମାଖୁ ଖାଇପାରେ ? ସେ କହିଲେ, "ଏଠି ଯେତେ ଇଚ୍ଛା ଖାଇପାର, କିନ୍ତୁ ଆଶ୍ରମରେ ଖାଇପାରିବ ନାହିଁ ।" ଏହା ଶୁଣି ତାଙ୍କ ଘରେ ଥିବା ତମାଖୁ ଦାନଟିରେ ତମାଖୁ ରଖି ଏପରି ଜୋରରେ ଟାଣିଦେଲି ଯେ ତା ମୁହଁରେ ନିଆଁ ଜଳି ଉଠିଲା ଓ ସମସ୍ତ ତମାଖୁ ଏକା ଦମକେ ଶେଷ ହୋଇଗଲା ! ଭାବିଲି, ମନ ପୂରାଇ ଶେଷଥର ପାଇଁ ଖାଇଦିଏ । ତାପରେ ମୋ ପାଖରେ ଥିବା ବିଡ଼ି ଦିଆସିଲି ସାଧୁଙ୍କୁ ଦେଇ ପ୍ରତିଜ୍ଞା କଲି ଯେ ମୁଁ ଆଉ ବିଡ଼ି ଖାଇବି ନାହିଁ । ମୋର ଆଶ୍ରମ ବାସ ତଥା ସାଧୁସଙ୍ଗ ପାଇଁ ମନ ଭିତରେ ପ୍ରଚ୍ଛନ୍ନଭାବେ ରହିଥିବା ଗଭୀର ଆଗ୍ରହର ପ୍ରମାଣ ଏ ଘଟଣାରୁ ମିଳିଥିଲା । ଇତିମଧ୍ୟରେ ସୃଷ୍ଟିଧର ଆସି ପହଞ୍ଚିଲେ । ସକାଳ ଟ୍ରେନରେ ଆମେ ଦୁହେଁ ଚଢ଼ିବେତା ଷ୍ଟେସନଠାରୁ ଆସିଲୁ । ଏଠାରୁ ଖଡ଼ିକୁସମା ଆଶ୍ରମ* ପ୍ରାୟ ୮ ମାଇଲ ଦୂରରେ ଅବସ୍ଥିତ । ପଦବ୍ରଜରେ ଏତକ ରାସ୍ତା ଅତିକ୍ରମ କରି ଆଶ୍ରମଠାରେ ଉପନୀତ ହେଲୁ । ଏହା ବଙ୍ଗାବ୍ଦ ୧୩୩୬ ସାଲ (୧୯୩୦ ମସିହା) ଫାଲ୍‌ଗୁନ ମାସର ଘଟଣା । ସେତେବେଳକୁ ମୋର ବୟସ ପ୍ରାୟ ଚବିଶ ବର୍ଷ ।

---

* ଆଶ୍ରମର ସଂପୂର୍ଣ୍ଣ ଇତିହାସ ପାଇଁ ସ୍ୱାମୀ ଚିନ୍ମୟାନନ୍ଦ ସରସ୍ୱତୀ ପ୍ରଣୀତ 'ପଶ୍ଚିମବାଂଲା ସାରସ୍ୱତ ଆଶ୍ରମେର ଇତିବୃତ୍ତି' ଗ୍ରନ୍ଥମାଳା ଦ୍ରଷ୍ଟବ୍ୟ ।

# ତୃତୀୟ ଅଧ୍ୟାୟ

## ସଂଗ୍ରାମ

### ପାଚକ ଭାବରେ ନିଯୁକ୍ତି

ଅନତିଦୂରରେ ଘନ ବନାନୀ, ଫଳପୁଷ୍ପବିମଣ୍ଡିତ ବୃକ୍ଷଲତା, ମନୋରମ ଉଦ୍ୟାନ-ବେଷ୍ଟିତ ଆଶ୍ରମର ପରିବେଶ ଦେଖିବା ସଙ୍ଗେ ସଙ୍ଗେ ମୋ ମନରେ ଏକ ବିଚିତ୍ର ଭାବ ଏବଂ ଶରୀରରେ ପୁଲକ ଜାଗି ଉଠିଲା । ଆଶ୍ରମର ଅଧ୍ୟକ୍ଷ ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ମହାରାଜାଙ୍କ ସଙ୍ଗେ ସାକ୍ଷାତ କରି ଆଲୋଚନା କଲି । ମୋର ବାପା ମା ନଥିବା କଥା ଓ ଅନ୍ୟାନ୍ୟ ଇତିବୃତ୍ତି ଶୁଣିସାରି ସ୍ୱାମୀଜୀ କହିଲେ, "ତା ହେଲେ ତୁମେ ଏଠାରେ ବାବାଜୀ ହୋଇ ରହ ।" ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, "ମହାରାଜ, ମୁଁ ବାବାଜୀ କାହିଁକି ହେବି ? ମୋର ବାପା ମା ସିନା ନାହାନ୍ତି, ଭାଇ, ମାମୁଁ ଓ ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନ ତ ଅଛନ୍ତି !" ପ୍ରକୃତ କଥା ହେଲା ପିଲାଦିନୁ ମୋର ମିଥ୍ୟା କହିବା ଅଭ୍ୟାସ ନଥିଲା । ତେଣୁ ଏହି ଆଶ୍ରମର ନିତ୍ୟକଳାପ ଓ ସାଧୁଙ୍କର ସ୍ୱଭାବ ଚରିତ୍ର ଭଲଭାବେ ପରୀକ୍ଷା ନ କରି ସାଧୁ ହେବା ପାଇଁ ପ୍ରତିଶ୍ରୁତି ଦିଅନ୍ତି କିପରି ? ମୋର ପ୍ରତ୍ୟୁକ୍ତି ଶୁଣି ମହାରାଜ କହିଲେ, "ତେବେ ଆମର ଏଠାରେ ଜଣେ ବ୍ରାହ୍ମଣ ପାଚକ ଆବଶ୍ୟକ । ତୁମେ ରହିବାକୁ ଚାହିଁବ ? ଯଦି ରାଜି ତେବେ କେତେ ଟଙ୍କା ଦରମା ନେବ କୁହ ।" ମୁଁ କହିଲି, "ମହାରାଜ ! ମୁଁ କାମ କରିବାକୁ ପ୍ରସ୍ତୁତ । କିନ୍ତୁ କେସପେଇ କହିବା ଜାଣେନା, ପୁଣି ଦିନକୁ କେତେ ଘଣ୍ଟା କାମ କରିବାକୁ ହେବ ଏବଂ କେତେ ପରିଶ୍ରମ ହେବ ସମସ୍ତ ବିବେଚନା

କରି ଯାହା ଉଚିତ ଭାବିବେ ସେହି ହିସାବରେ ପରାମର୍ଶ ଦେବେ ।”
କହିବା ବାହୁଲ୍ୟ, ମୁଁ ସେ ଶ୍ରମ କରି ରୋଜଗାର କରିବା ଉଦ୍ଦେଶ୍ୟରେ
ଆଶ୍ରମକୁ ଯାଇ ନ ଥିଲି । ମାତ୍ର ଭୁଜ ଗୃହତ୍ୟାଗ ଆଗରୁ ଘଟିଥିବା ଉଲ୍ଲେଖଯୋଗ
ଏବଂ ସାଧୁମାନଙ୍କର କର୍ତ୍ତବ୍ୟ କର୍ମ ତଦାରଖ କରିବା ଅଭିପ୍ରାୟ ମୁଁ ପ୍ରଥମ
ଦର୍ଶନରେ ଅଧିକଙ୍କୁ ଜଣାଇବାକୁ ଚାହିଁ ନ ଥିଲି । ସେ ମୋ ମନର ଗମ୍ଭୀର-
ଦେଶରେ ସୁପ୍ତ ହୋଇ ରହିଥିବା ପ୍ରବଳ ବୈରାଗ୍ୟର ସୂଚନା ପାଇଥିଲେ
କି ନା ପରବର୍ତ୍ତୀ କାଳରେ ସେ କଥା ଜାଣିବାର ସୁଯୋଗ ହୋଇଥିଲା ।
ମହାରାଜଙ୍କର ଅନୁମତିକ୍ରମେ ମୁଁ ପାଚକଭାବେ ନିଯୁକ୍ତ ହେଲି ।

ଆଶ୍ରମବାସୀ ସାଧୁ ବ୍ରହ୍ମଚାରୀ ତଥା ସେବକମାନଙ୍କର ଅଙ୍ଗୀକାର-
ଆଚରଣ ମୁଁ ଲକ୍ଷ୍ୟ କରିବାକୁ ଲାଗିଲି । ପ୍ରଥମ ଦୁଇଚାରି ଦିନ ଆଶ୍ରମରେ
ପ୍ରଚଳିତ ରନ୍ଧନ ବିଧି ଶିକ୍ଷା କରିବାକୁ ପଡ଼ିଲା । ସକଳ କର୍ମ ଅନାୟାସରେ
ଆୟତ୍ତ କରି ଖୁବ୍ ଉତ୍ସାହ ଏବଂ ଆନନ୍ଦର ସହିତ ଅଗ୍ରସର ହେଲି । ମୋର
କର୍ମପ୍ରେରଣା ଏବଂ ନିଷ୍ଠା ଲକ୍ଷ୍ୟ କରି ମହାରାଜ ଖୁବ୍ ଆନନ୍ଦିତ ହେଲେ
ଏବଂ ମୋତେ ବେଶ୍ ସ୍ନେହ କରିବାକୁ ଲାଗିଲେ ।

ଏଠାରେ ଗୋଟିଏ କଥା ଉଲ୍ଲେଖଯୋଗ୍ୟ ଯେ ସେତେବେଳେ
ଯେତିକି ଶକ୍ତିସମ୍ପନ୍ନ ହୋଇ କର୍ମ କରୁଥିଲି ସେତିକି ଅଧିକ ପରିମାଣ
ଭୋଜନ ମଧ୍ୟ କରୁଥିଲି । ମାତ୍ର ଦେଢ଼ସେର ଚାଉଳର ଅନ୍ନ ଭକ୍ଷଣ କରିବା
ଆଗରୁ ମୋର କ୍ଷୁଧା ନିବୃତ୍ତି ହେଉନଥିଲା । ମାମୁଙ୍କ ଘରେ ଖାଇବାର
ଅଭାବ କେବେ ନ ଥିଲା । ତେଣୁ ବିବିଧ ପୁଷ୍ଟିକର ଖାଦ୍ୟ ସାମଗ୍ରୀ
ଉପଯୋଗରେ ଅଶେଷ ଦକ୍ଷତା ସହ କଠିନତମ କର୍ମ, କୁଛ ହେଉ ବା
ସରଳ ହେଉ, ଅକ୍ଳେଶରେ ସମ୍ପାଦନ କରି ଆସିଥିଲି ।

## କ୍ଷୁଧାର ତାଡ଼ନା

ପ୍ରାୟ ତିନି ମାସ ଅତୀତ ହେବା ଉପରେ । ରନ୍ଧନ ଓ ଭୋଜନ ଏ
ଦୁଇଟି କର୍ମ ସମ୍ପାଦନ ଚେଷ୍ଟା ବ୍ୟତୀତ ମୋର ମନକୁ ଅନ୍ୟ କୌଣସି
ଭାବନା ସ୍ପର୍ଶ କରୁନଥାଏ—ସାଧନ ଭଜନ ତ ଦୂରର କଥା । ତଥାପି
ତତ୍କାଳୀନ ମହାରାଜାଙ୍କପରି ଜଣେ ତେଜସ୍ୱୀ ଯୋଗାରୂଢ଼ ସାଧୁଙ୍କର ସେବା

କଣବାର ଯୋଗ ମିଳିଥିବାରୁ ଚହିଁରେ କିଛିତ୍ ନିଷ୍ଠା ଅବଶ୍ୟ ଜାତ ହୋଇଥାଏ ।

ସେ ଦିନ ମଧ୍ୟାହ୍ନ ଗୋଟାକ ବେଳେ ମହାରାଜ କଟା ଗଛର ମୂଳ ତାଡ଼ିବା ପାଇଁ ବାହାରିପଡ଼ିଲେ । ମୁଁ ସେ ପର୍ଯ୍ୟନ୍ତ ଜଳପାନ କରିନଥାଏ । ସାଧୁସେବା ଅର୍ଥାତ୍ ସାଧୁଙ୍କ ଭୋଜନ ନ କରାଇବା ଯାଏଁ ମୋତେ ତ ଅଭୁକ୍ତ ରହିବାକୁଇ ହେବ । ଅନେକ ବିଳମ୍ବ ହେବା ଦେଖି ମୋ.ର ଧୈର୍ଯ୍ୟର ବନ୍ଧ ଭଙ୍ଗ ହେଲା । ମୁଁ ମହାରାଜାଙ୍କ ପାଖକୁ ଯାଇ ବିନୀତ ଭାବରେ କହିଲି, "ମହାରାଜ, ଆପଣ ଏଥର ସ୍ନାନ କରିବାକୁ ଯାଆନ୍ତୁ, ମୁଁ ଗଛର ଚେର ତାଡ଼ିଦିଏ ।" ମହାରାଜ ପଚାରିଲେ, "ପାରିବ ତ ?" "ନିଶ୍ଚୟ ପାରିବି" ବୋଲି ମୁଁ କହିବାରୁ ମହାରାଜ ସ୍ନାନ କରିବାକୁ ଚାଲିଗଲେ । ଏଣେ ଅଢ଼େଇ ପହର ଖରାକୁ ମୋର ଖାଲି ପେଟ । କୌଣସିମତେ ଗୋଟିଏ ମୂଳ ତାଡ଼ିଦେଲି ସତ, କିନ୍ତୁ ପର ମୁହୂର୍ତ୍ତରେ କ୍ଳାନ୍ତ ହୋଇ ସେଠାରେ ବସିପଡ଼ିଲି । ଏଣେ ଲକ୍ଷ୍ୟ କଲି ଯେ, ମହାରାଜ ସ୍ନାନ ଧ୍ୟାନ କରିବା ପାଇଁ ତତ୍ପର ନ ହୋଇ କଅଣ ସବୁ ହିସାବ କରିବାରେ ମନୋଯୋଗ କରିଛନ୍ତି । ମୋର ସଙ୍ଗେ ସଙ୍ଗେ ଭାବାନ୍ତର ଜାତ ହେଲା । ମୁଁ ଭାବିଲି, ଯଦି ଗଛର ମୂଳ ତାଡ଼ିଲେ ଭଗବାନ ମିଳନ୍ତି ତେବେ ଆମ ନଜର ତ ଅନେକ ବଗିଚା ରହିଛି । ମୁଁ ଏଠାରେ ଏତେ କଷ୍ଟ କରି ଲଭିବି କଅଣ ? ଘରଠାକୁ ଫେରିଯିବା ଢେର ଭଲ । ପୁଣି ଭାବିଲି, ଏମାନେ କି ରକମ ସାଧୁ ? ଏହାଙ୍କର ଆଦୌ ଦୟାମାୟା ନାହିଁ । ସୁତରାଂ ଏଭଳି ନିଷ୍ଠୁରଙ୍କ ଆଡ଼୍ଡାରେ ରହିବା ଅପେକ୍ଷା ଅନ୍ୟ ଯେ କୌଣସି ସ୍ଥାନ ଢେର ଭଲ । ମନେ ମନେ ଘରକୁ ଫେରିଯିବାକୁ ସ୍ଥିର କରିଦେଲି । ଏହିକବେଳେ ମହାରାଜ ଡ଼ାକ ପକାଇଲେ, "ଭୋଲା, ଆଉ ମୂଳ ତାଡ଼ିବାକୁ ହେବନି, ସ୍ନାନ ସାରି ଚାଲିଆସ ।" ମୁଁ ସ୍ନାନ କରି ସାରିବା ପରେ ମହାରାଜଙ୍କ ପାଖକୁ ଆସିଲି ।

## ସାଧୁଙ୍କ ସର୍ବଜ୍ଞତ୍ୱ

ସେ ସହଜଭାବେ ପଚାରିଲେ, "ତୁମ ଘରଠାକୁ ଯିବାକୁ ଗାଡ଼ି ଭଡ଼ା କେତେ ଲାଗେ ?" ପରେ କହିଲେ, "ଦେଖ, ମୋଠାରୁ ତୁମର ଗାଡ଼ି ଭଡ଼ା

ଓ ପ୍ରାପ୍ୟ ବେତନ ନ ନେଇ ଚଳିଯିବାକୁ ଚେଷ୍ଟା କରିବ ନାହିଁ । ତୁମେ ଭଦ୍ରଘରର ଯୁବକ, ବିନା ଟିକେଟରେ ଗାଡ଼ିରେ ଉଠିଲେ ଜେଲ୍ ଯିବାକୁ ପଡ଼ିପାରେ । ତୁମେ ଆଶ୍ରମରେ କିନ୍ତୁ ଆଉ ରହିପାରିବ ନାହିଁ ।" ଏ କଥା ଶୁଣି ମୁଁ ହତବାକ୍ ହୋଇଥିଲି । ମନ ଭିତରେ ଭାବିଥିବା କଥା ମହାରାଜ ଜାଣିଲେ କିପରି । ମୁଁ ତ ଏହା କେଉଁଠି ପ୍ରକାଶ କରିନ । ଏହାଙ୍କ ପାଖରେ କିଛି ଅଲୌକିକ କ୍ଷମତା ଅବଶ୍ୟ ଅଛି । ଏହାଙ୍କର ସାଧୁତ୍ୱକୁ ଆଉ ସନ୍ଦେହ କରିଯାଇନପାରେ ଏବଂ ଏହାଙ୍କର ସଙ୍ଗ ତ୍ୟାଗ କରି ସଦ୍‌ଗତି ଲାଭ ହୋଇନପାରେ । ଏ ସମସ୍ତ କଥା ଚିନ୍ତାକରି ତାଙ୍କ ପାଖରେ ବାରମ୍ବାର କ୍ଷମା ପ୍ରାର୍ଥନା କଲି । ମହାରାଜ କିନ୍ତୁ କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହନ୍ତି । ମୁଁ କହିଲି, "ମହାରାଜ, ଏଇଥରକ ପାଇଁ ମୋତେ କ୍ଷମା କରନ୍ତୁ । ମୋର ଅପରାଧ ହୋଇଯାଇଛି । ମୋର ଭ୍ରମ ଭାଙ୍ଗିଛି । ମୋତେ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେଇ ପାଖରେ ରଖନ୍ତୁ । ମୁଁ ଆଉ ଥରେ ଘରକୁ ଫେରିବାକୁ କହିବି ନାହିଁ ।" ସେ କହିଲେ, "ବାବୁ, ସାଧୁ ହେବା ଅତ୍ୟନ୍ତ କଷ୍ଟସାଧ୍ୟ । ସାଧୁ ହେବାକୁ ହେଲେ ଜୀଅନ୍ତା ଶବ ହେବାକୁ ହୁଏ । ତୁମେ କ'ଣ ହସି ହସି ମରଣକୁ ବରଣ କରିପାରିବ ?" ମୁଁ କହିଲି, ମହାରାଜ, "ମୁଁ ଏଣିକି ଆପଣଙ୍କର ଆଦେଶ ମାନି ଚଳିବି । ଦେହ ମନ ପ୍ରାଣ ସମର୍ପଣ କରି ଆଜିଠାରୁ ଆପଣଙ୍କର ଶରଣ ନେଲି । ମୁଁ ତ ଘର ଛାଡ଼ି ସାଧୁ ହେବାକୁ ହିଁ ଆସିଛି । ମୁଁ ମରିଗଲେ ମୋ ପଛରେ କାନ୍ଦିବାକୁ କେହି ନାହିଁ, ତେଣୁ ଆପଣ ମୋତେ ସାଧୁ ହୋଇ ରହିବାକୁ ଅନୁମତି ଦିଅନ୍ତୁ ।" ଏ ଭଳି ବିନୀତ ବାକ୍ୟ ଶୁଣି ମହାରାଜ ଦୟାରେ ବିଗଳିତ ହେଲେ ଏବଂ ମୋତେ ସେହି ଦିନଠାରୁ ସେବକରୂପେ ସ୍ୱୀକାର କରି ଆଶ୍ରମରେ ରଖିଲେ ।

## ଅବିଶ୍ରାମ କର୍ମ ଯୋଜନା

ଏଣିକି ମୋର ଆନନ୍ଦର ସୀମା ରହିଲା ନାହିଁ । ସବୁବେଳେ ଠାକୁରଙ୍କର କର୍ମରେ ବ୍ୟସ୍ତ ରହିଲି । ଦିନକୁ କୋଡ଼ିଏ ଘଣ୍ଟା ଯାଏ କାର୍ଯ୍ୟ

କରିବାକୁ ପଡ଼ୁଥିଲା । ଆଶ୍ରମର ନିୟମାନୁଯାୟୀ ସେବକ ବ୍ରହ୍ମଚାରୀମାନେ ରାତି-ଚାରିଟାରୁ ଉଠି ପୁଣି ରାତି ବାରଟା ପର୍ଯ୍ୟନ୍ତ ବିବିଧ କର୍ମ ସମ୍ପାଦନ କରୁଥିଲେ । ମଧ୍ୟାହ୍ନ ଭୋଜନ ପରେ ମାତ୍ର ଅଧ ଘଣ୍ଟାଏ ବିଶ୍ରାମର ସମୟ । ଦିବା ନିଦ୍ରା ସମ୍ପୂର୍ଣ୍ଣ ନିଷିଦ୍ଧ ଥିଲା । ନିଦ୍ରାଦେବୀ ମୋଠାରେ ଆବିଷ୍ଟ ହେବାକୁ ସୁଯୋଗ ପାଉ ନ ଥିଲେ । ଏଭଳି ସଂଘର୍ଷ ଚାଲିଥିଲା ବେଳେ ଦିନେ ଆରତି ସମୟରେ ନାଟମନ୍ଦିର ଚଟାଣ ଉପରେ ଢଳି ପଡ଼ି ଶୋଇ ପଡ଼ିଗଲି । ମୁଣ୍ଡ ପିଟିହୋଇ ରକ୍ତ ବୋହିବାକୁ ଲାଗିଲା । ମହାରାଜ ପଚାରିବାରୁ କହିଲି, "ମୋର ବିଶେଷ କିଛି ହୋଇନାହିଁ । କୀର୍ତ୍ତନ କରୁ କରୁ ବୋଧହୁଏ ନିଦ୍ରାଭିଭୂତ ହୋଇପଡ଼ିଲି । ଆଜିକାଲି ଠିଆ ହୋଇଥିବା ଅବସ୍ଥାରେ— ଏପରିକି ଚାଲୁ ଚାଲୁ ମଧ୍ୟ ମୁଁ ନିଦ୍ରାଗ୍ରସ୍ତ ହୋଇପଡ଼ୁଛି । ସବୁବେଳେ ଆଖିରେ ନିଦର ଆବେଶ ଲାଗି ରହୁଛି ।" ଏ କଥା ଶୁଣି ସେଠାରେ ଉପସ୍ଥିତ ସମସ୍ତେ ହସି ପକାଇଲେ । କିନ୍ତୁ ସେହିଦିନଠାରୁ ମହାରାଜ ମୋ ଉପରୁ କର୍ମର ଭାର ଲାଘବ କରିଦେଲେ । ଅନ୍ୟାନ୍ୟ କର୍ମର ଚାପ କମିଗଲା, କିନ୍ତୁ ଠାକୁର ପୂଜାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ ରହିଲା । ସେହି ଦିନଠାରୁ ଦୁଇବେଳା ଠାକୁର ପୂଜା କରେ ଏବଂ ବାକି ସମୟରେ ମହାରାଜଙ୍କ ପାଖେ ପାଖେ ରହି ତାଙ୍କର ଆଦେଶ ପାଳନ କରେ । ମୋର ଭବିଷ୍ୟତ ସାଧନ ଜୀବନର ମୂଳଦୁଆ ଏହିକିବେଳେ ପଡ଼ିଥିଲା ବୋଲି କହିବାକୁ ହେବ ।

## ଇନ୍ଦ୍ରିୟ ନିଗ୍ରହ ପାଇଁ ଉପଦେଶ ଲାଭ

ମୋର ଅତିରିକ୍ତ ଭୋଜନ ଲାଳସାକୁ ଲକ୍ଷ୍ୟ କରି ଚିଦାନନ୍ଦ ମହାରାଜ ଥରେ ମନ୍ତବ୍ୟ କଲେ, "ବାବା ! ସାଧୁ ହେବାକୁ ହେଲେ ଇନ୍ଦ୍ରିୟମାନଙ୍କୁ ସ୍ୱ ବଶରେ ରଖିବାକୁ ହେବ । ସାଧନ ଭଜନରେ ସିଦ୍ଧିଲାଭ ପାଇଁ ଯମ-ନିୟମ ପାଳନ ଓ ହିତ କଥା ମିତାହାର ନିତାନ୍ତ ପ୍ରୟୋଜନ । ଅହିଂସା, ସତ୍ୟ, ଅସ୍ତେୟ (ଚୋରି ନ କରିବା), ବ୍ରହ୍ମଚର୍ଯ୍ୟ ଏବଂ ଅପରିଗ୍ରହ (ଲୋଭ ତୃପ୍ତି କିମ୍ବା ସୁଖଭୋଗ ପାଇଁ ନୁହେଁ; ବରଂ ଜୀବନ ରକ୍ଷାର୍ଥେ

ସାମାନ୍ୟତମ ଖାଦ୍ୟ ଓ ପରିଧାନର ଉପଯୋଗ)—ଏଇ ପାଞ୍ଚଟି ସାଧନାର ନାମ 'ଯମ'। ଶୌଚ, ସନ୍ତୋଷ, ତପସ୍ୟା, ସ୍ୱାଧ୍ୟାୟ (ନିୟମିତ ସଦ୍‌ଗ୍ରନ୍ଥ ପାଠ) ଏବଂ ଈଶ୍ୱର ପ୍ରଣିଧାନକୁ ନିୟମ କୁହନ୍ତି। ଏହି ମୌଳିକ ସାଧନ ଦ୍ୱୟର ଅଭିପ୍ରାୟ ହେଲା ନିଜର ଶରୀର ରକ୍ଷା ପାଇଁ ସାମାନ୍ୟତମ ବସ୍ତୁ ସଂଯୋଗ କରି ନିରଳସ ଭାବେ ଏବଂ ତତ୍ପରତା ସହକାରେ ସମସ୍ତ ଜୀବଜଗତର ସେବା କରିବା ସଙ୍ଗେ ସଙ୍ଗେ ଆତ୍ମଜ୍ଞାନ ଲାଭ ପାଇଁ ଯୋଗ ସାଧନାର ଉଚ୍ଚତର ସୋପାନରେ ଆରୋହଣ କରିବା।" ମହାରାଜାଙ୍କ ଠାରୁ ମଧ୍ୟେ ମଧ୍ୟେ ଏପରି ଉପଦେଶ ଲାଭ କରି ଏବଂ ତାଙ୍କର ତ୍ୟାଗ-ତିତିକ୍ଷା-ପୂର୍ଣ୍ଣ ଜୀବନ ଓ କର୍ମକୌଶଳ ଲକ୍ଷ୍ୟ କରି କ୍ରମଶଃ ମୁଁ ଉଦ୍‌ବୁଦ୍ଧ ହେବାକୁ ଲାଗିଲି।

ମଧ୍ୟେ ମଧ୍ୟେ କିନ୍ତୁ ନାନା ପ୍ରମାଦ ଏବଂ ଚିତ୍ତ ଚାଞ୍ଚଲ୍ୟ ଉପସ୍ଥିତ ହେଉଥାଏ। ଯେପରି, ଥରେ ମନେ ମନେ ପ୍ରତିଜ୍ଞା କଲି ଯେ ଭୋଜନର ପରିମାଣ ଖୁବ୍ କମ୍ କରିଦେଇ ଅତି ଶୀଘ୍ର ଯୋଗ ସିଦ୍ଧିର ଅଧିକାରୀ ହୋଇଯିବି! ଦିନାକେତେ ମୋର ଭୋଜନର ପରିମାଣ ଅତିରିକ୍ତ ଭାବେ କମିଗଲା। ଏହାର ଫଳରେ ଖୁବ୍ ଦୁର୍ବଳ ବୋଧ କଲି ଏବଂ ଆଗଭଳି ଅନାୟାସ ଭାବେ କର୍ମ କରିବା ଅସମ୍ଭବ ହେଲା। ଏକଥା ଲକ୍ଷ୍ୟ କରି ମହାରାଜ ମୋତେ ଭ୍ରମ ଭାଙ୍ଗିବା ଉଦ୍ଦେଶ୍ୟରେ ପୁଣି କହିଲେ, "ବଳପୂର୍ବକ କିମ୍ବା ଦ୍ରୁତ ଗତିରେ ଯୋଗ ସିଦ୍ଧି ହୁଏ ନାହିଁ। ବରଂ ଏପରି କଲେ ଫଳ ବିପରୀତ ହୁଏ। ଖୁବ୍ ଧୀରେ ଧୀରେ ଓ ସହଜ ତଥା ଅନୁଦ୍‌ବିଗ୍ନ ଭାବରେ ସାଧନା କରାଯାଏ। "ପରିମିତ ଆହାର ଓ ବିହାର କରିବାକୁ ହୁଏ। ଅତିମାତ୍ରାରେ ଶ୍ରମ ବା କାୟକ୍ଲେଶ ମଧ୍ୟ ନିଷିଦ୍ଧ।" ମୁଁ ଏ କଥା ଶୁଣି ପ୍ରତିଦିନ ଭୋଜନର ମାତ୍ରା ଅଳ୍ପ ଅଳ୍ପ କରି କମାଇବାକୁ ଲାଗିଲି ଏବଂ କ୍ଷୁଧା ଜାତ ହେଲେ ଅଳ୍ପ ଅଳ୍ପ କରି ପାଣି ପିଇଲି। ଏପରି କିଛିଦିନ ଅଭ୍ୟାସ କରିବା ଫଳରେ ଖାଦ୍ୟପ୍ରତି ଆସକ୍ତି ଧୀରେ ଧୀରେ କମିଗଲା। ଅଥଚ କମ୍ ପରିମାଣ ଭୋଜନ କଲେହେଁ ଅଭ୍ୟାସବଶତଃ ଶାରୀରିକ ଦୁର୍ବଳତା ବୋଧ

କହୁଲ ନାହିଁ । ଏହୁପରି ଭାବେ ମୋର ଅନ୍ଧ ଭୋଜନ ଓ ଦିବାନିଦ୍ରା ପ୍ରବୃତ୍ତି କମି ଆସିଲା ।

ଏତେବେଳେ ଦିନରାତି କେବଳ ସେବା ଓ ବିଭିନ୍ନ ଆଶ୍ରମିକ କର୍ମ କରିବାର ପ୍ରେରଣା ମୋ ମନରେ ଜାଗ୍ରତ ହୋଇ ରହୁଥିଲା ଏବଂ ମୁଁ ଆନନ୍ଦାଚ୍ଛନ୍ନ ମଧ୍ୟରେ ସକଳ ପ୍ରକାର କର୍ମ ସମ୍ପାଦନ କରୁଥିଲି । ଏଥିଯୋଗୁଁ ମୋ ମନରେ ବା ଦେହରେ ଅବସାଦ ଲେଶ ମାତ୍ର ରହୁ ନଥିଲା । ବେଳେ ବେଳେ ମନରେ ଭାବୁଥିଲି ଯେ ଅତୀତରେ ତ ଅନେକ ଜନ୍ମ ବିତିଯାଇଛି । ସତ୍ କି ଅସତ୍ କର୍ମ କରିଛି ଜାଣିବାର କୌଣସି ଉପାୟ ନାହିଁ । ଇହ ଜନ୍ମରେ ଯେତେବେଳେ ବିବେକସମ୍ମତ ସତ୍‌କର୍ମ ଓ ସେବା କରିବା ପାଇଁ ସୁଯୋଗ ମିଳିଛି, ସାରା ଜୀବନ ଏଥିରେ ବ୍ୟାପୃତ ରହି ପାରିଲେ ସେ ପରମ କଲ୍ୟାଣ ହେବ ଏକଥା ନିଃସନ୍ଦେହ । ଏପରି ବିଚାର କରି ମୋର ଦିନେ ବୋଲି ଉତ୍ସାହ କମିନଥିଲା—ଅଫୁରନ୍ତ କର୍ମର ସ୍ରୋତରେ ମୁଁ ନିଜକୁ ଭସାଇ ଦେଇଥିଲି । ଗୃହଁ ଗୃହଁ ପ୍ରାୟ ଆଠଟି ମାସ ଅତୀତ ହୋଇଗଲା ।

## ସାଧୁ ହେବାପାଇଁ ଜ୍ଞାତିଙ୍କ ଅନୁମତି

ଦିନେ ମହାରାଜ ମୋତେ ଡାକି କହିଲେ, ଭୋଲା ! ତୁମେ ଥରେ ନିଜ ଘରକୁ ଯାଇ ସମସ୍ତଙ୍କ ସଙ୍ଗେ ସାକ୍ଷାତ କରି ଫେରିଆସ । ମହାରାଜଙ୍କ ଏପରି ଆଦେଶ ପାଇ ଅଦୂର ଭବିଷ୍ୟତରେ ଆନୁଷ୍ଠାନିକଭାବେ ଲାଭ ହେବାକୁ ଯାଉଥିବା ମୋର ସାଧୁତ୍ୱ କଥା ପ୍ରଫୁଲ୍ଲିତ ହୋଇ ଚିନ୍ତା କରୁଥିଲି । ମହାରାଜ ମୋର ଯାତାୟାତ ଖର୍ଚ୍ଚ ଦେଇ ବିଦାୟ ଦେଲେ । ମୁଁ ପୂର୍ବୁଲମ୍ବା ବସ୍ ଧରି ବାଲକଡିହଠାରେ ପହଞ୍ଚିଲି । ସେଠାରୁ ଜଙ୍ଗଲ ରାସ୍ତାରେ ପଦଯାତ୍ରା କରୁଥିବାବେଳେ ଗଦାଧର ମାମୁଙ୍କ ସଙ୍ଗେ ଦୈବାତ୍ ସାକ୍ଷାତ ହୋଇଗଲା । ଗୋଟିଏ ଗଛମୂଳେ ଦୁଇଜଣ ପରସ୍ପରକୁ ଗୁହିଁ ଦଶ ପନ୍ଦର ମିନିଟ୍ ସମୟ ନିର୍ବାକ ହୋଇ ରହିଲୁ । ମାମୁ ମୋର ସାଧୁ ହେବାପାଇଁ ଅଭିଳାଷ ଲକ୍ଷ୍ୟ କରି କହିଲେ, "ଦେଖ ବାବା, ତୁମେ ଯେଉଁ ପଥର ପଥିକ ହେବାକୁ ଯାଉଛ

ସେଥିରେ ଯେପରି ଅବିଚଳିତ ଏବଂ ଦୃଢ଼ ହୋଇ ରହିବ ଏବଂ ତୁମର ସତ୍
ସଙ୍କଳ୍ପ ରକ୍ଷା କରିବ, ସେହି ପଥର ମର୍ଯ୍ୟାଦା ରଖି ଚଳିବ । ମୁଁ ଆଶୀର୍ବାଦ
କରୁଛି ଭଗବାନ ତୁମକୁ ଚିର ଶାନ୍ତି ପ୍ରଦାନ କରନ୍ତୁ । ମଣିଷ ପରି ମଣିଷ
କରିବା ବାସନା ରଖି ପିଲାଦିନୁ ତୁମକୁ ପାଳିଥିଲି । ଏବେ ତୁମେ ଭଲ ମଣିଷ
ହୋଇପାରିଥିବା ଦେଖି ଆନନ୍ଦିତ ହେଲି । ଏଠାରୁ ଘରକୁ ଯାଅ । ମୁଁ
ଅପରାହ୍ଣରେ ଫେରି ତୁମ ସଙ୍ଗେ ଆଳାପ କରିବି ।”

ମୁଁ ସେଠାରୁ ମହେଶପୁର ଅଭିମୁଖେ ଅଗ୍ରସର ହେଲି । ସମସ୍ତେ
ମୋତେ ସାଧୁବାବା ବୋଲି ସମ୍ବୋଧନ କରୁଥାଆନ୍ତି, କାରଣ ମୁଁ ହଳଦିଆ
ଲୁଗା ପିନ୍ଧିଥାଏ । ମାମୁଙ୍କ ଘରଠାକୁ ଗଲି । ବନ୍ଧୁବାନ୍ଧବମାନେ ଆସି ମୋ
ସଙ୍ଗେ ଦେଖା ସାକ୍ଷାତ କଲେ । ମୁଁ ମଧ୍ୟ ସମସ୍ତଙ୍କ ସଙ୍ଗେ ସାଧୁଜନୋଚିତ
ବ୍ୟବହାର କଲି । ମୋର ଅଲଗା ରହିବା ଓ ଖାଇବା ବନ୍ଦୋବସ୍ତ
କରାଗଲା । ମୁଁ ସ୍ୱପାକରେ ଭୋଜନ କଲି । ଅପରାହ୍ଣରେ ମାମୁ ଆସିଲେ ।
ମୋତେ ମୋର ଅନୁଭୂତି ସବୁ ପଚାରିବାକୁ ଆରମ୍ଭ କଲେ । ମୁଁ ଆଶ୍ରମିକ
ସାଧୁ ଜୀବନ ଏବଂ ପାଠ କର୍ମ, ସେବା ପୂଜାର ଦାୟିତ୍ୱ ଇତ୍ୟାଦି ସମସ୍ତ
କଥା ତାଙ୍କୁ ଜଣାଇଲି । ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ମାମୁଙ୍କ ଘର-
ଠାରେ ୪।୫ ଦିନ ରହିବା ପରେ ନିଜ ଗ୍ରାମକୁ ଆସିଲି । ଆମ ଗ୍ରାମର
ଅନେକ ବ୍ରାହ୍ମଣ ପଣ୍ଡିତ ମୋ ସହ ସାକ୍ଷାତ୍ କରି ନାନା ପ୍ରଶ୍ନ ଓ ଆଲୋଚନା
କରିବାକୁ ଲାଗିଲେ । ଈଶ୍ୱର କୃପାରୁ ମୁଁ ଯଥାଯଥ ଉତ୍ତର ଦେଇ
ସେମାନଙ୍କର ସନ୍ଦେହ ଦୂର କଲି । ପଣ୍ଡିତଙ୍କ ମଧ୍ୟରେ ଜଣେ ବୃଦ୍ଧ ବ୍ରାହ୍ମଣ
ଥିଲେ । ସେ ଆସି ମୋର ହାତ ଧରି ନାନା ଶାସ୍ତ୍ର ଓ ପୁରାଣରୁ ଉପଦେଶ
ଦେଲେ ଏବଂ କହିଲେ, ସଂସାର ମାଧ୍ୟମରେ ହିଁ ସମସ୍ତ ପୁରୁଷାର୍ଥ ଲାଭ ହୋଇ
ପାରିବ । ଅତଏବ ସଂସାର ତ୍ୟାଗ କରିବାର ପ୍ରୟୋଜନ କଅଣ ? ମୁଁ
ତାଙ୍କୁ କି ଉତ୍ତର ଦେବି ସ୍ଥିର କରିନପାରି ଶ୍ରୀ ଶ୍ରୀ ଠାକୁରଙ୍କୁ ମନରେ
ସ୍ମରଣ କଲି । ମୁଁ କହିଲି, “ମହାଶୟ, ମୁଁ ଆପଣଙ୍କ କଥାର ଉତ୍ତର
ହଠାତ୍ ଦେଇପାରୁ ନାହିଁ । କେବେ ପ୍ରଥମେ ଆପଣ ମୋର ଗୋଟିଏ
ପ୍ରଶ୍ନର ଉତ୍ତର ଦେବେ କି ?” ସେ ସମ୍ମତ ହେବାରୁ ମୁଁ ବିନୀତ ଭାବେ

କହିଲେ, "ଦେଖନ୍ତୁ, ଭଗବାନଙ୍କର ଆଶୀର୍ବାଦରୁ ଆପଣଙ୍କର କୌଣସି ଅଭାବ ଥିଲାଭଳି ମନେ ହେଉନାହିଁ । ଆପଣ ସବୁ ବିଷୟରେ ହୁଏତ ପୂର୍ଣ୍ଣତା ଲାଭ କରିପାରିଛନ୍ତି । କିନ୍ତୁ ଏ ସମସ୍ତ ସୁଖବୈଭବ, ଯଶ, ଧନସମ୍ପଦ ଓ ବଡ଼ ପାଣ୍ଡିତ୍ୟ ଭିତରେ ମଧ୍ୟ ଆପଣ ଶାନ୍ତି ପାଇଛନ୍ତି କି ? ପୁଣି, ଆପଣଙ୍କ ପରି ଆଉ କେତେଜଣ ସିଦ୍ଧପୁରୁଷ ବା ଅଛନ୍ତି ? କେବଳ ଶାନ୍ତି ପାଇବା ପାଇଁ ମୁଁ ଦୌଡ଼ାଦୌଡ଼ି କରୁଛି । ଯଦି ଆପଣ ମୋତେ ଶାନ୍ତି ପାଇବାର ବାଟ ବତାଇ ଦେଇପାରିବେ ତେବେ ମୁଁ ଆପଣଙ୍କ ପାଖରେ ରହିବି, ମୋର ଅନ୍ୟତ୍ର ଯିବା ଅନାବଶ୍ୟକ । ଶାନ୍ତି ପାଇବା ପାଇଁ ତ ମୁଁ ଆଶ୍ରମକୁ ଯାଇଛି ।" ବୃଦ୍ଧ ବ୍ରାହ୍ମଣ ଏ କଥାର କୌଣସି ଉତ୍ତର ଖୋଜି ପାଇଲେ ନାହିଁ । କିଛି ସମୟ ନୀରବ ରହିବା ପରେ ମୋର ହାତଟିକୁ ଛୁଇଁଦେଇ କହିଲେ, "ନା ବାବା, ଜୀବନରେ ଶାନ୍ତି ବ୍ୟତୀତ ଆଉ ସବୁ ପାଇଛି । ଶାନ୍ତି ପାଇବି, ପାଇବାର ଆଶା ମଧ୍ୟ ନାହିଁ । ତୁମେ ଯେଉଁ ପଥରେ ଯାଉଛ ସେହି ପଥ ହିଁ ଶ୍ରେୟସ୍କର । ସେହି ପଥରେ ଆଗେଇଯାଅ, ତୁମକୁ ଆଉ କେହି ବାଧା ଦେବେ ନାହିଁ । ଏ ସବୁ ଆଲୋଚନା ବେଳେ ମୋର ଭାଇମାନେ ମଧ୍ୟ ସେଠାରେ ଥିଲେ । ସେମାନେ ମୋର ମନୋଭାବ ଲକ୍ଷ୍ୟ କରି ପଥରୋଧ କରିବା ପାଇଁ ଆଉ ସାହସ କଲେ ନାହିଁ । କହିଲେ, "ଭୋଳା, ସନ୍ନ୍ୟାସାଶ୍ରମରେ ରହିଲେହେଁ ମଝେ ମଝେ ଆମେମାନେ ତୁମର ଦର୍ଶନ ଯେପରି ପାଉ; ଆମ କଥା ମନରୁ ଭୁଲି ଯିବ ନାହିଁ ।" ଏହିପରି ସମସ୍ତଙ୍କଠାରୁ ବିଦାୟ ନେଇ ଏବଂ ସଂସାରାଶ୍ରମର ବାସନା ଚିରଦିନ ପାଇଁ ଛିନ୍ନ କରି ମୁଁ ଆଶ୍ରମକୁ ଫେରି ଆସିଲି । ଆନନ୍ଦ ଓ ଉଲ୍ଲାସ ମଧ୍ୟରେ ଆଶ୍ରମର ନାନା କର୍ମ ସମ୍ପାଦନ କରୁ କରୁ ପ୍ରାୟ ଦୁଇଟି ବର୍ଷ ଅତିବାହିତ ହୋଇଗଲା ।



# ଚତୁର୍ଥ ଅଧ୍ୟାୟ

## ପ୍ରତୀକ୍ଷା

### ଭକ୍ତ ସମ୍ମିଳନୀର ୧.୬

୧୩୩୯ ସାଲ ପୌଷ ମାସ (ଡିସେମ୍ବର ୧୯୩୨ ମସିହା)ରେ ଖଡ଼କୁସମା ଆଶ୍ରମରେ ସାର୍ବଭୌମ ଭକ୍ତ ସମ୍ମିଳନୀର ଆୟୋଜନ ହେବାକୁ ଲାଗିଲା । ଭକ୍ତ ସମ୍ମିଳନୀ ପରମାରାଧ୍ୟ ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ ପରମହଂସଙ୍କର ଏକ ଅଭିନବ ଦାନ । ବର୍ଷକୁ ଥରେ ଶ୍ରୀ ଶ୍ରୀ ଠାକୁରଙ୍କର ଗୃହୀ ଓ ସନ୍ନ୍ୟାସୀ ଶିଷ୍ୟଙ୍କର ପ୍ରେମପୂର୍ଣ୍ଣ ମହାମିଳନ ଏହି ସମ୍ମିଳନୀ ପୀଠରେ ସଂଘଟିତ ହୁଏ । ସନାତନ ଧର୍ମ ପ୍ରଚାର, ସତ୍‌ଶିକ୍ଷା ବିସ୍ତାର ଏବଂ ଆଦର୍ଶ ଗୃହସ୍ଥ ଜୀବନ ଗଠନ ଉଦ୍ଦେଶ୍ୟରେ ଏହି ସମ୍ମିଳନୀ ବେଳେ ସଂଘଶକ୍ତି ପ୍ରତିଷ୍ଠା, ଭାବ ବିନିମୟ, ଆନନ୍ଦ ସଭା, ସାଧାରଣ ସଭା ଇତ୍ୟାଦି ଅନୁଷ୍ଠିତ ହୁଏ । ମୁଁ ଏ ସମ୍ବନ୍ଧରେ ଆଶ୍ରମାନ୍ତେବାସୀଙ୍କ ମୁଖରେ ନାନା କଥା ଶୁଣିଥିଲେହେଁ ଆଗରୁ ଏ ସମ୍ମିଳନୀ ଦେଖିବାର ସୁଯୋଗ ମୋର ହୋଇନଥାଏ । ସମ୍ମିଳନୀ ମଣ୍ଡପରେ ଶ୍ରୀ ଶ୍ରୀ ଠାକୁର ସ୍ୱୟଂ ସଭାପତି ହୋଇ ସଭାକାର୍ଯ୍ୟ ପରିଚାଳନା କରନ୍ତି । ମୋର ସେତେବେଳଯାଏଁ ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍ଗେ ସାକ୍ଷାତ୍ ଦର୍ଶନ ହୋଇନଥାଏ । ସମ୍ମିଳନୀ ଅବସରରେ ଶ୍ରୀ ଶ୍ରୀ ଠାକୁରଙ୍କ ଦର୍ଶନ କରିବା ପାଇଁ ସୁଯୋଗ ମିଳିବ, ଏହି ଆଶାରେ ମୋ ମନରେ ଉତ୍ସାହ ଓ ଆନନ୍ଦର ତରଙ୍ଗ ଭଙ୍ଗ ଚାଲିଥାଏ । ମୁଁ ଦ୍ୱିଗୁଣ ଉଦ୍ଦୀପନା ଏବଂ ପ୍ରେରଣା ନେଇ ସେତେବେଳେ ଯେଉଁ କର୍ମ ପାଇଲି ତାହା

ପୂର୍ଣ୍ଣପ୍ରାଣରେ ନବାହ୍ନ କରୁଥାଏ । କେତେ ଗୃହୀ, ସନ୍ନ୍ୟାସୀ, ମା, ଭାଇ ଓ ଭଉଣୀ ଏହି ସମ୍ମିଳନୀ କ୍ଷେତ୍ରରେ ମିଳିତ ହୋଇଥାଆନ୍ତି । ଆମମାନଙ୍କର ଦୁର୍ଭାଗ୍ୟ, ସେଥରକ ଶ୍ରୀ ଶ୍ରୀ ଠାକୁର ଭାରତ ଭ୍ରମଣ ଉପଲକ୍ଷେ ବଙ୍ଗଦେଶ ବାହାରକୁ ଚାଲିଯାଇଥାନ୍ତି । ସମ୍ମିଳନୀର ପ୍ରଥମ ଦିନ ସମ୍ବାଦ ଆସି ପହଞ୍ଚିଲା ଯେ, ପରମ ପ୍ରେମମୟ ଗୁରୁଦେବ ସମ୍ମିଳନୀରେ ଯୋଗ ଦେଇପାରିବେ ନାହିଁ । ସୁତରାଂ ତାଙ୍କର ପ୍ରତିନିଧିରୂପେ ତଦୀୟ ଶିଷ୍ୟ ପୂଜ୍ୟ ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀ ମହାରାଜ ସଭାପତି ହୋଇ ସକଳ କାର୍ଯ୍ୟ ପରିଚାଳନା କରନ୍ତି । ମୋର ସେଥରକ ପାଇଁ ଶ୍ରୀ ଶ୍ରୀ ଠାକୁରଙ୍କୁ ଦର୍ଶନ କରିବା ଆଶା ଅପୂର୍ଣ୍ଣ ହୋଇ ରହିଲା ।

ମୁଁ ଭାବିବାକୁ ଲାଗିଲି, ଆଶ୍ରମବାସ ପ୍ରାୟ ଦୁଇବର୍ଷ ହେବାକୁ ବସିଲା, ଅଥଚ ଆଶ୍ରମର ପ୍ରତିଷ୍ଠାତା ବହୁ ଭକ୍ତ ଶିଷ୍ୟଙ୍କର ଆରାଧ୍ୟ ଶ୍ରୀ ଶ୍ରୀ ଠାକୁରଙ୍କ ଦର୍ଶନ ଲାଭ ହେଲା ନାହିଁ । ସମ୍ମିଳନୀ ସମୟକୁ ଚାହିଁ ବସିଥିଲି । କିନ୍ତୁ ବିଧିର ବିଡ଼ମ୍ବନା, ମୋର ଈପ୍‌ସିତ ନିର୍ବିକଳ୍ପ-ସମାଧିସିଦ୍ଧ ସଦ୍‌ଗୁରୁ ଆଚାର୍ଯ୍ୟଦେବ ଝଡ଼କୁସୁମା ଆଶ୍ରମକୁ ଆସିଲେ ନାହିଁ । ତାଙ୍କ ପ୍ରତୀକ୍ଷାରେ କେତେ ଉତ୍ସାହ କେତେ ଆନନ୍ଦରେ ମୁଁ କର୍ମରତ ଥିଲି । ହଠାତ୍ ସେ ଆସି-ପାରିବେନି ବୋଲି ଖବର ପାଇ ମନରେ ଅବସାଦ ଜନ୍ମିଲା । ଇତିପୂର୍ବେ ମୋର ଏଭଳି ଭାବ କେବେ ହୋଇଥିଲା ଭଳି ମନେ ହେଉନି । ବର୍ଷାଧିକ କାଳ ଆଶ୍ରମରେ ତାଙ୍କର ପ୍ରତିକୃତିର ଅର୍ଚ୍ଚନା କରି ଆସିଛୁ । ମନୋ-ମୁଗ୍ଧକର ସେ ଛବି ! ଯେଉଁମାନେ ଦେଖିଛନ୍ତି, ତାଙ୍କର ରୂପମାଧୁରୀର ଚମତ୍କାର ବର୍ଣ୍ଣନା କରନ୍ତି । ତାଙ୍କ ହସ୍ତ ଓ ପଦତଳର ଆଭା ରକ୍ତକମଳର ବର୍ଣ୍ଣ ଭଳି । ପୁଣି କେହି କହନ୍ତି, ଦୁଗ୍ଧରେ ଅଳକ୍ତକ ରାଗ ମିଶାଇଲେ ଯେପରି ବର୍ଣ୍ଣ ହେବ ଠିକ୍ ସେହିପରି । କବିକଳ୍ପନା ଭଳି ମନେ ହେଲେହେଁ ଦର୍ଶନ କରି ଧନ୍ୟ ହୋଇଥିବା ଶିଷ୍ୟ ଭକ୍ତଗଣ ତାହା ବାସ୍ତବ ବୋଲି ଶପଥ କରି କହନ୍ତି । ଯୋଗ-ସାଧକ-ବିଭୂତି-ବିମଣ୍ଡିତ ଅସଂପ୍ରଜ୍ଞାତ-ସମାଧି-ବ୍ୟୁତ୍‌ଥିତ ଆଚାର୍ଯ୍ୟ ନିଗମାନନ୍ଦଙ୍କର ଗୌର କାନ୍ତି, ଦୀର୍ଘ ବପୁ ତଥା ମୁଖମଣ୍ଡଳର ତେଜର ତୁଳନା କେହି କେଉଁଠି ଖୋଜି ପାଇନାହାନ୍ତି ।

ଏଭଳି ମୂର୍ତ୍ତି, ପୁଣି ଯାହାଙ୍କର ଜଳଦଗମ୍ଭୀର ଅଥଚ ସୁମଧୁର ଶସ୍ତସିଦ୍ଧ ସୁମୀମାଂସିତ ଉପଦେଶାବଳୀ ସର୍ବଜନ କର୍ଣ୍ଣ ରସାୟନ, ଅଧମକୁ ସତେ କ'ଣ ତାଙ୍କର ସାକ୍ଷାତ ଦର୍ଶନ ମିଳିବ

## ସଦ୍‌ଗୁରୁ ଦର୍ଶନର ସୁଯୋଗ

ଅବଶେଷରେ ମୋର ମନର ଅବସ୍ଥା ଏବଂ ବ୍ୟାକୁଳ ବେଦନାର ତରଙ୍ଗ ତାଙ୍କ ପାଖରେ ଯାଇ ପହଞ୍ଚିଥିଲା । ଦୈବାତ୍ ତାଙ୍କର ପତ୍ର ଆସି-ବାରୁ ଜଣାଗଲା ଯେ, ସେହି ବର୍ଷ (୧୯୩୩ ମସିହା) ଫାଲ୍‌ଗୁନ ମାସ ବେଳକୁ ଶ୍ରୀ ଶ୍ରୀ ଠାକୁର କଲିକତାଠାରୁ ଏକ୍‌ସପ୍ରେସ ଯୋଗେ ପୁରୀ ଯାତ୍ରା କରିବେ । ଆଶ୍ରମବାସୀଗଣ ଖଡ଼ଗପୁର ଷ୍ଟେସନଠାରେ ତାଙ୍କ ସଙ୍ଗେ ସାକ୍ଷାତ୍ କରିପାରନ୍ତି । ଆଶ୍ରମରୁ ସନ୍ତାଶ ଓ ପ୍ରିୟବ୍ରତ ବ୍ରହ୍ମଚାରୀ ଶ୍ରୀ ଶ୍ରୀ ଠାକୁରଙ୍କୁ ଦର୍ଶନ କରିବାକୁ ଯିବେ ବୋଲି ଜାଣି ମୋର ଆନନ୍ଦର ସୀମା ନଥାଏ । ଠାକୁରଙ୍କ ଭୋଗପାଇଁ ଶୁଦ୍ଧଘୃତ ଓ ଅନ୍ନ ଇତ୍ୟାଦି ଯୋଗାଡ଼ କରାଗଲା । ମୁଁ ସେମାନଙ୍କ ସଙ୍ଗେ ଖଡ଼ଗ-ପୁରଠାକୁ ଯାଇ ଠାକୁର ଦର୍ଶନ କରିବା ଅଭିପ୍ରାୟ ଚଦାନନ୍ଦ ମହାରାଜଙ୍କୁ ଜଣାଇଲି । ବହୁ ଅଳି ଅନୁରୋଧ ସତ୍ତ୍ୱେ ମହାରାଜ ସମ୍ମତ ହେଲେ ନାହିଁ । ନିରୁପାୟ ହୋଇ ଶେଷରେ ଶ୍ରୀ ଚଣ୍ଡୀଚୈତନ୍ୟ ବ୍ରହ୍ମଚାରୀଙ୍କୁ କହିଲି ଯେ, "କୋଚାଇଗଡ଼ ଅଞ୍ଚଳରେ ଆଶ୍ରମପାଇଁ ଭିକ୍ଷା ସଂଗ୍ରହ କାର୍ଯ୍ୟ ମୋ ଉପରେ ନ୍ୟସ୍ତ କରାଯାଉ । ମୁଁ ଖଡ଼ଗପୁର ବାଟରେ ଯାଇ ଶ୍ରୀ ଶ୍ରୀ ଠାକୁରଙ୍କୁ ଦର୍ଶନ କରିବି ଓ ପରେ ଉଦ୍ଦିଷ୍ଟ କର୍ମରେ ନିଯୁକ୍ତ ହେବି ।" ଚଣ୍ଡୀଦା ଚଦାନନ୍ଦ ମହାରାଜଙ୍କୁ ଏ କଥା ବୁଝାଇ କହିବାରୁ ମୋତେ ଯିବାକୁ ଅନୁମତି ମିଳିଲା । ମୋ ମନ ଆନନ୍ଦରେ ପରିପୂର୍ଣ୍ଣ । ଶ୍ରୀ ଶ୍ରୀ ଠାକୁରଙ୍କର ଚରଣ ଦର୍ଶନରେ ଜୀବନ ସାର୍ଥକ ହେବ !

ଫତେସିଂପୁରର ରମଦା ଆମମାନଙ୍କ ସଙ୍ଗେ ଶ୍ରୀ ଶ୍ରୀ ଠାକୁର ଦର୍ଶନ ଅଭିଳାଷରେ ଗଡବେତା ଷ୍ଟେସନଠାରେ ଗାଡ଼ିରେ ଚଢ଼ିଲେ । ଆମେ

ସମସ୍ତେ ଖଡଗପୁରଠାରେ ପହଞ୍ଚି ପୁରୀ ଏକ୍‌ସ୍‌ପ୍ରେସ୍‌ର ଅପେକ୍ଷା କଲୁ । ଗାଡ଼ି ଆସିବା ସଙ୍ଗେ ସଙ୍ଗେ ପ୍ରଥମ ଶ୍ରେଣୀ ଡ଼ବା ଆଡକୁ ଦୌଡ଼ିଲୁ । ତନ୍ମଧ୍ୟରେ ଉପବିଷ୍ଟ ଭକ୍ତବତ୍ସଳ ଆଚାର୍ଯ୍ୟପ୍ରବରଙ୍କର ଚରଣରେ ପ୍ରଣାମ କରି ଅନ୍ୟମାନଙ୍କ ସଙ୍ଗେ ମୁଁ କୃତକୃତାର୍ଥ ହେଲି । ତାଙ୍କର ଦିବ୍ୟକାନ୍ତି ଓ ରୂପର ମାଧୁରୀକୁ ଅନେକ ସମୟ ପର୍ଯ୍ୟନ୍ତ ଦର୍ଶନ କରି ମୁଗ୍ଧ ହେଲି । ମୁଁ ଆଗରୁ ଏଭଳି ସାଧୁ ମୂର୍ତ୍ତି କେବେ ଦେଖିନଥିଲି । ଅନ୍ୟର ଯେ ଏପରି ବପୁଷ୍ମାନ୍ ଜ୍ୟୋତିର୍ମୟ ବିଗ୍ରହ ସମ୍ଭବପର—ଏ ବିଶ୍ୱାସ ହେଉନଥିଲା । ତାଙ୍କ ରୂପ ନିରୀକ୍ଷଣ କରୁ କରୁ ନିର୍ବାକ ନିସ୍ପନ୍ଦ ହୋଇଗଲି । ସତୀଶ, ପ୍ରିୟବ୍ରତ ଓ ରାମଦା ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍ଗେ ଅନେକ ବିଷୟ ଆଲୋଚନା କଲେ । ଏଥରକ ଟ୍ରେନ୍ ଛାଡ଼ିବାକୁ ବସିଲା । ଆମ୍ଭେମାନେ ପୁଣି ପ୍ରଣାମ କରି ବିଦାୟ ହେଲୁ । ମୁଁ ଲକ୍ଷ୍ୟ କଲି ଯେ ଠାକୁର ମୋର ନାମ ଧାମ ବା ମୋ ବିଷୟରେ କୌଣସି କଥା ପଚାରିଲେ ନାହିଁ । କିନ୍ତୁ ମୋ ନିଜର ଏଥିପାଇଁ କୌଣସି ନିରାନନ୍ଦ ହୋଇନଥିଲା । ବରଂ ମୋ ଉପରେ ଶ୍ରୀ ଶ୍ରୀ ଠାକୁରଙ୍କର କୃପା ପରବଶ ଦୃଷ୍ଟି ଯେ ବାରମ୍ବାର ପଡ଼ିଥିଲା ଏ କଥା ସତୀଶ ବ୍ରହ୍ମଚାରୀ ଲକ୍ଷ୍ୟ କରିଥିଲେ ।

ପରବର୍ତ୍ତୀ ଟ୍ରେନ୍ ଯୋଗେ ମୁଁ ନାରାୟଣଗଡ଼ ଷ୍ଟେସନଠାରେ ପହଞ୍ଚିଲି । ଅବଶିଷ୍ଟ ରାତ୍ରି କଟାଇବାକୁ ପ୍ଲାଟଫର୍ମ ଉପରେ ଶୋଇପଡ଼ିଲି । ତନ୍ଦ୍ରାଚ୍ଛନ୍ନ ଅବସ୍ଥାରେ ଦେଖିଲି ଶ୍ରୀ ଶ୍ରୀ ଠାକୁର ଆସି ଉପସ୍ଥିତ । ମୁଁ ତାଙ୍କ ପାଦତଳେ ପ୍ରଣାମ ଜଣାଇଲି । ଠାକୁର କିନ୍ତୁ ମୋତେ ବେତବାଡ଼ିଦ୍ୱାରା ପ୍ରହାର କଲେ । ମୁଁ ତାଙ୍କ ପାଦକୁ ଭିଡ଼ିଧରି କାନ୍ଦିବାକୁ ଲାଗିଲି । ଅଳ୍ପ ସମୟ ପରେ ଠାକୁରଙ୍କର ଉଗ୍ରଭାବ ଶାନ୍ତ ହେଲା । ସେ ମୋତେ ଆଲିଙ୍ଗନ କରି କହିଲେ, "ବତ୍ସ, ମୋର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଛ । ସମୟକ୍ରମେ ତୁମ ସହିତ ପୁଣି ସାକ୍ଷାତ ହେବ ।" ଏ କଥା କହି ସେ ଚାଲିଗଲେ । ମୋର ନିଦ୍ରାଭଙ୍ଗ ହେଲା, ସେତେବେଳକୁ ସକାଳ ହୋଇ ସାରିଥାଏ । ବ୍ରାହ୍ମ-ମୁହୂର୍ତ୍ତର ଏହି ସ୍ୱପ୍ନ ମୋର ଭବିଷ୍ୟତ ସାଧନ ଜୀବନର ଗତି ନିର୍ଦ୍ଦେଶ କରିଥିଲା ।

## ଆଶ୍ରମ ପାଇଁ ଭିକ୍ଷା ସଂଗ୍ରହ—ପ୍ରଥମ ଯାତ୍ରା

ତାପରେ ମୁଁ ପଦବ୍ରଜରେ କୋଠାଇଗଡ଼ ଶ୍ରୀ ତାରାପଦ ଚକ୍ରବର୍ତ୍ତୀଙ୍କ ଘରଠାକୁ ଗଲି । ତାଙ୍କୁ ଚଣ୍ଡିଦାଙ୍କ ପତ୍ର ଦେବାରୁ ସେ ଆନନ୍ଦିତ ହେଲେ ଏବଂ ମୋ ସଙ୍ଗରେ ନାନାଆଡ଼େ ବୁଲିବୁଲି କରି ଆଶ୍ରମ ପାଇଁ କିଛି କିଛି ଭିକ୍ଷା ସଂଗ୍ରହ କରାଇଦେଲେ ।

କୋଠାଇଗଡ଼ଠାରୁ ମୁଁ ଦଶଗ୍ରାମବାସୀ ଆମର ଗୁରୁଭ୍ରାତା ଶ୍ରୀ ରାଜେନ୍ଦ୍ରନାଥ ମାଇତିଙ୍କ ପାଖକୁ ଗଲି । ସନ୍ଧ୍ୟାରେ ସେଠାରେ ପହଞ୍ଚି ଦେଖିଲି ଯେ ଭାଇ ଖୁବ୍ ଜ୍ୱର ଭୋଗୁଛନ୍ତି । ସେ ଗ୍ରାମରେ ଲୋକେ ସମୁଦ୍ରରୁ ଲବଣ ସଂଗ୍ରହ କରୁଥିବା ଅଭିଯୋଗରେ ପୁଲିସ ସେମାନଙ୍କୁ ଉତ୍ପୀଡ଼ିତ କରୁଥାଏ । ପୁଲିସ ଭୟରେ ରାତିରେ ସମସ୍ତ ଗ୍ରାମବାସୀ ଘରଗୁଡ଼ିକ ଛାଡ଼ି-ଯାଉଥାନ୍ତି । ମୁଁ ସେଦିନ ଏକା ଘରେ ରହିଲି । ଭାଗ୍ୟକୁ ସେ ରାତିକି ପୁଲିସ ଆସିଲେନି । ପରଦିନ ସମସ୍ତେ ଆସି ପହଞ୍ଚିଲେ । ମୁଁ ସକାଳେ ଭୋଜନ କରି ସାରି ସରଶା ଗ୍ରାମ ଅଭିମୁଖେ ଯାତ୍ରାକଲି । ସେଠାରେ କୌଣସି ରକମ ଗୋଟିଏ ରାତି ରହି କୋଠାଇଗଡ଼ ଫେରି ଆସିଲି । ଆଗରୁ ଏପରି ନାନା ସ୍ଥାନ ପରିଭ୍ରମଣ କରିବା ଅଭ୍ୟାସ ମୋର ନ ଥିଲା । ଜଳବାୟୁର ବିଭିନ୍ନତା ଓ ଖାଦ୍ୟପେୟର ନ୍ୟୂନାଧିକ୍ୟ ହେତୁ ମୋର ସ୍ୱାସ୍ଥ୍ୟ ଭଙ୍ଗ ହେବାର ଆଶଙ୍କା ହେଲା ।

## ଶ୍ରେୟାଂସି ବହୁ ବିଘ୍ନାନି

କ୍ରମଶଃ କ୍ରମଶଃ ପ୍ରାୟ ଦୁଇଦିନ ମଧ୍ୟରେ ପ୍ରବଳ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇପଡ଼ିଲି । ଛଅ ସାତଦିନ ପରେ ଅସୁସ୍ଥ ଅବସ୍ଥାରେ ଆସି ଆଶ୍ରମରେ ପହଞ୍ଚିଲି । ଏପରି କୁକ୍ଷଣରେ ଏହି ଜ୍ୱର ପ୍ରବେଶ କରିଥିଲା ଯେ, ପ୍ରାୟ ଅଢ଼େଇ ବର୍ଷ କାଳ ମୋତେ ଏହା ଆକ୍ରାନ୍ତ କରି ରଖିଥିଲା । ନାନା ଚିକିତ୍ସା ସତ୍ତ୍ୱେ ମୋର ସ୍ୱାସ୍ଥ୍ୟ ଫେରିଲା ନାହିଁ, ବରଂ ଦିନକୁ ଦିନ ମୋର ଶରୀର ଦୁର୍ବଳ ହେବାକୁ ଲାଗିଲା । ଅବଶେଷରେ ମୋତେ ଆଉ ଆଶ୍ରମରେ କେହି ରଖିବାକୁ ଚାହିଁଲେ ନାହିଁ । କିଛି ସେବା କରିବା ଦୂରେ ଥାଉ,

ଅପରନ୍ତୁ ମୁଁ ଅନ୍ୟମାନଙ୍କଠାରୁ ସେବା ପାଇବା ପାଇଁ ଅପେକ୍ଷା କଲି। ମୋତେ କେହି କେହି ଘରକୁ ଫେରିଯିବାକୁ ପ୍ରବର୍ତ୍ତାଇଲେ। ମୁଁ କହିଲି, "ବରଂ ଏଠାରେ ମରିଗଲେ ଆପଣମାନେ ମୋତେ ଜଙ୍ଗଲରେ ଫୋପାଡ଼ି ଦେବେ, ମୁଁ ଆଉ ଘରକୁ ଫେରିବି ନାହିଁ।" ଦିନେ ମୁଁ ମହାରାଜଙ୍କୁ କହିଲି, "ମହାଶୟ, ମୋତେ ଗୋଟିଏ ନିର୍ଜ୍ଜନ ସ୍ଥାନକୁ ପଠାଇଦିଅନ୍ତୁ, ମୁଁ ସେଠାରେ କିଛିଦିନ ବିଶ୍ରାମ କରିବାକୁ ଚାହେଁ।" ଅମନପୁରଠାରେ ଆଶ୍ରମ ସମ୍ପୃକ୍ତ କୃଷି ଜମି ଓ ଘର ଥିଲା। ମୋତେ ସେଠି ରହିବାକୁ ମହାରାଜ ଅନୁମତି ଦେଲେ। ମୁଁ ସେଠାରେ ବେଶ୍ କିଛିଦିନ କଟାଇଦେଲି। ସେଠାରେ ଗୋଟିଏ ଗାଈ ଥାଏ। ଦିନକୁ ପ୍ରାୟ ଏକସେର ଦୁଧ ମିଳେ। କିନ୍ତୁ ମୋର ହଜମ କରିବା ଶକ୍ତି ସେତେବେଳେ ନିତାନ୍ତ କ୍ଷୀଣ। ଅଧପାଆ ଚାଉଳରେ ମୋର ଦିନ ଗୋଟାକ ଚଳେ।

## ଅପଥ୍ୟରୁ ଆରୋଗ୍ୟ

ଏ ଭଳି ପ୍ରାୟ ପନ୍ଦରଦିନ ବିତିଯାଇଛି। ହଠାତ୍ ଥରେ ରାତିରେ ମୋର ମନ ଭାଙ୍ଗିଗଲା ଏବଂ ଗୁଡ଼ ଖାଇବା ପାଇଁ ପ୍ରବଳ ଇଚ୍ଛା ଜାଗିଲା। ପୁଣି ବିଚାରିଲି ମୋର ଶାରୀରିକ ଅସ୍ୱାସ୍ଥ୍ୟ ଏତେ ବେଶୀ ଯେ ସୁପାଚ୍ୟ ଦ୍ରବ୍ୟ ଖାଇଲେ ହେଁ ହଜମ କରିବା କଷ୍ଟକର, ଗୁଡ ଖାଇଲେ ତ ଅବସ୍ଥା ସାଂଘାତିକ ହୋଇପାରେ। କିନ୍ତୁ ମନରୁ ଗୁଡ଼ ଖାଇବାର ପ୍ରବଳ ଲୋଭ ଆଦୌ କମିଲା ନାହିଁ। ବରଂ ବଢ଼ିବାକୁ ଲାଗିଲା। ପରଦିନ ଅପରାହ୍ଣ ଚାରିଟା ବେଳକୁ ପ୍ରାୟ ପାଅପାଆ ଗୁଡ଼ ଆଣି ପାଖରେ ରଖିଲି। ରାତି ଦଶଟା ପର୍ଯ୍ୟନ୍ତ ନାନାରକମ ବିଚାର କଲି। କୌଣସିମତେ ଲୋଭ ସମ୍ବରଣ ହୋଇନପାରିବାରୁ ଅଳ୍ପ ଅଳ୍ପ କରି ଖାଇବାକୁ ଆରମ୍ଭ କଲି ଏବଂ ସବୁତକ ଗୁଡ଼ ଶେଷ କରିଦେଲି। ତେଣିକି ପ୍ରତି ମୁହୂର୍ତ୍ତରେ ମରଣର ପ୍ରତୀକ୍ଷା କରୁଥାଏ। କିନ୍ତୁ ମଧ୍ୟରାତ୍ରିରେ ଏକ ଅଦ୍ଭୁତ ଘଟଣା ଘଟିଗଲା। ପେଟ ଭିତର ବାୟୁରେ ପୂର୍ଣ୍ଣ ହେବାକୁ ଲାଗିଲା। ପାଖରେ ଆଉ କେହି ନ ଥାନ୍ତି। ପରିଣାମ କ'ଣ ଯେ ହେବାକୁ ଯାଉଛି, ଜାଣିବାର ଉପାୟ ନାହିଁ। କ୍ରମେ ପାଇଖାନାର ବେଗ ଆସିବାରୁ ଅନୁଭବ କଲି ଯେ, ନିର୍ଘାତ ମୋର

ଯୋଗେ ପେଟର ସମସ୍ତ ବାୟୁ ନିଃସାରିତ ହେଲା ଓ କ୍ରମଶଃ ସ୍ୱାଭାବିକ ଭାବରେ ଖାଦ୍ୟ ହଜମ ହେବାକୁ ଲାଗିଲା ।

ପରଦିନ ରାତିରେ ପୁଣି ମନରେ ଏକ ପ୍ରବୃତ୍ତି ଜାଗିଲା ଯେ, କିଛି ମାଛ ଖାଇବାକୁ ପାଆନ୍ତିକି ! ମୁଁ ବ୍ରହ୍ମଚାରୀ ହେବା ସତ୍ତ୍ୱେ ଏ ଭଳି ବାସନା ଜାଗିବାରୁ ବଡ଼ ଅସ୍ୱସ୍ତିକର ବୋଧହେଲା । କିନ୍ତୁ ଆଉ ଲୋଭ ସମ୍ବରଣ କରି ହେଉନଥାଏ । ପରଦିନ ସନ୍ଧ୍ୟା ପାଞ୍ଚଟା ବେଳକୁ ଗୋଟିଏ କେଉଟ ପ୍ରାୟ ତିନିପାଆ ଓଜନର ମାଛଟିଏ ଆଣିଥିବା ଦେଖି ମୁଁ ମୋର ମନର ଅଭିଳାଷ ତା ପାଖରେ ପ୍ରକାଶ କରିବାକୁ ବାଧ୍ୟ ହେଲି । ସେ ଆନନ୍ଦରେ ମୋତେ ମାଛଟି ଦେଇଦେଲା । ନାନାରକମ ବିଚାର ବିମର୍ଶ କରି ଶେଷରେ ରାତି ଦଶଟା ବେଳକୁ ମାଛଟି ରାନ୍ଧିଲି ଓ ସମସ୍ତ ସଂକୋଚକୁ ବିସର୍ଜନ ଦେଇ ଭୋଜନ କରିବାରେ ଲାଗିଲି । ଖାଇ ସାରିବା ପରେ ମନରେ ଆଉ କୌଣସି ଅନୁଶୋଚନା ଜାଗିଲାନି ବରଂ ବେଶ୍ ଆନନ୍ଦ ଜାତ ହେଲା । ଆଶ୍ଚର୍ଯ୍ୟର ବିଷୟ ପରଦିନଠାରୁ ମୋ'ର ଦେହ କ୍ରମଶଃ ସୁସ୍ଥ ହେବାକୁ ଲାଗିଲା । ପ୍ରାୟ ଦଶ ପନ୍ଦର ଦିନ ପରେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ମୁଁ ଆଶ୍ରମଠାକୁ ଫେରିଲି ଓ ମହାରାଜଙ୍କୁ ସମସ୍ତ ବିଷୟ ଜଣାଇଲି । ବ୍ରହ୍ମଚାରୀ ହୋଇ ମାଛ ଖାଇ-ଥିବାରୁ ମୋ ମନରେ କିଛି ପଶ୍ଚାତ୍ତାପ ତଥାପି ଲାଗି ରହିଥାଏ । କିନ୍ତୁ ମହାରାଜ ସମସ୍ତ କଥା ଶୁଣିସାରି ବେଶ୍ ଆନନ୍ଦିତ ହେଲେ । ମୁଁ କ୍ରମେ ମୋର ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇବାକୁ ଲାଗିଲି ।

## ଭିକ୍ଷା ସଂଗ୍ରହ—ଦ୍ୱିତୀୟ ଯାତ୍ରା

କିଛିଦିନ ପରେ ମହାରାଜ ମୋତେ ଓ ଭଗବାନ ବ୍ରହ୍ମଚାରୀଙ୍କୁ ※ ମାନଭୂମି ଜିଲ୍ଲାରୁ ଅର୍ଥ ସଂଗ୍ରହ କରିବାକୁ ଆଦେଶ ଦେଲେ । ଆମେ ଦୁହେଁ

※ ସାଧୁ ବ୍ରହ୍ମଚାରୀଙ୍କ ସବିଶେଷ ପରିଚୟ ପାଇଁ ସ୍ୱାମୀ ଚନ୍ଦ୍ରସ୍ୱାନନ୍ଦ ସରସ୍ୱତୀ ପ୍ରଣୀତ ,,ପଶ୍ଚିମ ବାଂଲା ସାରସ୍ୱତ ଆଶ୍ରମେର ଇତିବୃତ୍ତ" ଗ୍ରନ୍ଥମାଳା ଦ୍ରଷ୍ଟବ୍ୟ ।

ବେଶ୍ ଆନନ୍ଦ ମନରେ ବାହାରିପଡ଼ିଲୁ । କାଳିବାବୁ ମାଜିଷ୍ଟ୍ରେଟ (ଏସ୍ ଡ଼ି.ଓ)ଙ୍କ ଘରେ ଅତିଥି ହେଲୁ । ଭଦ୍ରଲୋକ ଆମମାନଙ୍କୁ ସାଦରେ ଅଭ୍ୟର୍ଥନା କରି କହିଲେ ଯେ ଯେତେଦିନ ଇଚ୍ଛା ଆପଣମାନେ ମୋ ଘରେ ଅବସ୍ଥାନ କରନ୍ତୁ ଓ ସ୍ଥାନୀୟ ସମସ୍ତଙ୍କଠାରୁ କିଛି କିଛି ଭିକ୍ଷା ସଂଗ୍ରହ କରନ୍ତୁ । ଠାକୁରଙ୍କ ଅସୀମ କୃପା, ଆମେ ଯାହାଙ୍କ ପାଖରେ ପହଞ୍ଚୁ ସେ ଆମକୁ ସନ୍ତୋଷ ମନରେ ଯଥାଶକ୍ତି ଦାନ କରନ୍ତି । ଆମେ ଉତ୍ସାହିତ ହୋଇ ଆଦାୟ କାମରେ ଲଗି-ପଡ଼ିଲୁ । କ୍ରମେ ସହରର କାର୍ଯ୍ୟ ଶେଷ କରି ଗ୍ରେଟ ବଡ଼ ଗ୍ରାମମାନଙ୍କରେ ବୁଲିବାକୁ ଲଗିଲୁ । ମୋର ମାମୁଙ୍କ ଗ୍ରାମରେ ଆସି ପହଞ୍ଚିବାରୁ ସେଠା ଲୋକେ ଗୋଟିଏ ଧର୍ମସଭାର ଆୟୋଜନ କଲେ । ସାଧୁଙ୍କର ଉପଦେଶ ଶୁଣି ସମସ୍ତେ ବେଶ୍ ଆନନ୍ଦିତ ହେଲେ ଓ ଯଥେଷ୍ଟ ପରିମାଣ ଭିକ୍ଷା ସଂଗ୍ରହ କରାଯାଇପାରିଲା । ସେଠାରୁ ଆମେ ଗୋପାଳନଗର ଯାତ୍ରା କଲୁ । ଗ୍ରାମଟି ଖୁବ୍ ବର୍ଦ୍ଧିଷ୍ଣୁ ଓ ବ୍ରାହ୍ମଣପ୍ରଧାନ । ସେଠାର ଜମିଦାର ଆମକୁ ନିଜ ଘରେ ରହିବାକୁ ଦେଲେ ।

ସ୍ଥାନୀୟ ଜଣେ ବ୍ରାହ୍ମଣଙ୍କର ଶ୍ରାଦ୍ଧୋତ୍ସବ ଉପଲକ୍ଷେ ପରଦିନ ଅନେକ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଆମେ ମଧ୍ୟ ସେଥିପାଇଁ ନିମନ୍ତ୍ରିତ ହୋଇଥାଉ । ଆମେ ଦୁହେଁ ଖୁବ୍ ଚିନ୍ତା କରିବାକୁ ଲଗିଲୁ ଯେ କିପରି ବ୍ୟବହାର କଲେ ବ୍ରାହ୍ମଣମାନଙ୍କ ସମକ୍ଷରେ ସାଧୁ ସନ୍ନ୍ୟାସୀଙ୍କର ମହିମା ପ୍ରକାଶିତ ହେବ । ଆଲୋଚନା ପରେ ସ୍ଥିର ହେଲା ଯେ, ଭଗବାନ ବ୍ରହ୍ମଚାରୀ ସକାଳୁ ଧ୍ୟାନସ୍ଥ ହୋଇ ବସି ରହିବେ ଏବଂ ମୁଁ ଠାକୁରଙ୍କ ଲିଖିତ ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥାବଳୀ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସଜାଇ ରଖିବି । କେହି କିଛି ଜାଣିବାକୁ ଚାହିଁଲେ କହିବି ଯେ, ସାଧୁଜୀଙ୍କର ଧ୍ୟାନଭଙ୍ଗ ପରେ ଆପଣମାନେ ତାଙ୍କଠାରୁ ନିଜ ନିଜ ପ୍ରଶ୍ନର ଉତ୍ତର ପାଇପାରିବେ । ସେ ଜଣେ ସିଦ୍ଧ ମହାପୁରୁଷ ।

ପରଦିନ ସକାଳେ ଅନୁରୂପ ବ୍ୟବସ୍ଥା କରାଗଲା । ଭଗବାନ ଦାଦା ଧ୍ୟାନରେ ବସିଲେ ଓ ମୁଁ ପହରାଦାର ରହିଲି । ପୂର୍ବାହ୍ଣ ଦଶଟା ବେଳକୁ ବ୍ରାହ୍ମଣମାନେ ଆସିବାର ଆରମ୍ଭ କଲେ । ପ୍ରାୟ ଶ୍ରୀସଙ୍ଘ ପର୍ଯ୍ୟନ୍ତ ସେମାନଙ୍କର

ସଂଖ୍ୟା ବଢ଼ି ଚାଲିଲା । ଏଣେ ଭଗବାନ ବ୍ରହ୍ମଚାରୀ ହୋଇ ଏକାସନରେ ନିଷ୍ପନ୍ଦ ହୋଇ ଦିନ ଘୋଷାଏ ପର୍ଯ୍ୟନ୍ତ ବସି ରହିଲେ । ବ୍ରାହ୍ମଣମାନେ ଏହା ଦେଖି ଖୁବ୍ ବିସ୍ମିତ ହୋଇଗଲେ । ତାହାଙ୍କ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ— ପ୍ରଶ୍ନ ପଚାରିବା ବା କୌଣସି ମନ୍ତବ୍ୟ ଦେବା ତ ଦୂରର କଥା । ମୁଁ ସେଇଠିକି ସାଧୁଙ୍କର ଗୁଣଗାନ କରି କହିବାକୁ ଲାଗିଲି, "ଏ ମହାତ୍ମା ଜଣେ ଅଦ୍ୱିତୀୟ ସାଧକ ଓ ଶକ୍ତିଧର ବ୍ରହ୍ମଜ୍ଞାନୀ ପୁରୁଷ ।" ବ୍ରାହ୍ମଣଗଣ ବିଶେଷ ଭକ୍ତି ସହକାରେ ଆମର ଅନୁମତି ପାଇଲେ ଓ ଭୋଜନ ପରେ ସାକ୍ଷାତ କରିବେ ବୋଲି ପ୍ରତିଶ୍ରୁତି ଦେଇ ଚାଲିଗଲେ । ଇତିମଧ୍ୟରେ ଆମପାଇଁ ଭୋଜ୍ୟ ଦ୍ରବ୍ୟ ଆସି ପହଞ୍ଚିଲା । ଆମେମାନେ ଝାଡ଼ାଫେରି ବ୍ରାହ୍ମଣମାନଙ୍କର ଭୋଜନସ୍ଥଳ ପରିଦର୍ଶନ କଲୁ । ପରେ ବ୍ରାହ୍ମଣମାନେ ଆମ ପାଖକୁ ଆସି ପ୍ରଣାମ କରିବାକୁ ଲାଗିଲେ ଓ ସେମାନଙ୍କର ଗ୍ରାମକୁ ଯିବାକୁ ଅନୁରୋଧ କଲେ । ସୁତରାଂ, ଆମେ ପ୍ରତ୍ୟେକ ଗ୍ରାମକୁ ଯାଇ କିଛି କିଛି ଭିକ୍ଷା ସଂଗ୍ରହ କରି ଆଣିଲୁ ।

## ସାଧୁ ଭଗବାନ ହେଲେହେଁ ମନୁଷ୍ୟ

ଏପରି ଚସ୍ତୁ କରୁ କରୁ ଲୁମ୍ବାଗଡ଼ ନାମକ ଗ୍ରାମର ଜମିଦାର ଶ୍ରୀଯୁକ୍ତ ଦେବୀଲାଲଙ୍କ ଘରେ ଯାଇ ପହଞ୍ଚିଲୁ । ଆମମାନଙ୍କୁ ଖୁବ୍ ସମ୍ମାନ ମିଳିଲା ଓ ସମସ୍ତେ ସେବା ଯତ୍ନ କରିବାରେ ଲାଗିପଡ଼ିଲେ । ଏଠି ଘଟିଥିବା ମଜାର କଥା ହେଲା ଯେ, ରାତି ଭୋଜନ ପାଇଁ ଚାଉଳର ରୁଟି ତିଆରି ହୋଇଥାଏ । ସେଗୁଡ଼ିକ ଏତେ ପାତଳା ଯେ ସେଥିରୁ ଅନେକ ସଂଖ୍ୟାରେ ନ ଖାଇଲେ କ୍ଷୁଧା ନିବାରଣ କରିବା ସମ୍ଭବ ନୁହେଁ । ଭଗବାନ ବ୍ରହ୍ମଚାରୀ ଲଜ୍ଜାବଶତଃ ଆବଶ୍ୟକରୁ କମ୍ ପରିମାଣ ରୁଟି ଖାଇଲେ । ମୁଁ କିନ୍ତୁ ମୋର କ୍ଷୁଧା ନିବୃତ୍ତି ହେବାଯାଏ ଭୋଜନ କଲି । ରାତ୍ରିରେ ଭଗବାନଙ୍କ ଆଖିକୁ ନିଦ ନ ଆସେ । ମଧ୍ୟ ରାତିରେ ସେ ଅତ୍ୟନ୍ତ କ୍ଷୁଧାତୁର ହେବାରୁ ଆମ ପାଖରେ ରକ୍ଷିତ ଥିବା କିଛି ଚୂଡ଼ା ଖାଇବାକୁ ବାଧ୍ୟ ହେଲେ । ପରଦିନ ସକାଳେ ଆମପାଇଁ ଅରୁଆ ଚାଉଳ, ଡାଲି, ତରକାରୀ ଓ ଗବ୍ୟଘୃତ ଆସି ପହଞ୍ଚିଲା । ରନ୍ଧାବଢ଼ା ଶେଷରେ ଦେବୀଲାଲ ବାବୁ ନିଜେ ସାଧୁ ସେବା ଦେଖିବାକୁ ଆସିଲେ । ଆମର ଅନୁରୋଧକ୍ରମେ ସେ ଆମ

ସାଙ୍ଗରେ ବସି ଭୋଜନ କଲେ ଓ ସାଙ୍ଗରେ କିଛି ପ୍ରସାଦ ନେଇ ଗଲେ । ତାଙ୍କ ଘରର ସମସ୍ତେ ସାଧୁ ସଙ୍ଗ କରିବାକୁ ଆଗ୍ରହ ପ୍ରକାଶ କରିବାରୁ ଅପରାହ୍ଣରେ ଆମ ବୃଦ୍ଧଙ୍କୁ ଘର ଭିତରକୁ ନଆଗଲା । ସେଠାରେ ଶ୍ରୀ ଶ୍ରୀ ଠାକୁରଙ୍କର ଜୀବନ ପ୍ରସଙ୍ଗ ଆଲୋଚନା କଲୁ । ସମସ୍ତେ ବିଶେଷ ଆନନ୍ଦିତ ହେଲେ ।

ଭିକ୍ଷା ସଂଗ୍ରହ ଉଦ୍ଦେଶ୍ୟରେ ଆମେ ନାନା ସ୍ଥାନ ଭ୍ରମଣ କଲୁ । ମାନବଜାର, ବାଗଦା ହୁଡ଼ା, ଲକ୍ଷ୍ମଣପୁର ଓ ଶେଷରେ ମୋ ଜନ୍ମଭୂମି ଲଧୁଡ୍ଡିକା ଗ୍ରାମ ଏହା ମଠରୁ କେତୋଟି । ଲଧୁଡ୍ଡିକାଠାରେ ମୋର ଆତ୍ମୀୟ ଓ ପରିଚିତ ଗ୍ରାମବାସୀ ମୋତେ ପାଇ ଖୁବ୍ ଆନନ୍ଦିତ ହେଲେ । ବହୁ ପରିମାଣ ଭିକ୍ଷା ନେଇ ପ୍ରାୟ ଏକମାସ ପରେ ଆମେ ଆଶ୍ରମକୁ ଫେରି ଆସିଲୁ ଓ ସମସ୍ତ କଥା ମହାରାଜଙ୍କୁ ଜଣାଇଲୁ । ଆମର କୃତିତ୍ୱର ପରିଚୟ ପାଇ ମହାରାଜ ଓ ଅନ୍ୟ ଆଶ୍ରମାନ୍ତେବାସୀ ବିଶେଷ ଆନନ୍ଦିତ ହେଲେ ।

## ତ୍ରୁଟି ବିଚ୍ୟୁତି

ସେ ଥରକ ଆନନ୍ଦ ନଗର ସଙ୍ଘରୁ ଆଦାୟ କରିବା ଭାର ମୋ ଉପରେ ନ୍ୟସ୍ତ ଥାଏ । ସାଉଁରିଆ, ମୋହନପୁର, ବାଘାଡ଼ି ଓ ଅନ୍ୟାନ୍ୟ ସ୍ଥାନରେ ପହଞ୍ଚି ଚାଉଳ ସଂଗ୍ରହ କଲି । ରେଲଗାଡ଼ି ଯୋଗେ ଆଶ୍ରମ ଉଦ୍ଦେଶ୍ୟରେ ପଠାଇବା ପାଇଁ ସଂଗୃହୀତ ଚାଉଳକୁ ଦାଖଲ କରିବାକୁ ଷ୍ଟେସନଠାକୁ ଆସି ଦେଖିଲି ଯେ, ପକେଟରୁ ତିରିଶି ଟଙ୍କା ଚୋରି ହୋଇଯାଇଛି । ମନରେ ଘୋର ଅଶାନ୍ତି ନେଇ ଆଶ୍ରମକୁ ଫେରିଲି । ଟଙ୍କା ଚୋରି ହୋଇଥିବା ଖବର ପ୍ରକାଶ ହେବା ପରେ ମହାରାଜାଙ୍କର ସେ ଯେଉଁ ଭର୍ତ୍ସନା ! ପୁଣି ଯିଏ ଏ କଥା ଶୁଣିଲା ସେ ଭର୍ତ୍ସନା କଲା । କଣ ବା କରିଥିବ ? ଭାଗ୍ୟକୁ ସ୍ମରଣ କରି ସବୁ ସହ୍ୟ କଲି । ସେତେବେଳେ ତିରିଶିଟି ଟଙ୍କା ଯେ ଖୁବ୍ ଦୁର୍ଲ୍ଲଭ ଥିଲା, ଏହା କହିବା ବାହୁଲ୍ୟ ମାତ୍ର । ଏ ସବୁ ସତ୍ତ୍ୱେ ମୋଦ୍ୱାରା ବିଭିନ୍ନ କର୍ମ ବିଶେଷତଃ ଭିକ୍ଷା ସଂଗ୍ରହ ସୁସମ୍ପାଦିତ ହେଉଥିବାରୁ ମୋତେ ସେଥିରୁ ଅବ୍ୟାହତି ମିଳୁନଥିଲା, ବରଂ ଏଥିପାଇଁ

ସମସ୍ତେ ଆନ୍ତରିକ ଭଲ ପାଉଥିଲେ । ହେଲେହେଁ ତ୍ରୁଟି-ବିଚ୍ୟୁତି ଘଟିଲେ ତିରସ୍କାରର ମାତ୍ରା କମ୍ ହେଉ ନଥିଲା । ଭାଷାର କଟୁତା ଓ ଶାସନର କଠୋରତା କ୍ରମେ ମୋତେ ମନଃ ସଂଯମ ଓ ତିତିକ୍ଷା ଶିକ୍ଷାଲାଭ ପଥରେ ଆଗେଇ ନେଉଥିଲା । ବେଳେବେଳେ ଆଶ୍ରମବାସୀ ବନ୍ଧୁବର୍ଗଙ୍କ ମଧ୍ୟରେ ସାମାନ୍ୟ ବିରୋଧ ଓ ବିସମ୍ବାଦ ହୁଏତ ଘଟୁଥିଲା, କିନ୍ତୁ ଆମ୍ଭେମାନେ ସମସ୍ତେ ଏକା ଭାବ ଓ ଆଦର୍ଶର ଅନୁସରଣ କରୁଥିବାରୁ ମହାରାଜଙ୍କ ନିକଟରେ ଆଭ୍ୟନ୍ତରୀଣ କୌଣସି ସମସ୍ୟାର ଉପସ୍ଥାପନା କଲେ, ସେ ତାହାର ସୁମୀମାଂସା କରିଦେଉଥିଲେ । ଶ୍ରୀ ଶ୍ରୀ ଠାକୁରଙ୍କଠାରୁ ଦୀକ୍ଷା ଗ୍ରହଣ କରିବା ପୂର୍ବରୁ ଆଶ୍ରମ ଓ ଅଶ୍ରମ ବାହାରେ କରାଯାଉଥିବା ନାନା କର୍ମାନୁଷ୍ଠାନ ମାଧ୍ୟମରେ ଆମର କାୟିକ ଓ ମାନସିକ ଚେଷ୍ଟା ନିରବଚ୍ଛିନ୍ନ ଚାଲୁ ରହୁଥିଲା ।

## ଜୀବନର ମଧୁମାସ

ମୋର ଜନ୍ମ ଏବଂ ଅଧ୍ୟାତ୍ମ ଚେତନାର କ୍ରମବିକାଶଧାରାରେ ଫାଲ୍‌ଗୁନ ମାସଟି ଏକାନ୍ତ ସ୍ମରଣୀୟ । ଫାଲ୍‌ଗୁନ ମାସରେ ମୁଁ ମାତୃଗର୍ଭରୁ ଅବତୀର୍ଣ୍ଣ ହୋଇଥିଲି, ଫାଲ୍‌ଗୁନ ମାସରେ ସାଧୁଙ୍କୁ ପରୀକ୍ଷା କରିବାକୁ ଆଶ୍ରମକୁ ଆସିଲି । ପୁଣି ଫାଲ୍‌ଗୁନ ମାସରେ ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍ଗେ ପ୍ରଥମ ସାକ୍ଷାତ ହେଲା । ଏ ଥରକ ପୁଣି ସୁସମ୍ବାଦ ପାଇଲି ଯେ, ସନ ୧୩୪୧ ସାଲ ଫାଲ୍‌ଗୁନ ମାସ (୧୯୩୫ ମସିହା)ରେ ଶ୍ରୀ ଶ୍ରୀ ଠାକୁର ଧୂଳିଆଡାଙ୍ଗା ଶ୍ରୀ ଦେବେନ୍ଦ୍ର ଚକ୍ରବର୍ତ୍ତୀଙ୍କର ଘରକୁ ଆସିବେ ଓ ସେଠାରୁ ଆମ ଆଶ୍ରମକୁ ସ୍ୱାଗତ କରିବେ । ଅନ୍ତଃସଲିଳା ଫଲ୍‌ଗୁ ଭଳି ଭକ୍ତବତ୍ସଳ ସଦ୍‌ଗୁରୁ ଶ୍ରୀ ଶ୍ରୀ ନିଗମାନନ୍ଦ ଠାକୁରଙ୍କ ସାନ୍ନିଧ୍ୟ ଲାଭ କରିବା ଓ ତଦୀୟ ପଦପ୍ରାନ୍ତରେ ସେବକ ହେବାପାଇଁ ମୋ ଅନ୍ତରର ଗଭୀର ସ୍ତରରେ ସଂଗୋପିତ ହୋଇ ରହିଥିବା ପ୍ରେମପୟୋସ୍ୱିନୀ ତରଙ୍ଗାୟିତ ହେଲା । ମୋର ଚାରି ବର୍ଷର ଆଶ୍ରମବାସ ସତେ ଯେପରି ମହାପୁରୁଷଙ୍କ ସ୍ପର୍ଶରେ ପରିପୂର୍ଣ୍ଣ ହେବ । ମୁଁ ତାର ପ୍ରତୀକ୍ଷା କରିବାକୁ ଲାଗିଲି ।

. ଶୁଭଲଗ୍ନ ଯେତିକି ପାଖେଇ ଆସୁଥାଏ ମନର ଆବେଗ ସେତିକି ବଢ଼ି ଚାଲିଥାଏ । ଅବଶେଷରେ ୧୩୪୧ ସାଲ (୧୯୩୫ ମସିହା) ଫାଲ୍‌ଗୁନ ମାସର ସେହି ଦେବଦୁର୍ଲ୍ଲଭ ମୂହୂର୍ତ୍ତ ଉପସ୍ଥିତ ହେଲା । ତୃତୀୟ ଓ ଶେଷ ଥର ପାଇଁ ସଦ୍‌ଗୁରୁ ଶ୍ରୀମତ୍ସ୍ୱାମୀ ନିଗମାନନ୍ଦ ଦେବ କେଉଁଦୁମା ଆଶ୍ରମ ପରିଦର୍ଶନ ଉଦ୍ଦେଶ୍ୟରେ ମେଦିନୀପୁର ଆସି ସେଠାରୁ ଧୂଳିଆଡ଼ାଙ୍ଗା-ବାସୀ ତାଙ୍କର ପ୍ରିୟ ଶିଷ୍ୟ ଶ୍ରୀ ଦେବେନ୍ଦ୍ର ଚକ୍ରବର୍ତ୍ତୀଙ୍କ ବାସଭବନରେ ଦୁଇ ଦିନ ଦିନ ଅବସ୍ଥାନ କଲେ * । ସମ୍ବାଦ ପାଇ ଚିଦାନନ୍ଦ ମହାରାଜ ମୋତେ କହିଲେ, "ଭୋଳା, ତୁମେ ଆଶ୍ରମରେ ଥାଅ, ମୁଁ ଧୂଳିଆଡ଼ାଙ୍ଗା ଯାଇ ଶ୍ରୀ ଶ୍ରୀ ଠାକୁରଙ୍କୁ ସ୍ୱାଗତ କରି ଆସିବି" । ଏହା ଶୁଣି ମୋ ମନର ଭାବ ବେଗ ବ୍ୟାହତ ହେଲା । କାରଣ, ଆଶ୍ରମରେ ରହିବାକୁ ମୁଁ ଋହୁଁ ନଥିଲି । ଧୂଳିଆଡ଼ାଙ୍ଗା ଚକ୍ରବର୍ତ୍ତୀଙ୍କ ବାସଗୃହରେ ବିରାଜିତ ସଦ୍‌ଗୁରୁଦେବଙ୍କ ଚରଣ ତଳକୁ ଉଡ଼ିଯିବାକୁ ଅଧୀର ହେଉଥିଲି । କିନ୍ତୁ ମହାରାଜାଙ୍କ ଆଦେଶକ୍ରମେ ମୁଁ ଓ ପୂର୍ଣ୍ଣଦା (ଶ୍ରୀମତ୍ ପୂର୍ଣ୍ଣଚୈତନ୍ୟ ବ୍ରହ୍ମଚାରୀ, ପରବର୍ତ୍ତୀ ସନ୍ୟାସ ନାମ ଶ୍ରୀମତ୍ ପୂର୍ଣ୍ଣାନନ୍ଦ ସରସ୍ୱତୀ) ଅଗତ୍ୟା ଆଶ୍ରମରେ ରହିଲୁ । ଶ୍ରୀ ଶ୍ରୀ ଠାକୁରଙ୍କ ଆଗମନ ଉପଲକ୍ଷେ ଆଶ୍ରମରେ ଭକ୍ତ ସମାଗମ ବଢ଼ି ଚାଲିଥାଏ, ଆଶ୍ରମ ପ୍ରାଙ୍ଗଣ ଓ ପରିବେଶକୁ ପରିଷ୍କାର ପରିଚ୍ଛନ୍ନ କରିବା ପାଇଁ ସମସ୍ତେ ଲାଗିପଡ଼ିଥାନ୍ତି । ଏହିପରି ଦିନେ ଦୁଇଦିନ ବିତିବା ପରେ ମୁଁ ଆଉ ସ୍ଥିର ହୋଇ ରହିପାରିଲି ନାହିଁ । ତୃତୀୟ ଦିନ ପୂର୍ଣ୍ଣଦାଙ୍କୁ ମୋର ଅଭିପ୍ରାୟ ଜଣାଇ କହିଲି, "ମହାରାଜ, ଆଶ୍ରମରେ ମୋର ମନ ଲାଗୁନାହିଁ । ଧୂଳିଆଡ଼ାଙ୍ଗାକୁ ଯାଇ ପରମାରାଧ୍ୟ ଶ୍ରୀ ଶ୍ରୀ ଠାକୁରଙ୍କୁ ଦର୍ଶନ କରିବା ଲାଗି ମୁଁ

---

* ବିସ୍ତୃତ ବିବରଣୀ, ବିଶେଷତଃ ଶ୍ରୀ ଶ୍ରୀ ଠାକୁରଙ୍କ ଆଗମନରେ ଧୂଳିଆଡ଼ାଙ୍ଗା (ଚନ୍ଦ୍ରକୋଣା ଥାନା) ଆଖପାଖରେ ସଂକ୍ରମିତ ହୋଇଥିବା ପ୍ରବଳ କଲେରା ରୋଗର ଉପଶମ ଓ ଅନ୍ୟାନ୍ୟ ପ୍ରସଙ୍ଗ ପାଇଁ ଶ୍ରୀମତ୍ ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ପ୍ରଣୀତ 'ପଶ୍ଚିମ ବାଂଲା ସାରସ୍ୱତ ଆଶ୍ରମେର ଇତିବୃତ୍ତ' ଗ୍ରନ୍ଥର ପରିଶିଷ୍ଟାଂଶ ଦ୍ରଷ୍ଟବ୍ୟ ।

ଏହିକଥା ବାହାରିଲି ! କାଲି ଆଶ୍ରମକୁ ଫେରି ଆସିବ ।" ଏହା କହି ମୁଁ ପ୍ରସ୍ଥାନ କଲି ଓ ସନ୍ଧ୍ୟା ପ୍ରାୟ ଛ'ଟା ବେଳେ ଉଦ୍ଦିଷ୍ଟ ସ୍ଥାନରେ ଯାଇ ପହଞ୍ଚିଗଲି ।

## ଦୀକ୍ଷା ଗ୍ରହଣ ବାସନା

ଭକ୍ତ, ଶିଷ୍ୟ ଓ ସେବକ ସମଭିବ୍ୟାହାରରେ ଶ୍ରୀ ଶ୍ରୀ ଠାକୁର ମହାରାଜ ଦେବେନ୍ଦ୍ର ଚକ୍ରବର୍ତ୍ତୀଙ୍କ ବାସଭବନ ପ୍ରାଙ୍ଗଣରେ ଉପବିଷ୍ଟ । ସ୍ଥାନୀୟ ସତ୍ସଙ୍ଗ ପ୍ରେମୀ ସଜ୍ଜନମଣ୍ଡଳୀ ତାଙ୍କ ଶ୍ରୀମୁଖରୁ ତତ୍ତ୍ୱମୟୀ ଅଭୟବାଣୀ ଶ୍ରବଣ କରିବା ଅଭିପ୍ରାୟରେ ସେଠାରେ ମିଳିତ ହୋଇଥାଆନ୍ତି । ଭକ୍ତ ଓ ଭଗବାନଙ୍କର ଏହି ସଂଯୋଗ ଦେବସଭାଠାରୁ ଅଧିକ ବିଭବଶାଳୀ ମନେ ହେଉଥାଏ । ଉନ୍ମତ୍ତଭାବେ ଦଉଡ଼ିଯାଇ ତାଙ୍କ ଚରଣ ତଳେ ମୁଁ ସାଷ୍ଟାଙ୍ଗ ପ୍ରଣିପାତ କଲି । ମନରେ ଅପରିସୀମ ଆନନ୍ଦର ସଞ୍ଚାର ହେବାରୁ କ୍ଷଣେକ ପାଇଁ ଆତ୍ମହରା ହୋଇଗଲି । ମୋର ଅଯଥା ଉପସ୍ଥିତି ପାଇଁ କାହାରିକୁ ବିରକ୍ତ ହେବା ଲକ୍ଷ୍ୟ କଲି ନାହିଁ । ଯଦିଓ ଏଥିପାଇଁ ମନରେ ବେଶ୍ ଆଶଙ୍କା ଲାଗିରହିଥାଏ ।

ହଠାତ୍ ମନରେ ଭାବ ଜାଗିଲା ଯେ, 'ସଦ୍‌ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରି ସାଧନ ଭଜନ ନ କଲେ ଜୀବନରେ ଶାନ୍ତି ଲାଭ କରିବା ଅସମ୍ଭବ । ଶ୍ରୀ ଶ୍ରୀ ଠାକୁର ଯେତେବେଳେ ଏତେ ଗୃହସ୍ଥ ଭକ୍ତଙ୍କୁ ଦୀକ୍ଷା ଦେଇ ଶିଷ୍ୟ କରୁଛନ୍ତି ମୋ ପାଇଁ କ'ଣ ଅନୁରୂପ ବ୍ୟବସ୍ଥା କରିବେନି ?' ରାତିରେ ସଦାନନ୍ଦ ମହାରାଜ ଓ ଅନ୍ୟମାନଙ୍କ ସଙ୍ଗେ ମୋତେ ଏକା ଘରେ ଶୋଇବାକୁ ହୋଇଥିବା ସୁଯୋଗରେ ମୁଁ ମହାରାଜଙ୍କୁ ଜଣାଇଲି, "ମହାରାଜ, ଅନୁଗ୍ରହ ପୂର୍ବକ ମୋର ଦୀକ୍ଷା ଗ୍ରହଣ ପାଇଁ ବ୍ୟବସ୍ଥା କରିଦେବେ କି ? ଆପଣଙ୍କ ଅନୁମୋଦନ ବିନା ଏହା ସମ୍ଭବପର ନୁହେଁ ।" ମହାରାଜ କହିଲେ, "ଦେଖ, ବର୍ତ୍ତମାନ ତୁମର ଦୀକ୍ଷା ଗ୍ରହଣର ସମୟ ହୋଇନାହିଁ । ସମୟକ୍ରମେ ଗୁରୁଦେବ ଆପେ ଡାକିନେଇ ଦୀକ୍ଷା ଦେବେ ।" ମୁଁ ଏହା ମାନିନେବାକୁ ପ୍ରସ୍ତୁତ ନ ଥିବାରୁ ନାନାପ୍ରକାର ଯୁକ୍ତି ଓ ଅନୁନୟ କଲି । କିନ୍ତୁ କୌଣସି

ଫଳ ହେଲା ନାହିଁ । ମହାରାଜ ତାଙ୍କ କଥାରେ ଅଟଳ ରହିଲେ । ଅନେକ ରାତି ହେବା ଯାଏ ଆମର ଆଳାପ ଚାଲିଲା । ଶେଷର ଘଣ୍ଟା ବେଳକୁ ମନରେ ବିଚାର ଆସିଲା, 'ମୁଁ ଏ କ'ଣ କଲି ? ଜଣେ ସାଧୁ ମହାରାଜଙ୍କୁ ଶୋଇବାକୁ ଦେଲି ନାହିଁ ! ସେ ତ ଠିକ୍ କଥା କହୁଛନ୍ତି । ଅଧିକାର ଅର୍ଜ୍ଜନ ନ କରି ଦୀକ୍ଷା ଗ୍ରହଣ କଲେ ଲାଭ ଅପେକ୍ଷା କ୍ଷତି ଅଧିକ ହେବ ସିନା ।' ମନେ ମନେ ସ୍ଥିର କରିନେଲି ଯେ ଆଉ କେବେହେଲେ ଦୀକ୍ଷା ପ୍ରାର୍ଥୀ ହେବି ନାହିଁ । ଅନୁତପ୍ତ କଣ୍ଠରେ ମହାରାଜଙ୍କୁ ଜଣାଇଲି, "ମହାତ୍ମନ୍, ଅନୁଗ୍ରହପୂର୍ବକ ମୋତେ କ୍ଷମା କରନ୍ତୁ । ଅସମୟୋଚିତ ପ୍ରାପ୍ତିର ଆଶାରେ ବ୍ୟସ୍ତହୋଇ ଆପଙ୍କୁ କଷ୍ଟାର୍ଭୁକ୍ତ କରିଛି — ଏବେ ମୋର ଭ୍ରମ ଭାଙ୍ଗିଗଲା । ଆଉ କେବେ ମୁଁ ଦୀକ୍ଷା ନେବାକୁ ମନ ବଳାଇବି ନାହିଁ ।"

# ପଞ୍ଚମ ଅଧ୍ୟାୟ

## ଶକ୍ତିପାତ

### ଆଶ୍ରମରେ ଶ୍ରୀ ଶ୍ରୀ ଠାକୁରଙ୍କ ଅଭ୍ୟର୍ଥନା

ପରଦିନ ମୁଁ ଆଶ୍ରମକୁ ଫେରିଗଲି ଓ ଆନନ୍ଦ ମନରେ ଆଗଭଳି ଯଥା ବିହିତ କର୍ମରେ ବ୍ୟାପୃତ ହେଲି । ଦିନକ ପରେ ଶ୍ରୀ ଶ୍ରୀ ଠାକୁର ଆଶ୍ରମରେ ଆସି ପହଞ୍ଚିବା ଖବର ପ୍ରଚାରିତ ହେବାରୁ ନାନା ସ୍ଥାନରୁ ଭକ୍ତ, ଶିଷ୍ୟ ଓ ଦର୍ଶକ ଦଳେ ଦଳେ ଆସି ପହଞ୍ଚୁଥାନ୍ତି । ଆଶ୍ରମ ଲୋକାରଣ୍ୟ ହୋଇଥାଏ । ଚାଉଳ, ଡାଲି, ପନିପରିବା ଓ ଅନ୍ୟାନ୍ୟ ସାମଗ୍ରୀ ଭାର ଭାର ହୋଇ ଆସୁଥାଏ । ଚାରିଆଡ଼େ ଯେପରି ପରିପୂର୍ଣ୍ଣ ଆନନ୍ଦର ମେଳା, ମୋ ଭିତରେ ସେପରି ନାହିଁ ନଥିବା ଉଚ୍ଛ୍ୱାସ ଭାବ । ଶ୍ରୀ ଶ୍ରୀ ଠାକୁର ପାଲିଙ୍କିରେ ବସି ଆସୁଥାଆନ୍ତି—ସେ କି ଅଭୂତ ଦୃଶ୍ୟ । ଜୟଗୁରୁ ଧ୍ୱନିରେ ଗଗନ ପବନ ନିନାଦିତ ହୋଇ ଉଠୁଥାଏ । ମାତୃ କଣ୍ଠର ହୁଳହୁଳି ଧ୍ୱନିରେ ଚତୁର୍ଦ୍ଦିଗ ଉଚ୍ଛୁଳୁଥାଏ ।

ଶ୍ରୀ ଶ୍ରୀ ଠାକୁର ଆଶ୍ରମ ଅଭ୍ୟନ୍ତରକୁ ଆସିଲେ । ସଙ୍ଗେ ସଙ୍ଗେ ପ୍ରଣାମର ଭିଡ଼ ଜମିଗଲା । ପ୍ରଣାମ ନିବେଦନ କଲା ପରେ ଆସନ ଘରେ ଶ୍ରୀଶ୍ରୀ ଠାକୁରଙ୍କୁ ବିଶ୍ରାମ କରିବାକୁ ଦେଇ ସମସ୍ତେ ପ୍ରସାଦ ପାଇଲେ । ଠାକୁରଙ୍କ ସାଙ୍ଗରେ ପ୍ରବୀଣ ବ୍ରହ୍ମଚାରୀ ସେବକ ଆସିଥାଆନ୍ତି । ତାଙ୍କ ନିର୍ଦ୍ଦେଶ ମୁତାବକ ଠାକୁର-ସେବାର କର୍ମ ବିଭାଗ କରାଗଲା । ମୋ ଉପରେ ଠାକୁରଙ୍କୋଗ ଯୋଗାଡ଼ କରିବା ଭାର ରହିଲା । ପ୍ରିୟବ୍ରତ ବ୍ରହ୍ମଚାରୀ ପାକ କାର୍ଯ୍ୟରେ

ନିଯୁକ୍ତ ହେଲେ । ମୋ ନିଜ ବଗିଚାର ଦାୟିତ୍ୱ ମୋତେ ଖୁବ୍ ଭଲ ଲାଗୁଥାଏ । ଆନନ୍ଦର ସହିତ ମୁଁ ମୋର କର୍ମ ସମ୍ପାଦନ କରି ଚାଲିଲି ।

ପରଦିନ ପ୍ରତ୍ୟୁଷ ଚାରିଟାବେଳେ ସ୍ନାନ ଓ ନିତ୍ୟକର୍ମାଦି ଶେଷ କଲି । ମା'ମାନଙ୍କୁ ଏକାଠି କରି ତରକାରୀ ପାଇଁ ପରିବା କାଟିବା ଯୋଗାଡ଼ କରିନେଲି । ବେଳା ପ୍ରାୟ ଏଗାରଟା ପୂର୍ବରୁ ପାକଶାଳା କର୍ମ ଶେଷ ହୋଇଗଲା । ନ୍ୟସ୍ତ ହୋଇଥିବା ଦାୟିତ୍ୱ ସୁରୁଖୁରୁରେ ତୁଲାଇ ପାରିଥିବାରୁ ମନରେ ଯେ କି ଆନନ୍ଦ ! ଠାକୁର-ଭୋଗ ଦିଆ ସରିବା ପରେ ସମସ୍ତେ ପ୍ରସାଦ ପାଇଲେ ।

## କର୍ମଦକ୍ଷତାର (ଅନୁଚିତ) ପରୀକ୍ଷା

ଅପରାହ୍ଣରେ ଶ୍ରୀ ଶ୍ରୀ ଠାକୁରଙ୍କୁ ଆସନରେ ବସାଇ ଶିଷ୍ୟ ଭକ୍ତଙ୍କର ସଭା ଆରମ୍ଭ ହୋଇଗଲା । ଶ୍ରୀ ଶ୍ରୀ ଠାକୁର ଧର୍ମୋପଦେଶ ଦେଉଥାଆନ୍ତି । ନାନା ପ୍ରକାର ପ୍ରଶ୍ନର ମିମାଂସା ହେଉଥାଏ । ସନ୍ଧ୍ୟାବେଳେ ମୋ ଉପରେ କୌଣସି ଦାୟିତ୍ୱ ନ୍ୟସ୍ତ ଥିବା କଥା ମୁଁ ଜାଣିନଥିଲି । ପ୍ରାୟ ଛ'ଟା ବେଳେକୁ ହଠାତ୍ ପୂର୍ଣ୍ଣଦା ମୋତେ ଡାକି ପକାଇଲେ ଓ ଠାକୁର-ଭୋଗ ପାଇଁ ସୁଜି ହାଲୁଆ ପ୍ରସ୍ତୁତ କରିବାକୁ ଆଦେଶ ଦେଲେ । ମୁଁ ପୂର୍ଣ୍ଣଦାଙ୍କୁ କହିଲି, "ଆପଣ ଏ ଯାଏଁ ଏ ବିଷୟରେ କିଛି କହିନଥିଲେ ଯେ ! ସୁଜି ହାଲୁଆ ଏତେ ଶୀଘ୍ର କିପରି ପ୍ରସ୍ତୁତ କରିବି ? ଆରତି ହେବା ବେଳତ ଆସି ହେଲା ।" ପୂର୍ଣ୍ଣଦା ମତେ ଧମକ ଦେଇ କହିଲେ, "ଅଲବତ୍ କରିବାକୁ ହେବ । ଯେତେ ଶୀଘ୍ର ପାରିବ କର !" ଏହା କହି ମୋତେ ପ୍ରାୟ ପାଞ୍ଚ କେଜି ସୁଜି ଓ ସମପରିମାଣ ଚିନି ଓ କିଛି ଘିଅ ଦେଇ ଗଲେ । ମୁଁ ଆଉ ବିଳମ୍ବ ନ କରି ସ୍ନାନ ସମାପନ କଲି ଓ ସୁଜି ଭାଜିବା ଆରମ୍ଭ କରିଦେଲି । କିନ୍ତୁ ଅଳ୍ପ ସମୟ ମଧ୍ୟରେ ଏତେଗୁଡ଼ିଏ ସୁଜି ଭଜାଯିବା ଅସମ୍ଭବ । ସନ୍ଧ୍ୟା ଅତୀତ ହେବା ଉପରେ । ଆରତିର ଆୟୋଜନରେ ବିଳମ୍ବ ହେଉଥିବା ଲକ୍ଷ୍ୟ କରି ଶ୍ରୀ ଶ୍ରୀ ଠାକୁର ପୂର୍ଣ୍ଣଦାଙ୍କୁ ପଚାରିଲେ, "ଏ ଯାଏ ଆରତି ହୋଇ



ପରମହଂସ ଶ୍ରୀମତ୍ ସ୍ୱାମୀ ନିଗମ ନନ୍ଦ ସରସ୍ୱତୀ

ନାହିଁ କାହିଁକି ?" ପୂର୍ଣ୍ଣଦା ଉତ୍ତର ଦେଲେ, "ଠାକୁର, ମୁଁ ଜାଲୁଆ ତିଆରି ଚାଲିଛି । ସରିଲେ ଆରତି କରାଯିବ ।"

ପାକଶାଳାରୁ ମୁଁ ଏ କଥା ଶୁଣିପାରିଲି ଏବଂ ସେଥିପାଇଁ ମୋତେ ଖୁବ୍ ଦୁଃଖ ଲାଗିଲା । କ'ଣ ବା କରାଯାଏ, ପାଞ୍ଚ କେଜି ସୁଜି ଭଲଭାବେ ଭଜା ହେବାପାଇଁ ପରିମିତ ସମୟ ତ ଦରକାର ! କିଛି ସମୟ ପରେ ଠାକୁର ପୁଣି ବ୍ୟସ୍ତ ଭାବେ ପଚାରିଲେ, "ଏବେ ମଧ୍ୟ ଆରତିର ସମୟ ହୋଇନାହିଁ ?" ପୂର୍ଣ୍ଣଦା ପୂର୍ବ ଭଳି କହିଲେ ଯେ, ସୁଜି ଭଜା ସରିନାହିଁ, ତେଣୁ ଆରତି ହେବାରେ ଡେରି ହେଉଛି । ଠାକୁର ପୁଣି ପଚାରିଲେ, "ଭୋଗ କିଏ ପ୍ରସ୍ତୁତ କରୁଛି ?" "ଭୋଳାନାଥ"—ପୂର୍ଣ୍ଣଦା ଉତ୍ତର ଦେଲେ ।

ମୁଁ ଏ ସବୁ କଥା ଶୁଣିପାରୁଥାଏ—କିନ୍ତୁ ନିରୁପାୟ । ଯଦିଓ ଆରତି ସମୟ ଗଡ଼ିଯାଉଥିବାରୁ ମୋତେ ପରୋକ୍ଷ ଭାବେ ଦାୟୀ କରାଯାଉଥାଏ; ବାସ୍ତବରେ ମୋର ଦୋଷ କେଉଁଠି ? ଏହି ସମୟରେ ଚିଦାନନ୍ଦ ମହାରାଜ ସହସା ହଠାତ୍ ଉଠି ଆସି ମୋର ଗଳା ଚିପି ଧରିଲେ ଓ କ୍ରୋଧପୂର୍ଣ୍ଣ ସ୍ୱରରେ କହିଲେ, "ତୁ ଏହିକ୍ଷଣି ଆଶ୍ରମରୁ ବାହାରି ଯା; ଆଉ ମୁହୂର୍ତ୍ତେ ମଧ୍ୟ ଏଠି ନୁହେଁ !" ଏହା ଶୁଣି ମୋର ଖୁବ୍ ରାଗ ହେଲା । ମୁଁ ଉଚ୍ଚସ୍ୱରରେ କହିଲି, " ମହାରାଜ, ମୁଁ ଆପଣଙ୍କ ଆଶ୍ରମରେ ନ ରହିପାରେ, କିନ୍ତୁ ଶ୍ରୀ ଶ୍ରୀ ଠାକୁରଙ୍କ ଭଳି ସିଦ୍ଧିର ଅଧିକାରୀ ମୁଁ ନୁହେଁ ଯେ ପନ୍ଦର ମିନିଟ୍ ମଧ୍ୟରେ ପାଞ୍ଚ କେଜି ସୁଜି ହାଲୁଆ ପ୍ରସ୍ତୁତ କରିଦେବି । ଅଧିକନ୍ତୁ, ଆପଣ-ମାନଙ୍କର ଏପରି ଅବଜ୍ଞା ଲାଗି ମୋର ସମସ୍ତ ଭକ୍ତି ବିଶ୍ୱାସ ନଷ୍ଟ ହୋଇ-ଯିବ । ବର୍ତ୍ତମାନ ଅବସ୍ଥାରେ ଏହି ସୁଜିରେ ପାଣି ଦିଆଯାଇନପାରେ—ମୁଁ ଏହାକୁ ଠିକ୍ ଭାବେ ପକ୍ୱ ନ କରିବା ଯାଏଁ କିନ୍ତୁ ଶୁଣନ୍ତୁ—ଆପଣ ଅନ୍ୟ ସୁଜି ଆଣି ଅନ୍ୟଦ୍ୱାରା ତିଆରି କରାଇ ପାରନ୍ତି ବା କଞ୍ଚା ସୁଜିକୁ ଠାକୁର ଭୋଗ ଲାଗି ପଠାଇପାରନ୍ତି । ଦେଖିବି ଆପଣମାନେ କେତେ ବଡ଼ ଭଗବାନ !" ମହାରାଜ ମୋର ଅବସ୍ଥା ଓ ଭାବ ଦେଖି ଶାନ୍ତ ହୋଇଗଲେ ଏବଂ କହିଲେ, "ଦେଖୁ ଭୋଳା, ଆମେ ଦୁହେଁ ଏକ

ସଙ୍ଗେ ସଙ୍ଗେ ସୁଜକୁ ପ୍ରସ୍ତୁତ କରିଦେବା । ମହାରାଜ ତାପରେ ନିଜ ଉପରକୁ ଦାୟିତ୍ୱ ଟାଣିନେଇ ସୁଜରେ ପାଣି ଢ଼ାଳିଦେଲେ ଓ ହାଲୁଆ ପ୍ରସ୍ତୁତ ହୋଇ ଠାକୁର ଭୋଗ ପାଇଁ ପଠାଗଲା । ଆରତି ଘଣ୍ଟା ବାଜିବାରୁ ଶ୍ରୀ ଶ୍ରୀ ଠାକୁର ଭିତରକୁ ଗଲେ । ମୁଁ ସଦାନନ୍ଦ ମହାରାଜଙ୍କୁ ବୁଝାଇ କହିଲି ଯେ, "ଆଗରୁ ମୋତେ ସୁଜି ତିଆରି କଥା କହିପାରିଥାନ୍ତେ, କାଲି କ'ଣ ଆଉ ଏପରି ବିଳମ୍ବ ହେବ ?" ପରଦିନ ମୋ ଉପରେ ଯେଉଁସବୁ କର୍ମର ଭାର ନ୍ୟସ୍ତ ଥିଲା, ଯେଥିରେ କୌଣସି ପ୍ରକାର ତ୍ରୁଟି ଘଟିବାକୁ ନ ଦେଇ ସମସ୍ତ ସୁସ୍ଥୁରୂପେ ସମ୍ପାଦନ କଲି । ସକାଳବେଳା ସଅଳ ସଅଳ ରୋଷେଇ ହେଲା । ସନ୍ଧ୍ୟା ଭୋଗପାଇଁ ମଧ୍ୟ ଯଥାସମୟରେ ହାଲୁଆ ତିଆରି କରି ଯୋଗାଇଦେଲି ।

## ବ୍ୟଜନ ସେବାର ସୁଯୋଗ

ସେ ଦିନ ସେବା ସାରି ଶ୍ରୀ ଶ୍ରୀ ଠାକୁର ବିଶ୍ରାମ କରୁଥାଆନ୍ତି । ଟ୍ରଷ୍ଟ ସଭାର ବୈଠକ ବସିଲା । ଅଧିକାଂଶ ବ୍ରହ୍ମଚାରୀ ଓ ସେବକ ସେଥିରେ ଯୋଗ ଦେବାର କଥା । ତେଣୁ ଶ୍ରୀ ଶ୍ରୀ ଠାକୁରଙ୍କୁ ପଙ୍ଖା କରିବାକୁ କେହି ନ ଥାଆନ୍ତି । ସଦାନନ୍ଦ ମହାରାଜ ମୋତେ ଡାକି କହିଲେ, "ଭୋଳା, ତୁମେ ଶ୍ରୀ ଶ୍ରୀ ଠାକୁରଙ୍କୁ ପଙ୍ଖା ଲଗି କରିପାରିବ ? ଦେଖ, ଯେପରି ତାଙ୍କ ନିଦ୍ରାରେ ବ୍ୟାଘାତ ନ ହୁଏ !" ମୁଁ ତାଙ୍କ କଥାରେ ସମ୍ମତ ହୋଇ କେତେ ବେଗରେ ପଙ୍ଖା ଚଳାଇବାକୁ ହେବ ଦେଖିନେଲି ଓ ପଙ୍ଖା ଧରି ଶ୍ରୀ ଶ୍ରୀ ଠାକୁର ବିଶ୍ରାମ କରୁଥିବା ଘରେ ପ୍ରବେଶ କଲି । ଏକାନ୍ତରେ ଶ୍ରୀ ଶ୍ରୀ ଠାକୁରଙ୍କୁ ଦର୍ଶନ କରିବାର ଏଇ ପ୍ରଥମ ସୁଯୋଗ । ମୋର ଆଖି ସେହି ଭଗବାନ୍ଙ୍କ ମୂର୍ତ୍ତି ଉପରେ ଲାଖି ରହିଲା । ତପସ୍ୱୀ ଗୌରକାନ୍ତି ଓ ସୌମ୍ୟ ସୁଠାମ ଶରୀରର ଶୋଭା ଦର୍ଶନ କରୁ କରୁ ମୁଁ ନିସ୍ପନ୍ଦ ହୋଇ ପଡ଼ିଲି । ଯେଉଁଭଳି ରୂପ ସେହିଭଳି ମହିମା । ଏହି ମୂର୍ତ୍ତିମାନ୍ ପୁରୁଷୋତ୍ତମଙ୍କର ଶ୍ରୀଚରଣରେ ନିଜକୁ ସମର୍ପିଥିବାରୁ ଜୀବନକୁ

ଧନ୍ୟ ମନେ କଲି । କ୍ରମଶଃ ସସଂଭ୍ରମେ ମୋର ହସ୍ତ ସଂଗ୍ନଳିତ ହେବାକୁ ଲଗିଲା । ମନରେ ଅପାର ଆନନ୍ଦ ଓ ଗୌରବ ବୋଧ ! ପଙ୍ଖାର ମୃଦୁ କମ୍ପନ ଦେବତାଙ୍କ ଶ୍ରୀଅଙ୍ଗକୁ ସୁଖଦାୟୀ ହେଲେ ମୋର ସେବା ସାର୍ଥକ ହେବ ।

## ଦୁସ୍ତର ସେବାପରାଧ

କିନ୍ତୁ ଦୁଃଖର ବିଷୟ, କିଛି କ୍ଷଣ ପରେ ମୋର ସେହି ଦିବ୍ୟ ଭାବାବେଶ ତମୋଗୁଣଦ୍ୱାରା ତିରୋହିତ ହେବାକୁ ଲଗିଲା । ଗୃହୁଁ ଗୃହୁଁ ମୋର ଚକ୍ଷୁରେ ନିଦ୍ରାର ପ୍ରବଳ ତନ୍ମୟତା ଘୋଟିଗଲା । ମୁଁ ମନେ ମନେ ପ୍ରମାଦ ଗଣିଲି । ଆଉ କରେ କ'ଣ ? ଅନେକ ଚେଷ୍ଟା ସତ୍ତ୍ୱେ ନିଦ୍ରାର ପ୍ରଭାବରୁ ମୁକ୍ତ ହୋଇ ପାରିଲି ନାହିଁ— ଅପରନ୍ତୁ ଏହା ଅଧିକ ଘନୀଭୂତ ହେବାକୁ ଲଗିଲା । "ନିଦ୍ରା କବଳରୁ ରକ୍ଷା କର ପ୍ରଭୁ"—ମନେ ମନେ ଅନେକ ପ୍ରାର୍ଥନା କଲି, ମାତ୍ର ସମସ୍ତ ବିଫଳ ହେଲା । ପଙ୍ଖା ହାତରେ ଶ୍ରୀ ଶ୍ରୀ ଠାକୁରଙ୍କ ଉପରେ ଲଗୁଡ଼ି ହୋଇ ପଡ଼ିଗଲି । ଶ୍ରୀ ଶ୍ରୀ ଠାକୁର ଆଖି ଖୋଲି ଥରେ ମୋ ଆଡ଼କୁ ଅନାଇଲେ ଏବଂ ପୁଣି ଆଖି ବୁଜିଦେଲେ । ମୁଁ ଭୟରେ କମ୍ପିବାକୁ ଲଗିଲି । ନାନା ରକମ ଦୁଶ୍ଚିନ୍ତା ମନରେ ପ୍ରବେଶ କଲା । ମନେ ମନେ କାତର ପ୍ରାର୍ଥନା ଓ ଅନୁନୟ କଲି । ତଥାପି ନିଦ୍ରାଦେବୀ ଆସି ପୁଣି ଥରେ ଆକ୍ରମଣ କରୁଥାନ୍ତି । ଏଥର ତାମସୀ-ଦେବୀଙ୍କର ବଳ ଢେର ବେଶି ପରି ଲାଗୁଥାଏ । "ମୋତେ ରକ୍ଷାକର, ଠାକୁର"—କଥାଟି କହୁ କହୁ ମୋର ସମଗ୍ର ଶରୀର ତାଙ୍କ ପାଦ ଉପରେ ଢଳି ପଡ଼ିଲା । ଏଥରକ ଶ୍ରୀ ଶ୍ରୀ ଠାକୁରଙ୍କ ମୁଖରୁ ପଦେ କଥା ଶୁଣାଗଲା, "ଏଠାରେ ଆଉ କେହି ନାହାନ୍ତି ?" ଅସ୍ପଷ୍ଟ କ୍ଷୁବ୍ଧ କଣ୍ଠରେ ମୁଁ ଉତ୍ତର ଦେଲି, "ଆଉ କେହି ଥିଲେ ଆପଣଙ୍କୁ କ'ଣ ପଙ୍ଖାର ଏପରି ଗୋଇଠା ଖାଇବାକୁ ପଡ଼ିଥାଆନ୍ତା !" ପରକ୍ଷଣରେ ତାଙ୍କ ଚକ୍ଷୁ ନିମୀଳିତ ହେଲା ।

## ଅନୁତାପର ଦାହ

" ଅଧିକନ୍ତୁ ଦୁଃଖରେ କାତର ହୋଇ ମୁଁ ଭାବିଲି, 'ଶ୍ରୀ ଶ୍ରୀ ଠାକୁରଙ୍କୁ ଆଉ ବେଶୀ କଷ୍ଟ ଦେଇ ପାପଭାଗୀ ହେବିନାହିଁ ।' ସଙ୍ଗେ ସଙ୍ଗେ ପଙ୍ଖା ଥୋଇଦେଇ ସେଠାରୁ ବାହାରି ଆସିଲି । ଅନୁତାପର ଅନଳ ମନକୁ ଦଗ୍ଧ କରୁଥାଏ । ଶାରୀରିକ ଜଡ଼ତାର ଉଗ୍ରତା ମୋର ଗୁରୁଭକ୍ତିର ଶକ୍ତି ନିଷ୍ପ୍ରଭ ହେଲା ଭଳି ଜଣାପଡ଼ୁଥାଏ । ଭାବିବାକୁ ଲାଗିଲି, ଯଦି ମୋର ପାଖରେ ଏହି ନଶ୍ୱର ଦେହ ଗୁରୁ ସେବାରେ ନିଯୁକ୍ତ ହେବାକୁ ଅକ୍ଷମ ହେଲା ତେବେ ଏହାକୁ ଧରି ରଖିବାରେ ଆଉ ସାର୍ଥକତା କେଉଁଠି ? ଆତ୍ମହତ୍ୟା ଛଡ଼ା ଏପରି ପାପର ଅନ୍ୟ ପ୍ରତିକାର ନାହିଁ । ଅନୁତାପର ବହ୍ନିଜ୍ୱାଳାରେ ଜର୍ଜରିତ ହୋଇ ଚିଦାନନ୍ଦ ମହାରାଜଙ୍କ ପାଖରେ ଯାଇ ପହଞ୍ଚିଲି । ମୁଁ ମୋର ଭାବକୁ ସମ୍ପୂର୍ଣ୍ଣରୂପେ ପ୍ରକାଶ କରିବା ଆଗରୁ ସେ ଅବସ୍ଥାର ଗୁରୁତ୍ୱ ବିବେଚନା କରି ନେଲେ ଓ ପାଖରେ ଥିବା ଲୋକଙ୍କୁ କହିଲେ, "ଏହାକୁ ଶୀଘ୍ର ଗୋଟିଏ ଘରେ ବନ୍ଦ କରି ରଖ । ପରେ ମୁଁ ସମସ୍ତ ଘଟଣା ବୁଝାଇ କହିବି ।" ମହାରାଜଙ୍କ ଆଦେଶକ୍ରମେ ସଙ୍ଗେ ସଙ୍ଗେ ପାଞ୍ଚଜଣ ଲୋକ ଜୋରପୂର୍ବକ ମୋତେ ନେଇ ଗୋଟିଏ ଘରେ ବନ୍ଦ କରିଦେଲେ । ନିରୁପାୟ ହୋଇ ମୁଁ ତା ଭିତରେ ଅଟକ ରହିଲି । କିଛି ସମୟ ପାଇଁ ମୋର ସାରା ଶରୀର ଜୋରରେ କମ୍ପିବାକୁ ଲାଗିଲା । ପରେ ପରେ ମୁଁ ନିଦ୍ରାଭିଭୂତ ହୋଇପଡ଼ିଲି । ଜାଗ୍ରତ ହେବା ପରେ ଦେଖିଲି ଯେ ମହାରାଜ ମୋତେ ଡ଼ାକୁଛନ୍ତି । ଉଠିପଡ଼ି ତାଙ୍କୁ ମୁଁ ପ୍ରଣାମ କଲି । ମନରୁ ଅନୁତାପ ଦୂର ହୋଇଯାଇଥିଲା । ଆଗଭଳି ନିଜ କାମରେ ବ୍ୟାପୃତ ରହିଲି ।

## ବ୍ରହ୍ମଚର୍ଯ୍ୟ ଦୀକ୍ଷାର ସୂଚନା

ପରଦିନ ସକାଳୁ କାର୍ଯ୍ୟବ୍ୟସ୍ତ ଥିଲାବେଳେ ଖବର ମିଳିଲା ଯେ, ଶ୍ରୀ ଶ୍ରୀ ଠାକୁର ଚିଦାନନ୍ଦ ମହାରାଜଙ୍କୁ ସମ୍ଭବତଃ କହିଲେ, "ଏହି ଆଶ୍ରମରେ ଜଣକୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେଲେ ଭଲ ହୁଅନ୍ତା । ଚିଦାନନ୍ଦ

ମହାରାଜ ପରାମର୍ଶ ଦେଲେ, "ଠାକୁର, ଏଠାରେ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଗ୍ରହଣ କରିବା ପାଇଁ କୌଣସି ଯୋଗ୍ୟ ଆଧାର ନାହିଁ।" ଶ୍ରୀ ଶ୍ରୀ ଠାକୁର କଟାକ୍ଷ କରି କହିଲେ, "ତୁମେଇ ସବୁଥିପାଇଁ ଏକମାତ୍ର ଯୋଗ୍ୟ। ମୁଁ ଦୀକ୍ଷା ଦେବାକୁ ଆଗ୍ରହ କଲାବେଳେ ତୁମେ ଗୁରୁଙ୍କ ଉପରେ ଗୁରୁଗିରି କରିବାକୁ ଚେଷ୍ଟା କାହିଁକି କରୁଛ?" ସଙ୍କୁଚିତ ଭାବେ ଚିଦାନନ୍ଦ ମହାରାଜ ପଚାରିଲେ, "ତେବେ ଠାକୁର, ଆପଣଇ କହନ୍ତୁ, ଏଠାରେ ଏପରି ଉପଯୁକ୍ତ ସେବକ କିଏ ଅଛି।" ଶ୍ରୀ ଶ୍ରୀ ଠାକୁର କହିଲେ, "କାହିଁକି, ସେଇ ଭୋଲାନାଥ ନାମରେ ଯେଉଁ ବ୍ରାହ୍ମଣ ପିଲାଟି?" ଚିଦାନନ୍ଦ ମହାରାଜ ଦୃଢ଼ ଭାବରେ ଜଣାଇଲେ, "ଠାକୁର, ଭୋଲାନାଥ ପ୍ରଚଣ୍ଡ କ୍ରୋଧୀ ଓ ବୋକା ଧରଣର ପିଲା। ଆପଣ ଶେଷରେ ତାକୁଇ ବ୍ରହ୍ମଚର୍ଯ୍ୟ ଦୀକ୍ଷା ପାଇଁ ନିର୍ବାଚନ କରୁଛନ୍ତି?" ଶ୍ରୀ ଶ୍ରୀ ଠାକୁର କହିଲେ, "ତୁମ ନିଜ ପାଣ୍ଡିତ୍ୟ ତୁମ ପାଖରେ ଥାଉ। ଶୀଘ୍ର ଯାଇ ତାକୁ ଡାକି ଆଣ। ମୁଁ ଦୀକ୍ଷା ନିଶ୍ଚୟ ଦେବି।"

ଶ୍ରୀ ଶ୍ରୀ ଠାକୁରଙ୍କର ଏପରି ଆଗ୍ରହ ଲକ୍ଷ କରି ଚିଦାନନ୍ଦଜୀ ଅବିଳମ୍ବେ ମୋପାଖକୁ ଆସିଲେ ଏବଂ କହିଲେ, "ଭୋଲା, ତୁମେ ଭାଗ୍ୟବାନ୍, ଶ୍ରୀ ଶ୍ରୀ ଠାକୁର ତୁମକୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେବାକୁ ଚାହୁଁଛନ୍ତି। ତୁମେ ମୋ ସାଙ୍ଗରେ ଆସ। ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍ଗେ ସାକ୍ଷାତ୍ କରିବ।"

କିଛିଦିନ ଆଗରୁ ଚିଦାନନ୍ଦ ମହାରାଜ ମୋର ଦୀକ୍ଷା ନେବାର ସମୟ ହୋଇନାହିଁ ବୋଲି ପରାମର୍ଶ ଦେଉଥିଲେ। କିନ୍ତୁ ସେ ଯେ ମୋତେ ଦୀକ୍ଷାପାଇଁ ସର୍ବଥା ଅଯୋଗ୍ୟ ବୋଲି ବିଚାରୁଥିବେ ଏ କଥା ବିଶ୍ୱାସ କରୁନଥିଲି। କାରଣ ସେ ନିଜେ ମୋତେ ସ୍ୱାମୀଙ୍କ ପାଖକୁ ପଠାଇ ବ୍ରହ୍ମଚର୍ଯ୍ୟାଶ୍ରମରେ ପ୍ରବେଶ ଲାଗି ଅନୁମତି ଚାହିଁଥିଲେ ଓ ସମୟ ହେଲେ ଗୁରୁ ଆପେ ଡାକିନେଇ ଦୀକ୍ଷା ଦେବେ ବୋଲି କହୁଥିଲେ। ତେଣୁ ଶ୍ରୀ ଶ୍ରୀ ଠାକୁରଙ୍କର ଦୀକ୍ଷା ଦାନରେ ଆଗ୍ରହ କଥା ସେ କହିବାରୁ ମୋ ମନରେ ଅଭିମାନ ଜାଗିଥିଲା ଓ ନିର୍ବିକାର ଭାବରେ ତାଙ୍କୁ ଉତ୍ତର ଦେଲି, "ମହାରାଜ, ଦୀକ୍ଷାର କୌଣସି ପ୍ରୟୋଜନ ନାହିଁ। ମୁଁ ଦୀକ୍ଷା ନେବାକୁ

ଗ୍ରହେଁ ନା ।" କିନ୍ତୁ ନିୟତିର ବିଧାନ ଅନ୍ୟ ପ୍ରକାର । ସେ ଦିନ ପୂର୍ବାହ୍ଣରେ ମୋ ଉପରେ ଅହୈତୁକୀ ଗୁରୁକୃପା ବର୍ଷିତ ହେବାକୁ ଯାଉଥିଲା । ମୋର ପ୍ରତିରୋଧ ଓ ସଙ୍କୋଚ ସତ୍ତ୍ୱେ ଦୟାଳୁ ଠାକୁର ସ୍ୱତଃପ୍ରବୃତ୍ତ ହୋଇ ମୋର ଦୀକ୍ଷାର ବ୍ୟବସ୍ଥା କରିଦେଲେ ।

ଦୀକ୍ଷାପ୍ରତି ମୋର ଅନିଚ୍ଛାର ଭାବ ଲକ୍ଷ୍ୟ କରି ଚିଦାନନ୍ଦ ମହାରାଜ ସାମାନ୍ୟ ବିରକ୍ତି ପ୍ରକାଶ କଲେ ଓ ସେଠାରୁ ଚାଲିଯାଇ ଶ୍ରୀ ଶ୍ରୀ ଠାକୁରଙ୍କୁ ଜଣାଇଲେ, "ଠାକୁର, ମୁଁ ଆଗରୁ ଆପଣଙ୍କୁ କହୁଛି ଯେ, ଭୋଳାନାଥ ପ୍ରଥମ ଶ୍ରେଣୀର ବୋକା, ଦୀକ୍ଷାପାଇଁ ଆପଣଙ୍କ ଆଦେଶକୁ ସେ ପ୍ରତ୍ୟାଖ୍ୟାନ କଲା ।"

## ଅହେତୁକୀ ଗୁରୁକୃପା

ସମସ୍ତ ଶୁଣି ସାରି ଶ୍ରୀ ଶ୍ରୀ ଠାକୁର କହିଲେ, ଚିଦାନନ୍ଦ, ତୁମେ ଯାଇ ତାକୁ କାନ୍ଧରେ ବସାଇ ଆଣ । କଥାରେ କହିଲେ ବା ଅନୁରୋଧ କଲେ ସେ ଆସିବାର ପାତ୍ର ନୁହେଁ ।" ଏହା ଶୁଣି ଚିଦାନନ୍ଦଜୀ ଚରମ ଭାବାବେଶ ସହ ମୋ ପାଖକୁ ଦଉଡ଼ି ଆସିଲେ ଓ ମୋତେ ଦୁଇ ହାତରେ କୋଳାଇ ଧରି ଟେକି ନେବା ପାଇଁ ଉପକ୍ରମ କଲେ । ମୁଁ ତାଙ୍କୁ କହିଲି, "ଏ କ'ଣ, ମହାରାଜ, ଆଶ୍ରମାଧ୍ୟକ୍ଷ ହୋଇ ଆପଣ ଏପରି ଆଚରଣ କରୁଛନ୍ତି କାହିଁକି ?" "ଭୋଳା, ଶ୍ରୀ ଶ୍ରୀ ଠାକୁରଙ୍କ ଆଦେଶ, ତୁମକୁ କାନ୍ଧରେ ବସାଇ ନେଇ ତାଙ୍କ ପାଖରେ ପହଞ୍ଚାଇଲେ ସେ ଦୀକ୍ଷା ଦେବେ । ଏହା ତୁମପାଇଁ ଓ ମୋ ପାଇଁ ଏକ ପରମ ସୁଯୋଗ ! ଏହି ଲୀଳାର ସାକ୍ଷୀ ଭୂମିକାରେ ଅଭିନୟ କରି ମୁଁ ପରମାନନ୍ଦ ଆସ୍ୱାଦନ କରୁଛି ।" "ମହାରାଜ, ଆପଣଙ୍କୁ ଆଉ କଷ୍ଟ କରିବାକୁ ହେବ ନାହିଁ, ଚାଲନ୍ତୁ, ମୁଁ ଆପେ ଯାଉଛି ।" ଏହା କହି ମୁଁ ତାଙ୍କୁ ଅନୁସରଣ କଲି ଓ ଶ୍ରୀ ଶ୍ରୀ ଠାକୁରଙ୍କ ପାଖକୁ ଯାଇ ପ୍ରଣାମ କଲି । ମୋତେ ଦେଖି ଶ୍ରୀ ଶ୍ରୀ ଠାକୁର କହିଲେ, ଭୋଳା, ମୁଁ ଆଜି ତୁମକୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେବାକୁ ଚାହେଁ । ତୁମର

ଦୀକ୍ଷା ପାଇଁ ଆବଶ୍ୟକୀୟ ଆୟୋଜନ କରାଯାଉଛି । ତୁମେ ତୁମ ନିଜର କାମ କରୁଥାଅ । ମୁଁ ପୁଣି ତୁମକୁ ଡକାଇ ଆଣିବି ।" ମନର ଅନ୍ତରାଳରେ ଚାଲୁଥିବା ଗୁରୁତର ଦ୍ୱନ୍ଦକୁ ଚାପି ରଖି ମୁଁ ନୀରବ ସ୍ୱୀକୃତି ଜଣାଇଲି । ଦୀକ୍ଷା ପାଇଁ ଶ୍ରୀ ଶ୍ରୀ ଠାକୁରଙ୍କ ଆହ୍ୱାନ ମୋ ମନରେ ବାସ୍ତବିକ ଏକ ଅଜବ ଅନୁଭୂତି ସୃଷ୍ଟି କରୁଥିଲା । ଏତେ ବଡ଼ ସୁଯୋଗ ଲାଭ କରିବା ପାଇଁ ମୁଁ କାଳେ ଯୋଗ୍ୟ ନୁହେଁ ବୋଲି କିଛି ପରିମାଣ ସଙ୍କୋଚ ଏବଂ ପୂର୍ବ ଦିନ ବ୍ୟଞ୍ଜନ ସେବାରେ ଘଟିଥିବା ଅପରାଧ ପାଇଁ କିଛି ମାତ୍ରାରେ ଦୁର୍ବଳତା ବୋଧ ଜାଗୁଥିଲା— ଅନ୍ୟ ପକ୍ଷରେ ଏ ସବୁ ସତ୍ତ୍ୱେ ବିଶେଷତଃ, ସଦାନନ୍ଦ ମହାରାଜାଙ୍କର ଆପତ୍ତିକୁ ଅତିକ୍ରମ କରି ଶ୍ରୀ ଶ୍ରୀ ଠାକୁର ମୋତେ ଶିଷ୍ୟତ୍ୱରେ ବରଣ କରିବାକୁ ଯାଉଥିବା କଥା ମୋତେ ଅଭିଭୂତ କରୁଥିଲା । ସ୍ନାନ ଓ ନୂତନ ଗେରୁଆ ବସ୍ତ୍ର ପରିଧାନ କରି ମୁଁ ତାଙ୍କ ଆଦେଶର ପ୍ରତୀକ୍ଷା କଲି । କିଛି ସମୟ ପରେ ଡ଼ାକରା ଆସିଲା । ମୁଁ ଯାଇ ପ୍ରଣାମ କରି ବସିଲି । ଶ୍ରୀ ଶ୍ରୀ ଠାକୁର ଖବର କାଗଜ ପଢୁଥାଆନ୍ତି । ମୋତେ ଦେଖି ସେ କହିଲେ, "ଆଉ କିଛି ସମୟ ପରେ ଆସିବ— ମୋର ଆଉ ଅଳ୍ପ କାମ ବାକି ଅଛି ।" ଏହିପରି ଥରକୁଥର ତିନିଥର ମୋତେ ସେଠା ଯିବାକୁ ହେଲା । ଶେଷଥର ଯାଇ ଦେଖିଲି ଶ୍ରୀ ଶ୍ରୀ ଠାକୁର ଗୁରୁବ୍ରହ୍ମଙ୍କ ଆସନ ଆଡ଼କୁ ମୁହଁ କରି ବସିଛନ୍ତି । ମୁଁ ତାଙ୍କ ସମକ୍ଷରେ ପ୍ରଣାମ କଲାବେଳେ ଗୁରୁଙ୍କର ପ୍ରତିଷ୍ଠିତ ଆସନ ମୋର ପୃଷ୍ଠଭାଗରେ ରହିଲା । ଏହା ଦେଖି ଶ୍ରୀ ଶ୍ରୀ ଠାକୁର ମୋତେ ପଚାରିଲେ, ତୁମ ପଛପଟେ କ'ଣ ଅଛି ଜାଣିନ ?" ମୁଁ ଉତ୍ତର ଦେଲି, "ଠାକୁର, ମୁଁ ତ ନିତ୍ୟନିୟମିତ ଆପଣଙ୍କୁ ଗୁରୁଙ୍କ ଆସନରେ ପୂଜା କରେ । ମୋର ଆରାଧ୍ୟ ଗୁରୁଦେବ ସ୍ଥୂଳ ରୂପରେ ଯଦି ସମ୍ମୁଖରେ ଆବିର୍ଭୂତ ହୁଅନ୍ତି, ତେବେ ତାଙ୍କୁ ପ୍ରଣାମ କଲାବେଳେ ଗୁରୁଙ୍କ ଆସନକୁ ପଛ କରିବାରେ ଦୋଷ କାହିଁକି ହେବ ?" ଏହା ଶୁଣି ଶ୍ରୀ ଶ୍ରୀ ଠାକୁର ଅଳ୍ପ ହସି କହିଲେ, "ବେଶ, ବେଶ, ଗୋଟିଏ ପାଖକୁ ବସ, ଯେପରି ପ୍ରତିଷ୍ଠିତ ଆସନର ଅବମାନନା ନ ହୁଏ ! ସାଧୁ ସନ୍ନ୍ୟାସୀମାନେ ଆଦର୍ଶଚ୍ୟୁତ ହୁଅନ୍ତି ନାହିଁ ।" ତାଙ୍କ ଆଦେଶକ୍ରମେ ମୁଁ ଆଡ଼େଇ ହୋଇ ବସିଲି । କିଛିକ୍ଷଣ ପରେ ଶ୍ରୀ ଶ୍ରୀ ଠାକୁର କହିଲେ, "ଚାଲ, ଏଥରକ ତୁମର ଦୀକ୍ଷା

ହେବ ।” ଏହା କହି ସେ ଆସନ ମନ୍ଦିର ଭିତରେ ପ୍ରବେଶ କଲେ । ମୁଁ ତାଙ୍କୁ ଅନୁସରଣ କଲି । ନିଜେ ଗୋଟିଏ ଆସନରେ ଉପବେଶନ କରି ମୋତେ ଅନ୍ୟ ଏକ ଆସନରେ ବସାଇଲେ ।

## ମନ୍ତ୍ରୋପଦେଶ ଓ ବରାଭୟ ଲାଭ

ତାପରେ ଶ୍ରୀ ଶ୍ରୀ ଠାକୁର କହିଲେ, "ଦେଖ, ମୁଁ ତୁମକୁ ବର୍ତ୍ତମାନ ଦୀକ୍ଷା ଦେଇ ବ୍ରହ୍ମଚର୍ଯ୍ୟ ଆଶ୍ରମଭୁକ୍ତ କରିବାକୁ ଚାହେଁ ।” ଯଦିବା ଏହା ପୂର୍ବରୁ ଶ୍ରୀ ଶ୍ରୀ ଠାକୁରଙ୍କ ଆଦେଶକ୍ରମେ ସ୍ନାନ ଓ ନବବସ୍ତ୍ର ପରିଧାନ କରି ଦୀକ୍ଷା ନେବାକୁ ଆସିଥିଲି, ଆସନ ମନ୍ଦିର ମଧ୍ୟରେ ଶ୍ରୀ ଶ୍ରୀ ଠାକୁରଙ୍କୁ ଏକାନ୍ତରେ ପାଇ କେଜାଣି କାହିଁକି ମୋ ମୁହଁରୁ ବାହାରିଗଲା, "ଠାକୁର, ଆପଣ ମୋତେ ଦୀକ୍ଷା ଦେବାକୁ ଖୁବ୍ ଆଗ୍ରହ କରୁଛନ୍ତି ସତ । ମୁଁ କ'ଣ ଯଥାର୍ଥରେ ଆପଣଙ୍କ ଶିଷ୍ୟ ହେବାକୁ ଯୋଗ୍ୟତା ଲାଭ କରିଛି ?”

କି ଗୃହୀ, କି ସନ୍ନ୍ୟାସୀ ସମସ୍ତେ ଗୁରୁବରଣପୂର୍ବକ ଦୀକ୍ଷା ଗ୍ରହଣ କରୁଥିବା ଲକ୍ଷ୍ୟ କରି ଆଗରୁ ଦୀକ୍ଷା ପାଇଁ ଆଗ୍ରହ ମୋର ଅବଶ୍ୟ ଜାଗିଥିଲା । ବିଶେଷତଃ ସ୍ୱାମୀ ନିଗମାନନ୍ଦ ପରମହଂସଙ୍କ ପରି ଶକ୍ତିଧର ମହାତ୍ମାଙ୍କଠାରୁ ଦୀକ୍ଷା ନେବାର ସୁଯୋଗ କେତେଜଣଙ୍କ ଭାଗ୍ୟରେ ଜୁଟେ ? ସଦ୍‌ଗୁରୁଙ୍କ ଚରଣ ସ୍ପର୍ଶକରି ଧନ୍ୟ ହେବା ଲାଗି କେତେ ଭକ୍ତ ଓ ସେବକ ଉନ୍ମୁଖ ହୋଇ ରହିଥିବେ ତାର କଳନା ନାହିଁ । ତାଙ୍କଠାରୁ ଦୀକ୍ଷା ଗ୍ରହଣ କରି ସାଧନ ଭଜନରେ ପ୍ରବୃତ୍ତ ହେବା ଯେ ପରମ ସୌଭାଗ୍ୟ ଏଥିରେ ଆଉ ସନ୍ଦେହ କେଉଁଠି ? କିନ୍ତୁ ଚିଦାନନ୍ଦ ମହାରାଜଙ୍କ ଆନ୍ତରିକ ସ୍ୱୀକୃତ ଅଭାବରୁ ଏବଂ ନିଜ ମନରେ ଶିକ୍ଷା ତଥା ଶାସ୍ତ୍ରଜ୍ଞାନର ମଧ୍ୟ ଅଭାବ ଅନୁଭୂତ ହେଉଥିବାରୁ ଭାଳେ ମନ୍ତ୍ରତନ୍ତ୍ର ଆଦି ମନେ ରହିବ ନାହିଁ ବା ଗୁରୁଦତ୍ତ ସାଧନ ଭଜନ ଠିକ ଠିକ କରିପାରିବି ନାହିଁ, ଏହି ଆଶଙ୍କାରେ ଦୀକ୍ଷା ପାଇଁ ମୋର ଉତ୍ସାହ ଚାପା ପଡ଼ିଥାଏ । ମୋର ଏହି ପ୍ରଶ୍ନ ଶୁଣି ଶ୍ରୀ ଶ୍ରୀ ଠାକୁର ପଚାରିଲେ, "କହୋ କାହିଁକି ? ତୁମର ଏପରି ନ୍ୟୂନତାବୋଧର କାରଣ କ'ଣ ?” ଅନ୍ତରର କଥା ଖୋଲିଖୋଲି ଭାବେ ପ୍ରକାଶ କରି ମୁଁ ଜଣାଇଲି,

"ଠାକୁର, ମୋର ଶିକ୍ଷାଗତ ଯୋଗ୍ୟତା ଆଦୌ ନାହିଁ । ପୁଣି ମୁଁ କିଛି ମନେ ରଖିପାରେ ନାହିଁ । ଆପଣ ଯାହା କରିବାକୁ କହିବେ ବା ଯେଉଁ ମନ୍ତ୍ର ପଦ୍ଧତି ଶିକ୍ଷା ଦେବେ ସେ ସବୁତ ମୋର ମନେ ରହିବ ନାହିଁ !" ସ୍ମିତହାସ୍ୟ କରି ଶ୍ରୀ ଶ୍ରୀ ଠାକୁର ପଚାରିଲେ, "ମୁଁ ଯଦି ମନେ ରଖାଇ ଦିଏ, ତୁମକୁ ଚେଷ୍ଟା କରି ମନେ ରଖିବାକୁ ନ ପଡ଼େ, ତେବେ ?"

"ଆପଣ ଯଦି ମନେ ରଖାଇଦିଅନ୍ତି ତେବେ ମୋର ଦୀକ୍ଷା ନେବାରେ କିଛି ଆପତ୍ତି ନାହିଁ । କିନ୍ତୁ ମୁଁ ଆପଣଙ୍କ ନିର୍ଦ୍ଦେଶାନୁଯାୟୀ କଠିନ ଯୋଗ ସାଧନ ବା ଭଜନ କ'ଣ କରିପାରିବି ?" ମୁଁ ପ୍ରଶ୍ନ କଲି ।

"ତୁମକୁ କୌଣସି ସାଧନ ଭଜନ କରିବାକୁ ପଡ଼ିବ ନାହିଁ । ମୋର ଶକ୍ତିର ପ୍ରଭାବରେ ତୁମ ମାଧ୍ୟମରେ ସକଳ ସାଧନ-କ୍ରିୟା ସ୍ୱତଃ ସମ୍ପାଦିତ ହେବ ।" ଶ୍ରୀ ଶ୍ରୀ ଠାକୁର ଅଭୟ ଦେଲେ ।

"ଠାକୁର, ଆଉ ଏକ କଥା, ଆଶ୍ରମର ସମସ୍ତ ନିୟମ ପାଳନ କରିବା ମଧ୍ୟ ମୋ ପକ୍ଷରେ କଷ୍ଟସାଧ୍ୟ ହୋଇପାରେ !" ମୁଁ ତଥାପି ସନ୍ଦିଗ୍ଧମନା । ଶ୍ରୀ ଶ୍ରୀ ଠାକୁରଙ୍କ ନିର୍ଦ୍ଦେଶ ହେଲା, "ଆଶ୍ରମରେ ରହିବାକୁ ଚାହିଁଲେ ଆଶ୍ରମିକ ସମସ୍ତ ନୀତି ଓ ଆଦର୍ଶ ରକ୍ଷା କରି ଚଳିବାକୁ ହେବ । ଆଶ୍ରମ ବାହାରେ ରହିଲେ ନିୟମ ପାଳନ ତୁମର ଇଚ୍ଛାଧୀନ । ସେଠାରେ କୌଣସି ବାଧ୍ୟବାଧକତା ନାହିଁ ।"

ଏହାପରେ ମୋର ସମସ୍ତ ସଂଶୟ ନିରସନପୂର୍ବକ ଦୟାଳୁ ଗୁରୁଦେବ ମୋପରି ଜଣେ ନଗଣ୍ୟ ସେବକ ପାଇଁ ଚିରନ୍ତନ ସଦ୍‌ଗତିର ପଥ ଉନ୍ମୁକ୍ତ କରିଦେଇ ଥିଲେ । ତନ୍ତ୍ରୋକ୍ତ ଶାକ୍ତାଭିଷେକ ଅନୁଷ୍ଠାନପୂର୍ବକ ବ୍ରହ୍ମଚର୍ଯ୍ୟ ଦୀକ୍ଷା ପ୍ରଦାନ କରି ସେ ମୋ ଜୀବନର ସାର୍ଥକତା ସମ୍ପାଦନ କଲେ । ଜନ୍ମାନ୍ତରୀଣ ପୁଣ୍ୟଫଳ ଓ ସତ୍‌ସଂସ୍କାର ଦ୍ୱାରା ପରିଚାଳିତ ହୋଇ ତାଙ୍କ ଚରଣାଶ୍ରିତ ହେବାରୁ ମୁଁ ଧନ୍ୟ ହେଲି । ଦୀକ୍ଷା ଶେଷରେ ଶ୍ରୀ ଶ୍ରୀ ଠାକୁର କହିଲେ,

"ମୋ ସଙ୍ଗେ ପୁଣି ଥରେ ସାକ୍ଷାତ କରିବ, ବିଶେଷ ପ୍ରୟୋଜନ ଅଛି ।" ମୁଁ ଜଣାଇଲି, "ଠାକୁର, ମୁଁ ଆପଣଙ୍କ ସଙ୍ଗେ ସାକ୍ଷାତ କରିବାପାଇଁ ଅକ୍ଷମ । ଆପଣ ସ୍ୱେଚ୍ଛାରେ ଯଥା କାଳରେ ମୋତେ ଦର୍ଶନ ଦେଇପାରିବେ ।" ଏ କଥା ଶୁଣି ସେ ହସିଉଠିଲେ ଓ କହିଲେ, "ଥରେ ଚେଷ୍ଟା କରି ଦେଖିବ ।" ମୁଁ ପୁଣି ନିବେଦନ କଲି, "ମୋର ଭଲମନ୍ଦ ଏକ ମାତ୍ର ଆପଣହିଁ ଜାଣନ୍ତି । ଆପଣଙ୍କ ଛଡ଼ା ମୋ ନିଜର ହୋଇ ତ ଆଉ କେହି ନାହିଁ । ଆପଣଙ୍କ ପାଖରେ ମୁଁ ନିଜକୁ ସମର୍ପଣ କଲି । ଆପଣ ଯାହା ଚାହିଁବେ ତାହାହିଁ ହେବ ।" ସେହି କେତୋଟି ମୁହୂର୍ତ୍ତ ସାଙ୍କେତିକ ଭାବରେ ଯେତେ କଥା ସେ କହିଲେ, ଯେଉଁ ଦିବ୍ୟ ସନ୍ଦେଶ ଦେଲେ ଏବଂ ଯେପରି ଆନ୍ତରିକ ଭାବେ ମୋ ମନକୁ ଆକର୍ଷଣ କଲେ, ସେ ସମସ୍ତ ଭାଷାରେ ବ୍ୟକ୍ତ କରିବା ମୋ ପକ୍ଷରେ ଅସମ୍ଭବ । ଦିବ୍ୟ ଆନନ୍ଦ ପ୍ଲାବନରେ ମୋ ମନ ବିହ୍ୱଳିତ ହେଲା । ତାଙ୍କ ପାଦପଦ୍ମରେ ମୁଁ କୃତଜ୍ଞତାର ପ୍ରଣତି ନିବେଦନ କଲି । ଶେଷରେ ସେ କହିଲେ, "ଶୃଙ୍ଗେରୀ ମଠ ପରମ୍ପରାନୁଯାୟୀ ତୁମେ ଆଜିଠାରୁ ଭୋଳା ଚୈତନ୍ୟ ବ୍ରହ୍ମଚାରୀ ନାମରେ ପରିଚିତ ହେବ । ବର୍ତ୍ତମାନ ଏଠାରୁ ଯାଇ ସାଧୁ ସନ୍ନ୍ୟାସୀଙ୍କୁ ପ୍ରଣାମ କର ଏବଂ ପ୍ରସାଦ ପାଅ ।" ମୁଁ ବାହାରକୁ ଆସି ଉପସ୍ଥିତ ସାଧୁଙ୍କୁ ପ୍ରଣାମ ଜଣାଇଲି ଓ ଆନନ୍ଦ ମନରେ ପ୍ରସାଦ ସେବା କଲି ।

## ଶ୍ରୀ ଶ୍ରୀ ଠାକୁରଙ୍କ ବିଦାୟ ଲୀଳା

ଅପରାହ୍ନରେ ଶ୍ରୀ ଶ୍ରୀ ଠାକୁର ଭକ୍ତ ଶିଷ୍ୟମାନଙ୍କ ସଭାରେ ବିରାଜିତ ହୋଇ ନାନା ପ୍ରକାର ଧର୍ମ ଉପଦେଶ ପ୍ରଦାନ କଲେ । ତାଙ୍କ ଶ୍ରୀମୁଖନିଃସୃତ ତତ୍ତ୍ୱମୟୀ ବାଣୀଦ୍ୱାରା ସମବେତ ଶ୍ରୋତୃବର୍ଗଙ୍କର ଐହିକ, ପାରଲୌକିକ ତଥା ଆଧ୍ୟାତ୍ମିକ—ସକଳ ଜିଜ୍ଞାସା ଚରିତାର୍ଥ ହେଲା । ଗୃହସ୍ଥ ଏବଂ ସନ୍ନ୍ୟାସୀ ସାଧକର ନାନା ଜଟିଳ ସମସ୍ୟା ସମାଧାନ ସମ୍ପର୍କରେ ଶାସ୍ତ୍ରସମ୍ମତ

* ଅଥଚ ଅନୁଭୂତ ରସାଣିତ ତାଙ୍କର ଉପଦେଶାବଳୀ ଲଭ କରି ପ୍ରତ୍ୟେକେ ଅଭିଭୂତ ହେଲେ । ଉପଦେଶ ସଭା ଶେଷରେ ଜୟଗୁରୁ ନାମ କୀର୍ତ୍ତନ ଆରମ୍ଭ ହେଲା । ଭକ୍ତଗଣ ଚୌକୀ ସହ ଶ୍ରୀ ଶ୍ରୀ ଠାକୁରଙ୍କୁ କାନ୍ଧରେ ଧରି ନାଚ ନାଚ ମନ୍ଦିର ଚତୁଃପାର୍ଶ୍ୱ ପ୍ରଦକ୍ଷିଣ କଲେ । ତା ପରେ ଶ୍ରୀ ଶ୍ରୀ ଠାକୁରଙ୍କୁ ପ୍ରଣାମ କରିବା ପାଇଁ ଭିଡ଼ ଜମିଗଲା । ସମସ୍ତେ ପ୍ରଣାମ କରିସାରିବା ପରେ ଶ୍ରୀ ଶ୍ରୀ ଠାକୁର ଘର ଭିତରକୁ ଗଲେ ।

ପରଦିନ ବିଦାୟର ବେଳା । ଶ୍ରୀ ଶ୍ରୀ ଠାକୁର ଆଶ୍ରମରୁ ବିଦାୟ ନେଇ ଯିବେ । ରାତି ଶେଷ ଭାଗରୁ ଯେ ଯାହା କର୍ମରେ ବ୍ୟସ୍ତ ହୋଇ ପଡ଼ିଲେ । ସକାଳ ଆଠଟା ବେଳକୁ ଭୋଗ ନିବେଦନ କରାଗଲା । ତା'ପରେ ବିଦାୟକାଳୀନ ପ୍ରଣାମ ଆରମ୍ଭ ହେଲା । ସମସ୍ତଙ୍କ ସଙ୍ଗେ ମୁଁ ମଧ୍ୟ ତାଙ୍କ ଚରଣରେ ପ୍ରଣାମ ହେଲି । ସେ ମୋତେ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ଓ ଅଳ୍ପ ହସିଲେ ! ତାଙ୍କର ସ୍ମିତ ହାସ୍ୟ ମୋର ଅନ୍ତରରେ ପ୍ରବେଶ କଲା ଓ ଆଜୀବନ ସକଳ ପ୍ରେରଣାର ଉତ୍ସ ରୂପେ ଜାଗ୍ରତ ହୋଇ ରହିଲା ।

ତା ପରେ ମେଳା ଭାଙ୍ଗିବାର ଅବସର ଅତ୍ୟନ୍ତ କରୁଣାଦ୍ରକର, ଯେପରି ନବବିବାହିତା କନ୍ୟାଟିଏ ପ୍ରଥମ ଥର ପାଇଁ ଶ୍ୱଶୁର ଘରକୁ ଯାଉଛି । ଗତ କେତେଦିନର ଉଚ୍ଛ୍ୱାସିତ ଆନନ୍ଦକୁ ମୁହୂର୍ତ୍ତକ ମଧ୍ୟରେ କିଏ ଯେପରି ଛଡ଼ାଇ ନେବ ! ଶ୍ରୀ ଶ୍ରୀ ଠାକୁରଙ୍କ ବିଦାୟକାଳୀନ ଦୃଶ୍ୟ ବାସ୍ତବିକ ହୃଦୟସ୍ପର୍ଶୀ ହୋଇ ଥିଲା । ଶ୍ରୀ ଶ୍ରୀ ଠାକୁର ଯାଇ ପାଲିଙ୍କିରେ ବସିଲେ । ତାଙ୍କ ପାଲିଙ୍କି କାନ୍ଧେଇ ନେବା 'ପାଇଁ ଭିଡ଼ ଜମିଗଲା । ଶିଷ୍ୟ ଭକ୍ତଗଣ ଜୟଗୁରୁ କୀର୍ତ୍ତନ କରି ଆଗେ ଆଗେ ଚାଲିଲେ । ତାଙ୍କ ପଛରେ କେତେକ

---

* ଆଧିକାରିକ ପୁରୁଷ ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ପରମହଂସ ପ୍ରଣୀତ ଯୋଗୀଗୁରୁ, ଜ୍ଞାନୀଗୁରୁ, ତାନ୍ତ୍ରିକଗୁରୁ, ପ୍ରେମିକଗୁରୁ, ବେଦାନ୍ତ ବିବେକ ଏବଂ ବ୍ରହ୍ମଚର୍ଯ୍ୟ ସାଧନ ଆଦି ଗ୍ରନ୍ଥରେ ସନାତନ ଧର୍ମାନ୍ତର୍ଗତ ବହୁବିଧ ସାଧନ ପ୍ରଣାଳୀ ଓ ରହସ୍ୟ ବିବୃତ ହୋଇଅଛି ।

ଭକ୍ତ ଶ୍ରୀ ଶ୍ରୀ ଠାକୁରଙ୍କ ପାଲିଙ୍କିରେ କାନ୍ଧେଇ ଚାଲିଥାନ୍ତି । ସେ ଏକ ବିଚିତ୍ର ଦୃଶ୍ୟ ! ଗଡ଼ବେତା ଷ୍ଟେସନ ସେ ଦିନ ଲୋକାରଣ୍ୟ ହୋଇ ଉଠିଥାଏ । ଶ୍ରୀ ଶ୍ରୀ ଠାକୁରଙ୍କୁ ପ୍ରଥମ ଶ୍ରେଣୀ ଡ଼ବାରେ ବସାଇ ଦିଆଗଲା । ଦୂରାଗତ ଭକ୍ତ ଶିଷ୍ୟଗଣ ବିଦାୟ ନେଇ ଯିବା ପରେ ଅନ୍ତେବାସୀ ସାଧୁ ଓ ବ୍ରହ୍ମଚାରୀ ଆଶ୍ରମକୁ ଫେରି ଆସିଲେ । ମେଳା ଶେଷରେ ଆଶ୍ରମ ପରିବେଶ ପୂର୍ବଭଳି ନିର୍ଜନ ହୋଇଗଲା । ଚାରିଆଡେ ସବୁ ଯେପରି ବିଷାଦପୂର୍ଣ୍ଣ । ଦିନେ ଦୁଇଦିନ ମଧ୍ୟରେ ମେଳା ପାଇଁ ବାହାରୁ ଆସିଥିବା ଜିନିଷପତ୍ର ଫେରାଇ ଦିଆଗଲା ଓ ଆଶ୍ରମର ଦୈନନ୍ଦିନ କାର୍ଯ୍ୟକ୍ରମ ପୁଣି ପୂର୍ବପରି ନିୟମିତ ଚାଲିବାକୁ ଲାଗିଲା ।

## ଗୁରୁ ଶକ୍ତିର ଅଲୌକିକ କ୍ରିୟା

ଦୁଇ ଚାରିଦିନ ପରେ ହଠାତ୍ ଲକ୍ଷ୍ୟ କଲି ଯେ, ଗୁରୁପ୍ରଦତ୍ତ ମନ୍ତ୍ର ଆଉ ମନେ ପଡ଼ୁ ନାହିଁ । ଦୀକ୍ଷା ପରେ ଆଶ୍ରମିକ କର୍ମ ଓ ଠାକୁର ସେବାରେ ବ୍ୟସ୍ତ ରହି ନିୟମିତ ଜପ ଧ୍ୟାନ କରିବାର ସୁଯୋଗ ମୋର ହୋଇ ନଥିଲା । ମନ୍ତ୍ର ଜପ କରିବାରେ ବିଶେଷ ରୁଚି କିମ୍ବା ମନୋଯୋଗ ଯେ ରହିଥିଲା ସେପରି ବି ନୁହେଁ । ବିଶେଷତଃ, ମନ୍ତ୍ର ମନେ ରଖିବା ସମ୍ପର୍କରେ ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍ଗେ ହୋଇଥିବା ଚୁକ୍ତି—'ଚେଷ୍ଟା କର ତୁମକୁ ମନ୍ତ୍ର ମନେ ରଖିବାକୁ ହେବନାହିଁ, ମୁଁ ସମସ୍ତ ମନେ ରଖାଇ ଦେବି'— ଯୋଗୁଁ ମୁଁ ବେପରୁଆ ହୋଇଯାଇଥିଲି । ସମସ୍ତେ ଦୀକ୍ଷା ଗ୍ରହଣ କରୁଛନ୍ତି ତେଣୁ ମୁଁ ମଧ୍ୟ ଗ୍ରହଣ କରିଥାଏ ଏବଂ ଭାବୁଥାଏ ଯେ, ଅନ୍ୟମାନେ ଯେପରି ସାଧନ ଭଜନ କରି ବିଶେଷ ପ୍ରତିପତ୍ତି ଅର୍ଜନ କରିଛନ୍ତି, ମୋର ସେଭଳି ନ ହେଲା ନାହିଁ, ଯେଉଁ ଉଦ୍ଦେଶ୍ୟରେ ମୁଁ ସଂସାର ତ୍ୟାଗ କରି ସାଧୁସଙ୍ଗ ଓ ସାଧୁ ହେବାର ବ୍ରତ ଗ୍ରହଣ କଲି, ସେହି ଲକ୍ଷ୍ୟ ସାଧିତ ହେବା ଉଚିତ । ଅବଶିଷ୍ଟ ଜୀବନ ଶାନ୍ତିମୟ ହେବା ଆବଶ୍ୟକ । ଦୀକ୍ଷା ନେବାର ମାତ୍ର ଚାରି ଦିନ ମଧ୍ୟରେ ଯଦି ମନ୍ତ୍ରଟି ମନରୁ ଚାଲିଗଲା, ଆଉ ଅନ୍ୟାନ୍ୟ ଉଚ୍ଚତର ଲକ୍ଷ୍ୟ ଲାଭ ହେବ କିପରି ? ମନ୍ତ୍ର ମନେ ପକାଇବାକୁ ଅନେକ ଚେଷ୍ଟା କଲି,

କିନ୍ତୁ ସମସ୍ତ ଚେଷ୍ଟା ବିଫଳ ହେଲା । ସୁତରାଂ ଖୁବ୍ ଚିନ୍ତିତ ହୋଇ ପଡ଼ିଲି ।

ଠିକ୍ ଏହିକିବେଳେ କୌଣସି କାର୍ଯ୍ୟ ଉପଲକ୍ଷରେ ମୋତେ ଆଶ୍ରମ ବାହାରକୁ ଯିବାକୁ ହେଲା । ରାସ୍ତାରେ ଜଙ୍ଗଲ ପଡ଼େ । ଜଙ୍ଗଲ ମଧ୍ୟରେ ଯାଉ ଯାଉ ଯନ୍ତ୍ରଚାଳିତ ଭଳି ଗୋଟିଏ ଗଛମୂଳେ ବସିପଡ଼ିଲି ଓ ମନ୍ତ୍ର ମନେ ପକାଇବାକୁ ଲାଗିଲି । ଆଶ୍ଚର୍ଯ୍ୟର କଥା, କ୍ରମଶଃ ମୋର ବାହ୍ୟଜ୍ଞାନ ଲୋପ ହେବାପରି ଲାଗିଲା । ପ୍ରାୟ ଘଣ୍ଟାକ ପରେ ଚୈତନ୍ୟ ଲାଭ ହେବାରୁ ଜାଣିପାରିଲି ଯେ ମନ୍ତ୍ର ମନେପଡ଼ିଯାଇଛି ଓ ନିଶ୍ୱାସର ତାଳେ ତାଳେ ଜପର କ୍ରିୟା ମଧ୍ୟ ଚାଲିଛି । ଯେଉଁ କାର୍ଯ୍ୟ ଉଦ୍ଦେଶ୍ୟରେ ମୁଁ ବାହାରିଥିଲି ସେ ବାଗରେ ଆଉ ଆଗେଇ ପାରିଲି ନାହିଁ । ସ୍ୱୟଂଚାଳିତ ମନ୍ତ୍ରର କମ୍ପନ ମୋର ଶରୀର ଓ ମନର ଭିତରେ ମୌଳିକ ପରିବର୍ତ୍ତନ ସୃଷ୍ଟି କରିଥାଏ । ପରେ ପରେ ଆଶ୍ରମକୁ ଫେରିଯାଇ ସଦାନନ୍ଦ ମହାରାଜଙ୍କୁ ସମସ୍ତ ବିଷୟ ଜଣାଇଲି । କହିଲି ଯେ, "ମହାରାଜ, ମୋର ଗୁରୁଦତ୍ତ ମନ୍ତ୍ର ବିସ୍ମୃତ ହୋଇଯାଇଥିଲା; ଏବେ କିନ୍ତୁ ମନ୍ତ୍ର ଜପ ଅବିରାମ ଭାବେ ଚାଲିଛି । ଆଉ ଭୁଲିବାର ଉପାୟ ନାହିଁ ।" ଏହା ଶୁଣି ମହାରାଜ କହିଲେ, "ଆରେ ତୁମର ଅବସ୍ଥା ତ ବେଶ୍ ଭଲ ହୋଇଯାଇଛି । ଠାକୁରଙ୍କର ଏତେ ବଡ଼ କୃପା ତୁମ ଉପରକୁ ଆସିଗଲା ଯେ ତୁମର ଭିତରଟା ପୁରାପୁରି ଖୋଲିଯାଇଛି ।" ମୁଁ କହିଲି, "ମହାରାଜ, ମୋର ଏସବୁ ପରିବର୍ତ୍ତନ କିପରି ଘଟୁଛି, ମୁଁ ବୁଝିପାରୁ ନାହିଁ ।" ମହାରାଜ କହିଲେ, "ଦେଖ, କୃପାମୟ ଗୁରୁଦେବ ଅଜ୍ଞାତରେ ତୁମର କଲ୍ୟାଣ ବିଧାନ କରିବା ପାଇଁ ସର୍ବଦା ତତ୍ପର ରହିଛନ୍ତି । ତୁମେ ତାଙ୍କ ଉପରେ ନିର୍ଭର କରି ନିଶ୍ଚିନ୍ତ ହୁଅ ।" ସେହିଦିନଠାରୁ ମୋର ମନ୍ତ୍ର ସମ୍ପର୍କରେ ଖିଆଲ ନ ଥିଲେ ମଧ୍ୟ ମନକୁମନ ମନ୍ତ୍ର ଚାଲୁଥାଏ । ଜୀବନରେ ଆଉ କେବେ ମନ୍ତ୍ର ବିସ୍ମୃତ ହୋଇନାହିଁ ।

---

# ଷଷ୍ଠ ଅଧ୍ୟାୟ

## ଦିଗ୍‌ଭ୍ରାନ୍ତ ?

### ଅଦ୍ଭୁତ ସ୍ୱପ୍ନାନୁଭୂତି

ସନ ୧୩୪୨ ସାଲର (୧୯୩୫ ମସିହା) ଶ୍ରାବଣ ପୂର୍ଣ୍ଣିମା ଉପଲକ୍ଷେ ଆଶ୍ରମରେ ଶ୍ରୀ ଶ୍ରୀ ଠାକୁରଙ୍କ ଜନ୍ମୋତ୍ସବ ପାଳନର ଆୟୋଜନ ଚାଲିଥାଏ । ଅଧିବାସ ରାତିରେ ସ୍ୱପ୍ନାବସ୍ଥାରେ ଶ୍ରୀ ଶ୍ରୀ ଠାକୁର ଆବିର୍ଭୂତ ହେଲେ ଓ କହିଲେ, "ଆରେ ଉଠ, ଉଠ, ଶୋଇରହିଛ କାହିଁକି ?" ତାଙ୍କ କଥା ଶୁଣି ମୁଁ ସଙ୍ଗେ ସଙ୍ଗେ ଉଠି ବସିଲି ଓ ତାଙ୍କୁ ଦର୍ଶନ କରିବା କ୍ଷଣି ସାଷ୍ଟାଙ୍ଗ ପ୍ରଣିପାତ କଲି । ପଚାରିଲି, "ଠାକୁର, ଆପଣ ଏତେବେଳେ ହଠାତ୍ କେଉଁଠୁ କିପରି ଆସି ପହଞ୍ଚିଲେ ?" ସେ କହିଲେ, "ଦେଖ ହେଲା, ତୁମକୁ ମୁଁ ମୋ ସହ ଥରେ ସାକ୍ଷାତ୍ କରିବାକୁ କହିଥିଲି । ତୁମେ ତ ପାରିଲ ନାହିଁ, ତେଣୁ ମୋତେ ବାଧ୍ୟ ହୋଇ ଆସିବାକୁ ହେଲା । କାରଣ, ଏବେ ମୋର ସ୍ଥୂଳ ଲୀଳାର ଅନ୍ତିମ ସମୟ ଆସି ପହଞ୍ଚିଯାଇଛି । ଅଳ୍ପ ଦିନ ପରେ ମୋତେ ଚାଲିବାକୁ ହେବ । ମୋର ଦୁଃଖ ଯେ, ତୁମ ପାଇଁ କିଛି କରିପାରିଲି ନାହିଁ ।" ମୁଁ ଏକଥା ଶୁଣି ବ୍ୟାକୁଳ ଭାବେ ଜଣାଇଲି, "ଠାକୁର, ଆପଣ ଏ ସବୁ କ'ଣ କହୁଛନ୍ତି ? ମୁଁ ଯେ ଆପଣଙ୍କ ପାଖରେ ଆତ୍ମସମର୍ପଣ କରିଛି । ଆପଣଙ୍କ ଛଡ଼ା ଆଉ କାହାରିକୁ ମୁଁ ଜାଣେନା । ମୋତେ ଛାଡ଼ିଦେଇ ଆପଣ ଯିବେ କୁଆଡ଼େ ? ବିଶେଷ କୃପାପରବଶ ହୋଇ ଆପଣ ମୋତେ ଶ୍ରୀଚରଣରେ ସ୍ଥାନ ଦେଇଛନ୍ତି । ଆପଣଙ୍କର ଶରୀର ତ୍ୟା

ବଳରେ ମୋ ଭିତରେ ମନ୍ତ୍ରଚୈତନ୍ୟ ସମ୍ପାଦିତ ହୋଇଛି । ବ୍ରହ୍ମଜ୍ଞାନ କର୍ମୀ ଯୋଗ ସମାଧି ତ ଦୂରର କଥା, ନିଜକୁ, ପରକୁ ଓ ସଂସାରକୁ ଚିହ୍ନିବା ପାଇଁ କୌଣସି ବିଧିବଦ୍ଧ ସାଧନା ଏବେ ମଧ୍ୟ ମୋର ଆରମ୍ଭ ହୋଇନାହିଁ । ଗୁରୁଙ୍କର ସ୍ଥୂଳ ସହାୟତା ବ୍ୟତୀତ ଏହା କ'ଣ ସମ୍ଭବ ? ମୋ ମନରେ ଅନାବିଳ ଶାନ୍ତି ପ୍ରତିଷ୍ଠିତ ହେବା ଆଗରୁ ମୁଁ ଆପଣଙ୍କୁ ଛାଡ଼ିଦେଇ ନପାରେ ।" ମୋର ଏପରି ଅନୁନୟ ଶୁଣି ଶ୍ରୀ ଶ୍ରୀ ଠାକୁର କହିଲେ, "ହେଲା, ମୋର ଉପଦେଶ ଯେ ଏଣିକି ତୁମେ ତୁମ ଘରକୁ ଯାଅ । ସେଠାରେ ତୁମ ମାଈଁ (ଗଦାଧର ମାମୁଁଙ୍କ ସ୍ତ୍ରୀ) ଅଛନ୍ତି । ତାଙ୍କ ସାହାଯ୍ୟରେ ତୁମର ସିଦ୍ଧିଲାଭ ହେବ । ମୁଁ କହିଲି, "ଠାକୁର, ମୁଁ ଘରକୁ ଯିବାକୁ ଚାହେଁନା । ମୋତେ କ'ଣ ଆପଣ ସଂସାର ବନ୍ଧନରେ ଆବଦ୍ଧ କରିବାକୁ ଚାହାନ୍ତି ? ମୋର ବଂଶରେ କେହି ଭଗବାନଙ୍କ ନାମ ନେଇନାହାନ୍ତି । ଆପାତତଃ ଏକ ଦସ୍ୟୁ ବଂଶରେ ମୋର ଜନ୍ମ । ତେଣୁ ମୁଁ ଆପଣଙ୍କୁ ଛାଡ଼ି କୌଣସି ଆଡ଼େ ଯିବାକୁ ପ୍ରସ୍ତୁତ ନୁହେଁ । ଆପଣ ଯାହା କରିବା କଥା କରନ୍ତୁ, ନ ପାରିଲେ ନ କରନ୍ତୁ ।" ଶ୍ରୀ ଶ୍ରୀ ଠାକୁର କହିଲେ, "ତେବେ ମୋ ସାଙ୍ଗରେ ଆସ ।" ଏହା କହି ସେ ମୋ ହାତ ଧରି ଚାଲିବାକୁ ଲାଗିଲେ ଓ ମୋତେ ମାଈଁଙ୍କ ପାଖକୁ ନେଇଗଲେ । ମାଈଁଙ୍କୁ କହିଲେ, "ମା, ତୁ ଏହି ପିଲାଟିର ଚୈତନ୍ୟ ସମ୍ପାଦନ କରି ଦେ, ଅନେକ ଉପକାର ହେବ !" ଏହା ଶୁଣି ମାଈଁ କହିଲେ, "କାହିଁକି, ତୁମେ ଅନ୍ୟ କେଉଁଠିକୁ ନେଇ ତାର ଜ୍ଞାନ ସମ୍ପାଦନ କରୁନା । ଏ ପିଲା ସାଙ୍ଗରେ ମୋର ସମ୍ପର୍କ କ'ଣ ?" ଶ୍ରୀ ଶ୍ରୀ ଠାକୁର କହିଲେ, "ଦେଖ, ଏଇଟା ତ ତୁମର କାମ, ମୋର ନୁହେଁ । ଏହା ଭିତରେ ଶକ୍ତି ସଞ୍ଚାର କରିନଦେଲେ ଚଳିବ କିପରି ?" ଏହା ଶୁଣି ମାଈଁ ମୋର ମସ୍ତକରେ ନା କେଉଁଠି ଥରେ ତାଙ୍କ ହାତ ବୁଲାଇଦେଲେ । ଏହାଦ୍ୱାରା ସେ ମୋ ଭିତରେ ଏକ ବିଶେଷ ଶକ୍ତି ପ୍ରବେଶ କରାଇଦେଲାଭଳି ମନେ ହେଲା । ସଙ୍ଗେ ସଙ୍ଗେ ଏକ ଅଭିନବ ଭାବନାରେ ମୋ ମନ ପରିପୂର୍ଣ୍ଣ ହେଲା, ମୁଁ ଆତ୍ମହରା ହୋଇଗଲି । ତାପରେ ଶ୍ରୀ ଶ୍ରୀ ଠାକୁର ମୋତେ କହିଲେ, "ଏଇଥର ଚାଲିଯିବା, ତୁମର କାମ ଶେଷ ହେଲା ।" ଏହା କହି ଆଉ ଭଲ ମୋ

ହାତ ଧରି ଆଶ୍ରମକୁ ଫେରିଆସିଲେ । ପରେ ପରେ ମୋର ନିଦ୍ରା ଭଙ୍ଗ ହେଲା । କିନ୍ତୁ ମନରେ ସ୍ୱପ୍ନଘଟିତ ଆନନ୍ଦର ଆବେଗ ତଥାପି ରହିଥାଏ । ସଦାନନ୍ଦ ମହାରାଜଙ୍କୁ ଏହି ସ୍ୱପ୍ନଘଟିତ ବୃତ୍ତାନ୍ତ ଜଣାଇଲି । ମହାରାଜ କହିଲେ ଯେ, "ଗୁରୁ ସ୍ୱପ୍ନ ସତ୍ୟ, ଫଳେ ନା ଫଳେ ଫଳିବ । କିନ୍ତୁ ସ୍ୱପ୍ନ ପଛରେ ଦଉଡ଼ି ବୁଲିବା ଠିକ୍ ନୁହେଁ ।" ତାଙ୍କର ଏହି ଉପଦେଶକ୍ରମେ ସ୍ୱପ୍ନ ସମ୍ପର୍କୀୟ ଚିନ୍ତାକୁ ଆଉ ମନରେ ସ୍ଥାନ ଦେଲି ନାହିଁ ।

## ଯୌବନର ହୁଙ୍କାର

ଏତେବେଳକୁ ମୋର ବୟସ ତିରିଶି ବର୍ଷ ହୋଇଥାଏ । ଶ୍ରୀ ଶ୍ରୀ ଠାକୁର ଓ ମାଙ୍କ ସଙ୍ଗେ ସ୍ୱପ୍ନରେ ସାକ୍ଷାତ୍ ହେବା ପରେ ପରେ ଅବିରାମ ଜପ କରିବା ଫଳରେ ହେଉ ବା ଶାରୀରିକ ଓ ମାନସିକ ଅବସ୍ଥାନ୍ତର ଯୋଗୁଁ ହେଉ, ମୋର ସ୍ୱପ୍ନଦୋଷ ଯୋଗେ ଅତିମାତ୍ରାରେ ଶୁକ୍ରକ୍ଷୟ ହେବାକୁ ଲାଗିଲା । ଇତିପୂର୍ବେ ମୋର ଏପରି କାମବିକାର ଜାତ ହୋଇନଥିଲା । ଏଣିକି ମୋର ଆତ୍ମୀୟଙ୍କୁ ମଧ୍ୟ ସ୍ୱପ୍ନରେ ଦେଖିବାକୁ ଲାଗିଲି । ସଦାନନ୍ଦ ମହାରାଜଙ୍କୁ ମୋର ଏହି ଅବସ୍ଥା କଥା ଜଣାଇଲି । ସେ ମୋତେ ନାନା ପ୍ରକାର ଆସନ, ମୁଦ୍ରା ଓ ପ୍ରାଣାୟାମ ଶିକ୍ଷା ଦେବାକୁ ଲାଗିଲେ । କିନ୍ତୁ କୌଣସିମତେ ସ୍ୱପ୍ନଜନିତ ଶୁକ୍ରକ୍ଷୟ ନିବାରଣ କରାଯାଇପାରିଲା ନାହିଁ । ମହାରାଜଙ୍କ ଉପଦେଶ ଅନୁଯାୟୀ ଖାଦ୍ୟ ପାନର ନିୟମ ମଧ୍ୟ ଯଥାଯଥ ପାଳନ କଲି । କୌଣସି ଫଳ ହେଲା ନାହିଁ । ଦିନକୁ ଦିନ ଏହି ବ୍ୟାଧି ବୃଦ୍ଧିପ୍ରାପ୍ତ ହେଲା । ମହାରାଜ ମୋତେ ସ୍ନେହ କରୁଥାଆନ୍ତି ଓ ତାଙ୍କର ସହାନୁଭୂତି ଯୋଗୁଁ ମୋ ମନର ଉତ୍ସାହ ଅକ୍ଷୁଣ୍ଣ ଥାଏ । ସେଥରକ କୌଣସି କାର୍ଯ୍ୟ ଉପଲକ୍ଷେ ମହାରାଜ ବାଙ୍କୁଡ଼ା ଯାତ୍ରା କଲେ ଓ ମୋତେ ସାଙ୍ଗରେ ନେଇଗଲେ । କାଳେ ଏଣେତେଣେ ବୁଲିଲେ ମନ ଅଧିକ ବିଚଳିତ ହେବ, ତେଣୁ ମୁଁ ତାଙ୍କ ପାଖେ ପାଖେ ରହୁଥାଏ । କିନ୍ତୁ ସ୍ୱପ୍ନଦୋଷରୁ ରକ୍ଷା ମିଳୁନଥାଏ । ଥରେ ଦିନ ବେଳା ୪ଟାରେ ମହାରାଜଙ୍କ ପାଖରେ ଥିଲି, ଧାତୁ ସ୍ଖଳିତ ହେଲା । ଲଜ୍ଜାରେ ଓ କ୍ଷୋଭରେ ମୁଁ

ମହାରାଜାଙ୍କ ପାଦକୁ ଧରି କାନ୍ଦିବାକୁ ଲାଗିଲି ଓ କହିଲି, "ମହାରାଜ, ଯେଉଁ ଓଜଃ ଶକ୍ତି ଧାରଣ କରି ସାଧନ ଭଜନଦ୍ୱାରା ସତ୍ୟ ଲାଭ ପାଇଁ ସାଧ୍ୟ ବରଣ କଲି, ସେହି ପଦାର୍ଥ ଯଦି କମାଗତ ଭାବେ ନଷ୍ଟ ହେଲା, ତେବେ ମୋର ଆଉ ବାକି ରହିବ କ'ଣ ?" ଏହା ଶୁଣି ମହାରାଜ ଗମ୍ଭୀର ଭାବେ ଚିନ୍ତା କରିବାକୁ ଲାଗିଲେ ଏବଂ କହିଲେ, "ଭୋଳା, ତୁମ ଉପରେ ମାଙ୍କର ଅଶେଷ କୃପା ରହିଛି । ଏହିପରି ଭାଗ୍ୟ ଖୁବ୍ କମ ଲୋକଙ୍କର ହୁଏ ।" ମୁଁ କହିଲି, "ମହାରାଜ, ମୁଁ ତ ସ୍ୱପ୍ନ ଦୋଷରେ ମରିବାକୁ ବସିଲିଣି ।" ମାଙ୍କର କୃପା ଆଉ କେଉଁଠି ପାଇବି ?" ମହାରାଜ କହିଲେ, "ଦେଖ, ତୁମ ଉପରେ ତାଙ୍କର କୃପା ପରିପୂର୍ଣ୍ଣ ମାତ୍ରାରେ ରହିଛି । କାରଣ, ସେ ଯେପରି ଭାବେ ତୁମକୁ ଆକର୍ଷଣ କରୁଛନ୍ତି, ଶେଷରେ ଅବଶ୍ୟ ଦର୍ଶନ ଦେବେ ।" ମୁଁ କହିଲି, "ମହାରାଜ, ମୁଁ ତ ଜାଣେନା, ଆପଣଙ୍କ ଆଶୀର୍ବାଦ ବଳରେ ତାହା ସମ୍ଭବ ହୋଇପାରେ ।"

## ଶ୍ରୀ ଶ୍ରୀ ଠାକୁରଙ୍କ ମହାସମାଧି

ବାଙ୍କୁଡ଼ାଠାରୁ ମହାରାଜ ଓ ମୁଁ ପୁରୁଲିଆ ଗଲୁ । ସେଠାରେ କୃଷ୍ଣ ଗୋପାଳ ଭାଇଙ୍କ ଘରେ କିଛିଦିନ କଟାଇ ଚକ୍ରଧରପୁର ଯାତ୍ରା କଲୁ । ସେଠା ସନ୍ତୋଷ ଭାଇଙ୍କ ଘରେ କିଛିଦିନ ରହିବା ପରେ ଟାଟା ହୋଇ ମାନୁଷ ମୁଣ୍ଡିଆ ଶରତ ଭୋଳାଙ୍କ ଘରକୁ ଗଲୁ । ସେଠାରେ ରହିବାବେଳେ ମୁଁ ଅନୁନୟ କରି କହିଲି, "ମହାରାଜ, ଦୟା କରି ଥରେ ଶ୍ରୀ ଶ୍ରୀ ଠାକୁରଙ୍କ ସଙ୍ଗେ ଯାଇ ସାକ୍ଷାତ୍ କରିବାକୁ ଅନୁମତି ଦିଅନ୍ତୁ । ଦୀକ୍ଷାବେଳେ ସେ ମୋତେ ଏହି ନିର୍ଦ୍ଦେଶ ଦେଇଥିଲେ । ଥରେ ଯାଇ ତାଙ୍କ ଚରଣ ବନ୍ଦନା କରିବାକୁ ସୁଯୋଗ ପାଇଲେ ମୁଁ ନିଜକୁ ଭାଗ୍ୟବାନ ମନେକରେ ।" ମହାରାଜ କହିଲେ, "ଭୋଳା, ବର୍ତ୍ତମାନ ଆଶ୍ରମରେ ଅନେକ କାମ ପଡ଼ି ରହିଛି । ତୁମେ ସେଠାକୁ ଯାଅ । ମୁଁ ତମଲୁକ ହୋଇ କଲିକତା ଯିବି । ଶ୍ରୀ ଶ୍ରୀ ଠାକୁରଙ୍କୁ ତୁମ ଅଭିଳାଷ କଥା ଲେଖି ଜଣାଇବି । ତାଙ୍କ ଆଦେଶ ପାଇଲେ ତୁମକୁ ତାଙ୍କ ପାଖକୁ ପଠାଇବା ବ୍ୟବସ୍ଥା କରିବି ।" ତାଙ୍କର

ଏପରି ମନ୍ତବ୍ୟ ଶୁଣି ମୁଁ ଅଗତ୍ୟା ଆଶ୍ରମକୁ ଫେରିଲି । ପରଦିନ ଟେଲିଗ୍ରାମ ଯୋଗେ ଖବର ପହଞ୍ଚିଲା ଯେ, ୧୩୪୨ ସାଲ (୧୯୩୬ ମସିହା) ମାର୍ଗଶୀର ମାସ ୧୩ ଦିନ ଅପରାହ୍ଣ ୪ଟା ବେଳେ କଲିକତା ବାଗ୍‌ବଜାର ଷ୍ଟ୍ରିଟ୍‌ଠାରେ ପରମାରାଧ୍ୟ ସଦ୍‌ଗୁରୁ ଦେବ ମହାସମାଧି ପ୍ରାପ୍ତ ହୋଇଛନ୍ତି । ଅଳ୍ପଦିନ ଆଗରୁ ଦେଖିଥିବା ସ୍ୱପ୍ନ ବ୍ୟାପାର ଆଂଶିକ ଭାବେ ସତ୍ୟ ହୋଇଥିବା ଉପଲବ୍ଧି କରି ମୁଁ ବିସ୍ମିତ ହେଲି । ତେଣୁ ମୋର ମନର ବିଶ୍ୱାସ ଦୃଢ଼ ହେବାକୁ ଲାଗିଲା ଯେ, ଶ୍ରୀ ଶ୍ରୀ ଠାକୁର ସିନା ସ୍ଥୂଳ ଦେହ ତ୍ୟାଗ କଲେ, କିନ୍ତୁ ସେ ତ ସବୁବେଳେ ରହିଛନ୍ତି ! ସେ ଆଉ ଗଲେ କୁଆଡ଼େ ? ସୁତରାଂ ଏହି ସମ୍ବାଦ ପାଇ ମୋର କୌଣସି ଶୋକ ବା ବିକାର ଜାଗି ପାରିଲାନି—ମୁଖରୁ ବାକ୍ୟସ୍ଫୂର୍ତ୍ତି ହେଲା ନାହିଁ—ଶରୀର ଓ ମନ ଯେପରି ଏକାବେଳକେ ନୀରବ ଓ ନିଷ୍ପନ୍ଦ ! ବରଂ ମନରେ ଏକ ପ୍ରକାର ପ୍ରଶାନ୍ତି ସ୍ଥାନ ପାଇଲା । ଆଶ୍ରମସ୍ଥ ଅନ୍ୟାନ୍ୟ ବ୍ରହ୍ମଚାରୀ ନାନା ଭାବରେ ବିଳାପ କରୁଥିବା ଦେଖିଲି—କେହି କାନ୍ଦୁଛନ୍ତି ତ କେହି ଜଡ଼ୀଭୂତ ହୋଇ ରହିଛନ୍ତି । କେହି କେହି ପୁଣି ଭବିଷ୍ୟତ୍ ଚିନ୍ତା କରିବାରେ ଲାଗିଛନ୍ତି । ଶ୍ରୀ ଶ୍ରୀ ଠାକୁରଙ୍କର ଦେହରକ୍ଷା ସମ୍ବାଦ ଯାହାକୁ ଯେପରି ସ୍ପର୍ଶ କଲା ସେ ତଦନୁରୂପ ପ୍ରତିକ୍ରିୟା ଦେଖାଇଲେ । ମୁଁ କିନ୍ତୁ ନୀରବ ଓ ନିଷ୍କ୍ରିୟ ହୋଇ ରହିଲି, ଓ ଭାବିବାକୁ ଲାଗିଲି, ମୋର ଭବିଷ୍ୟତର ଗତି ଓ ସ୍ଥିତିର ଦିଗ ନିର୍ଦ୍ଦେଶକ, ଯାହାଙ୍କ ଦେବଦୁର୍ଲ୍ଲଭ ସ୍ଥୂଳ ରୂପ ପରମା ଶାନ୍ତିବିଧାୟକ ତାହା ଆଉ କେଉଁଠି ଦେଖିବାକୁ ମିଳିବ ? ସେ ଇହଧାମର ଲୀଳା ଇତି କରିବା ଆଗରୁ ତାଙ୍କ କମଳ କୋମଳ ଚରଣ ତଳେ ଦ୍ୱିତୀୟବାର ଅବନତ ହୋଇ ଆଧ୍ୟାତ୍ମ୍ୟ ଅଭାବ ଅଭିଯୋଗ ନିବେଦନ କରିବା ସୁଯୋଗ ଆଉ ହେଲା ନାହିଁ । ସାରା ଜୀବନ ପାଇଁ ସ୍ଥୂଳ ଗୁରୁ ସାନ୍ନିଧ୍ୟର ସୌଭାଗ୍ୟ ହରାଇବାକୁ ପଡ଼ିଲା ଭାବି ହତାଶ ପ୍ରାପ୍ତ ହେଲି ।

## ଚିଦାନନ୍ଦ ମହାରାଜଙ୍କ ମହନ୍ତପଦ ଲାଭ

ମହାପ୍ରସ୍ଥାଣ ପରେ ଶ୍ରୀ ଶ୍ରୀ ଠାକୁରଙ୍କର ପବିତ୍ର ଦେହ ହାଲିସହର ଦକ୍ଷିଣ ବଙ୍ଗଳା ସାରସ୍ୱତ ଆଶ୍ରମରେ ସମାଧିସ୍ଥ କରାଗଲା । ଟ୍ରଷ୍ଟି ସଭାର

ସିଦ୍ଧାନ୍ତ ଅନୁଯାୟୀ ଚିଦାନନ୍ଦ ମହାରାଜ ଅସାମ ବଙ୍ଗୀୟ ସାରସ୍ୱତ ମଠର ମହନ୍ତ ଭାବେ ବୃତ ହେଲେ । ମହନ୍ତ ପଦରେ ଅଧିଷ୍ଠିତ ହେବାପାଇଁ ଆସାମ ଯାତ୍ରା କରିବା ପୂର୍ବରୁ ମହାରାଜ ଖଡ଼କୁସୁମା ଆସିଲେ ଏବଂ ଆମ ସମସ୍ତଙ୍କୁ ଉପଦେଶ ଦେଇ କହିଲେ, ଯେପରି ସମସ୍ତେ ଶ୍ରୀ ଶ୍ରୀ ଠାକୁରଙ୍କର କର୍ମରେ ତତ୍ପର ହୋଇ ଆଶ୍ରମର ସୁପରିଚାଳନାରେ ସହାୟକ ହୁଅନ୍ତି । ଶ୍ରୀମତ୍ ପୂର୍ଣ୍ଣ ଚୈତନ୍ୟ ବ୍ରହ୍ମଚାରୀଙ୍କୁ ଆଶ୍ରମର ଅଧ୍ୟକ୍ଷ ନିଯୁକ୍ତ କଲେ । ଆଶ୍ରମରୁ ବିଦାୟ ହୋଇ ଚାଲିବେଳେ ମୁଁ ତାଙ୍କ ସଙ୍ଗେ ଗଡ଼ବେତା ଷ୍ଟେସନ୍ ଯାଏଁ ଗଲି । ତାଙ୍କୁ ମୋ ମନର ଦୁରବସ୍ଥା ଭଲଭାବରେ ବୁଝାଇ କହିଲି ଏବଂ ମୋତେ ଆସାମ ମଠକୁ ନେଇଯିବାକୁ ଅନୁରୋଧ କଲି । ଏଥି ପ୍ରସ୍ତାବରେ ସେ ଅସମ୍ମତ ହୋଇ ମୋତେ ଆନ୍ତରିକ ଆଶୀର୍ବାଦ ଦେଲେ ଓ କହିଲେ, "ଖୋକା, ତୁମେ ଅଧୀର ହୁଅ ନାହିଁ, ଆଗକୁ ତୁମର ଖୁବ୍ ଭଲ ସମୟ ଆସିଯାଉଛି । ତୁମେ ବେଶ୍ ଭଲଭାବେ ରହିବ ଓ ତୁମର ଅବସ୍ଥା ଖୁବ୍ ଉନ୍ନତ ହେବ ।" ଏପରିଭାବେ ମୁଁ ମହାରାଜାଙ୍କଠାରୁ ବିଦାୟ ନେଇ ଆଶ୍ରମକୁ ଫେରିଆସିଲି ।

କିଛିଦିନ ମଧ୍ୟରେ ମୋ ମନରେ ଅଶାନ୍ତି ଜାଗି ଉଠିଲା । କାମ କାରବାରରେ ଆଉ ଆଗପରି ଉତ୍ସାହ ରହିଲା ନାହିଁ । ଆଶ୍ରମିକ ପରିଚାଳନା ବ୍ୟବସ୍ଥା ସନ୍ତୋଷଜନକ ନ ହେବାରୁ ଅନ୍ୟାନ୍ୟ ସେବକ ବ୍ରହ୍ମଚାରୀମାନେ ମଧ୍ୟ ପ୍ରତିକ୍ରିୟା ଦେଖାଇଲେ । ଅଧ୍ୟକ୍ଷଙ୍କ ସଙ୍ଗେ ବିବାଦ ସୃଷ୍ଟି କରିବା ପାଇଁ ମୋ ଭଳି କେତେଜଣ ସରଳ ପ୍ରକୃତିର ଅନ୍ତେବାସୀଙ୍କୁ ମତାଇଦିଆଗଲା । ଆମମାନଙ୍କ ତରଫରୁ ନାନା ଆପତ୍ତି ଅଭିଯୋଗର କାହାଣୀ ଲେଖାଯାଇ ମହନ୍ତ ମହାରାଜଙ୍କ ପାଖକୁ ପତ୍ର ପଠାଗଲା । ଫଳରେ ବାରବର୍ଷ ଚିଦାନନ୍ଦ ମହାରାଜ ଆଶ୍ରମ ପରିଦର୍ଶନରେ ଆସି ସମସ୍ତଙ୍କୁ ଡକାଇ ସଭା ବସାଇଲେ ଏବଂ ପୂର୍ଣ୍ଣଦାଙ୍କୁ ଆଉ ବର୍ଷେକ ପାଇଁ ଅଧ୍ୟକ୍ଷ ରହିବାକୁ ସୁଯୋଗ ଦେଲେ । ସମସ୍ତଙ୍କୁ ଉପଦେଶ ଦେଇ କହିଲେ, "ସାବଧାନ, ଏଣିକି ଶ୍ରୀ ଶ୍ରୀ ଠାକୁରଙ୍କ କାମ ଯେପରି ଉତ୍ତମରୂପେ ପରିଚାଳିତ ହୁଏ ଏବଂ ଆଶ୍ରମର କୌଣସି କ୍ଷୟ-କ୍ଷତି ନ ଘଟେ, ସେଥିପାଇଁ ଯେପରି ସମସ୍ତେ ଯତ୍ନବାନ୍ ହୁଅନ୍ତି ।" ମହନ୍ତ

ମହାରାଜ ମୋ ସହ ଆଶ୍ରମ ସଂପର୍କୀୟ ନାନା ପ୍ରସଙ୍ଗ ଆଲୋଚନା କଲେ । ମୁଁ ସମସ୍ତ ସତ୍ୟ ଘଟଣା ପ୍ରକାଶ କଲି । ତାପରେ ମହାରାଜ ସେଠାରୁ ବିଦାୟ ହୋଇ ଆସାମ ମଠକୁ ଫେରିଗଲେ ।

## ଦିଗ୍‌ଭ୍ରାନ୍ତ ପଥିକ

ପୁଣି ଦିନକୁ ଦିନ ମୋ ମନର ଅବସ୍ଥା ଶୋଚନୀୟ ହେବାକୁ ଲାଗିଲା । କ'ଣ କଲେ ବା କେଉଁଠାକୁ ଗଲେ ମନ ସମାହିତ ହୋଇ ରହିବ, ସ୍ଥିର କରିପାରୁନଥାଏ । ଅଧିକନ୍ତୁ, ସ୍ୱପ୍ନ ଦୋଷ ତଥାପି ଲାଗି ରହିଥିବାରୁ ମୋର ମନୋବେଦନାର ଅନ୍ତ ନ ଥାଏ । ତଦୁପରି ମଝିରେ ମଝିରେ ମୁଣ୍ଡ ବିନ୍ଧିବା ମଧ୍ୟ ଆରମ୍ଭ ହୋଇଥାଏ । ଅଦୃଶ୍ୟ ଗୁରୁ ଶକ୍ତିର ଅବଶ୍ୟମ୍ଭାବୀ ନିର୍ଦ୍ଦେଶକୁ ପ୍ରତୀକ୍ଷା କରୁ କରୁ ଦିନ ପରେ ଦିନ ଗଡ଼ି ଚାଲିଲା ।

ହଠାତ୍ ଦିନେ ମହନ୍ତ ମହାରାଜଙ୍କଠାରୁ ମୋ ନାମରେ ଖଣ୍ଡିଏ ପତ୍ର ଆସି ପହଞ୍ଚିଲା । ସେଥିରେ ଲେଖାଥିଲା—"ତୁମ ସେଠା ମାନ ବଜାରର ଶ୍ରୀକାନ୍ତ ମାହାତ ନାମରେ ଜଣେ ଲୋକ ଆସାମ ମଠକୁ ଆସିଥିଲା । ସେ ତା'ର ନିଜର ଭୂସମ୍ପତ୍ତି ଆଶ୍ରମ ନାମରେ ରେଜିଷ୍ଟ୍ରି କରି ସାଧୁ ହୋଇ ରହିବାକୁ ଚାହେଁ । ତୁମେ ତା ସାଙ୍ଗରେ ଯାଇ ସମସ୍ତ ବ୍ୟବସ୍ଥା କରିବ । ମୁଁ ଏ କାର୍ଯ୍ୟର ଭାର ତୁମ ଉପରେ ନ୍ୟସ୍ତ କଲି ।" ଶ୍ରୀକାନ୍ତ ମାହାନ୍ତ ପତ୍ର ଖଣ୍ଡିକ ଆଣି ମୋ ସହ ସାକ୍ଷାତ୍ କଲେ । ପୁଣି ଶ୍ରୀମତ୍ ବିମଳ ଚୈତନ୍ୟ ବ୍ରହ୍ମଚାରୀଙ୍କୁ ଝଡ଼ିକୁସୁମା ଆଶ୍ରମର ଅଧ୍ୟକ୍ଷ ଭାବେ ମହନ୍ତ ମହାରାଜ ନିଯୁକ୍ତ କରିଥାଆନ୍ତି । ଉଭୟ ଶ୍ରୀକାନ୍ତ ମାହାତ ଓ ଶ୍ରୀମତ୍ ବିମଳ ବ୍ରହ୍ମଚାରୀ ଝଡ଼ିକୁସମା ଆଶ୍ରମରେ ଏକାଠି ଆସି ପହଞ୍ଚିଲେ । ସେତେବେଳେ ମୋର ମାନସିକ ଅବସ୍ଥା ଯେପରି ମୁଁ ଆଶ୍ରମ ଗୁଡ଼ ବାହାରେ ରହିବା ବା ବୁଲାବୁଲି କରିବାକୁ ଭଲ ପାଉନଥାଏ । ମୁଁ ମହାରାଜଙ୍କ ପାଖକୁ ପତ୍ର ଲେଖି ଜଣାଇ ଦେଲି ଯେ, "ମୁଁ ମାନବଜାର ଯିବା ଅବସ୍ଥାରେ ନାହିଁ । ମୋଦ୍ୱାରା ଉପସ୍ଥିତ କୌଣସି କାମ ହେବା ସମ୍ଭବ ନୁହେଁ ! ଉଭୟ ଶାରୀରିକ ଓ ମାନସିକ ଦୁରବସ୍ଥା ଭିତରେ ମୋର ସମସ୍ତ ଉତ୍ସାହ ଲୋପ ପାଇଛି ।" ମାନବଜାର

ଯିବାରେ ମୋର ଅନିଚ୍ଛାର ଅନ୍ୟ କାରଣ ମଧ୍ୟ ଥିଲା । ସେହି ଅଞ୍ଚଳରେ ମୋର ମାମୁଁଙ୍କ ଘର । ଆତ୍ମୀୟମାନଙ୍କୁ ଦେଖିଲେ ମନରେ ସଂସାର ପ୍ରତି ଆସକ୍ତି ଜାଗିପାରେ, ପୁଣି ସେମାନେ ମୋତେ ପଥଭ୍ରଷ୍ଟ କରିଦେଇପାରନ୍ତି । ମୋ ପତ୍ରର ଉତ୍ତରରେ ମହାରାଜ ଲେଖିଲେ ଯେ, "ତୁମ୍ଭେ ଯଦି ମୋର ଆଦେଶ ପାଳନ ନ କର ତା' ହେଲେ ଆଶ୍ରମରେ ରହିପାରିବ ନାହିଁ । ସୁତରାଂ ଅନତିବିଳମ୍ବେ ଶ୍ରୀକାନ୍ତ ମାହାନ୍ତି ସଙ୍ଗେ ଯାଇ ଜମି ରେଜିଷ୍ଟ୍ରି କରି ଆସିବ ।" ମୁଁ ମହା ସଙ୍କଟରେ ପଡ଼ିଲି । ଏଣେ ପୂର୍ଣ୍ଣିଦା ବିମଳ ବ୍ରହ୍ମଚାରୀଙ୍କୁ ଅଧ୍ୟକ୍ଷ ଦାୟିତ୍ୱ ଦେଇ ଆଶ୍ରମ ଛାଡ଼ି ଚାଲିଗଲେ । ବାଧ୍ୟ ହୋଇ ଶ୍ରୀକାନ୍ତ ମାହାନ୍ତିଙ୍କ ସଙ୍ଗେ ମୁଁ ମଧ୍ୟ ବାହାରିପଡ଼ିଲି । ମନେ ମନେ ଠାକୁରଙ୍କୁ ଜଣାଇଲି, ଠାକୁର, ତୁମର ଇଚ୍ଛା ରହସ୍ୟମୟ । ବର୍ତ୍ତିମାନ ମୋତେ କେଉଁଆଡ଼େ, ନେଉଛ ତାହା ତୁମେଇ ଜାଣ ।

---

# ସପ୍ତମ ଅଧ୍ୟାୟ

## କୃପା ସିନ୍ଧୁ

### ଅପ୍ରତ୍ୟାଶିତ ବିପଦ

ଶ୍ରୀକାନ୍ତ ମହାନ୍ତଙ୍କ ଘର ମାନବଜାର ଇଲାକାର ଗାଙ୍ଗଟାଙ୍ଗ ଗ୍ରାମରେ । ଆମେ ଦୁହେଁ ଝଡ଼ଗ୍ରାମରୁ ସକାଳେ ବାହାରି ସନ୍ଧ୍ୟାବେଳେ ତାଙ୍କ ଗ୍ରାମରେ ପହଞ୍ଚିଲୁ । ପରେ ପରେ ଭୟଙ୍କର ବିପଦର ସମ୍ମୁଖୀନ ହେବାକୁ ହେଲା । ଗ୍ରାମର ଲୋକେ ଆସି ଆମକୁ ଘେରିଗଲେ ଓ କହିଲେ, 'ଦୁହିଁଙ୍କୁ ଧରି ବାନ୍ଧି ପକାଅ !' ଏ କାଣ୍ଡ ଦେଖି ମୁଁ ଅବାକ୍ ହୋଇଗଲି । ଅସହାୟଭାବେ ଠାକୁରଙ୍କୁ ସ୍ମରଣ କଲି ଓ ଜଣାଇଲି, "ଠାକୁର, ତୁମେ ଏକମାତ୍ର ଭରସା, ତୁମେ ରକ୍ଷା ନ କଲେ ଏହି ଦୁଷ୍ଟ ପ୍ରକୃତିର ଲୋକେ ଚାହୁଁ ଚାହୁଁ ପ୍ରାଣ ନେଇଯିବେ ।" ଅନୁସନ୍ଧାନ କରି ଘଟଣାର କାରଣ ଜଣାଗଲା । ସ୍ତ୍ରୀର ମୃତ୍ୟୁ ପରେ ପରେ ନିରୁଦ୍ଦିଷ୍ଟ ହୋଇଯାଇଥିବାରୁ ଶ୍ରୀକାନ୍ତ ନିଜ ସ୍ତ୍ରୀକୁ ହତ୍ୟା କରିଛି ବୋଲି ସମ୍ବାଦ ପ୍ରଚାର ହୋଇଯାଇଥିଲା । ତେଣୁ ଗ୍ରାମବାସୀମାନେ ଉତ୍କ୍ଷିପ୍ତ ହୋଇ ତାକୁ ଶାସ୍ତି ଦେବାକୁ ସୁଯୋଗ ଅପେକ୍ଷାରେ ଥିଲେ । ମୁଁ ସେମାନଙ୍କୁ କହିଲି, 'ତେବେ, ବାବା, ମୁଁ ତ କାହାର କିଛି ଅନିଷ୍ଟ କରିନାହିଁ, ମୋ ଉପରେ ତୁମମାନଙ୍କର ଆକ୍ରମଣର କାରଣ କଣ ?' ସେମାନେ କହିଲେ, 'ତୁମେ ଶ୍ରୀକାନ୍ତ ସାଙ୍ଗରେ ଆସିଛ ଓ ତା ପକ୍ଷନେଇ ତାକୁ ଦଣ୍ଡରୁ ଅବ୍ୟାହତି ଦେବାକୁ ଚେଷ୍ଟା କରିବ—ତେଣୁ ତୁମ ଉଭୟଙ୍କୁ ଆମେ ଶେଷ କରିଦେବାକୁ ଚାହୁଁ ।' ଭାଗ୍ୟକୁ ଶ୍ରୀକାନ୍ତର ଖୁଡ଼ି ମୋର ପରିଚିତା ବୋଲି ମନେପଡ଼ିଲା । ମୁଁ ପୂର୍ବେ ଯେଉଁ ଗ୍ରାମ (ଦେଲାଂ)ରେ ଦୋକାନ କରିଥିଲି, ସେଠାରେ ତାର ବାପ ଘର । ତାକୁ ଡକାଇ ଆଣି ମୋ ପରିଚୟ ଦେଲି ଓ ମୋର ନିର୍ଦ୍ଦୋଷତା ଲୋକଙ୍କୁ ବୁଝାଇ କହିବାକୁ ଅନୁରୋଧ କଲି । ମୁଁ କହିଲି, 'ଏ ଗ୍ରାମର ଲୋକେ

ମୋତେ ଅନ୍ୟାୟରେ ଯେସବୁ କରି ମାରିବାକୁ ଚେଷ୍ଟା କରୁଛନ୍ତି । ଏବେ ତୁମ ଛଡ଼ା ମୋତେ ଆଉ କିଏ ରକ୍ଷା କରିବ ?' ଏହା ଶୁଣି ସେ ସ୍ତ୍ରୀଲୋକଟି ଗ୍ରାମବାସୀଙ୍କ ଉଦ୍ଦେଶ୍ୟରେ କହିବାକୁ ଲାଗିଲେ, 'ସାବଧାନ ! ଏ ସାଧୁ ମହେଶପୁର ଗ୍ରାମ ଜମିଦାରଙ୍କ ଭଣଜା । ଏହାଙ୍କର କୌଣସିପ୍ରକାର ଅନିଷ୍ଟ ହେବା ସେମାନେ ଜାଣିପାରିଲେ ତୁମ ଗାଁ ଗୋଟିକଯାକ ଶେଷ ହୋଇଯିବ । ତେଣୁ ତୁମେମାନେ ଭାବି ଚିନ୍ତି ଅଗ୍ରସର ହୁଅ । ମୋ କଥା ରକ୍ଷାକରି ଏହାଙ୍କୁ ଛାଡ଼ିଦିଅ ।' ସେହି ସ୍ତ୍ରୀ ଲୋକଟିର ଏପରି ସତର୍କବାଣୀ ଶୁଣି ଲୋକେ ନିରସ୍ତ ହେଲେ । ମୁଁ ସେ ରାତିକ ଆଉ ଶୋଇ ପାରିଲି ନାହିଁ । ଶ୍ରୀ ଶ୍ରୀ ଠାକୁରଙ୍କୁ ସ୍ମରଣ କରି ଭୟାତୁର ହୋଇ ବସି ରହିଲି । ବଡ଼ିସକାଳୁ ଗ୍ରାମବାସୀଙ୍କୁ କହିଲି, 'ତୁମେ ତୁମର ଆପଣା ଲୋକଙ୍କ ସଙ୍ଗେ ପ୍ରଥମେ ମୀମାଂସା କରିନିଅ । ତାପରେ ଜମି ରେଜେଷ୍ଟ୍ରି କରାଯିବ । ମୁଁ ବର୍ତ୍ତମାନ ମୋ ମାମୁଁଙ୍କ ଗ୍ରାମ ମହେଶପୁରକୁ ଯାଉଛି । ତୁମ ପାଖରୁ ସମ୍ବାଦ ପାଇଲେ ପୁଣି ଆସିବି ।' ଏହା କହି ମୁଁ ସେଠାରୁ ମହେଶପୁର ଅଭିମୁଖେ ଯାତ୍ରା କଲି ।

ପ୍ରାୟ ୧୫ କି. ମି. ପଥ ଅତିକ୍ରମ କରି ବେଳା ଦଶଟା ମଧ୍ୟରେ ମାମୁଁଙ୍କ ଘରେ ଯାଇ ପହଞ୍ଚିଲି । ଦେଖିଲି ଯେ ଗଦାଧର ମାମୁଁ ଆଉ ଇହ ଜଗତରେ ନାହାନ୍ତି । ପ୍ରାୟ ଦୁଇ ବର୍ଷ ପୂର୍ବରୁ ସେ ମୃତ୍ୟୁବରଣ କରି ସାରିଛନ୍ତି । ମାଇଁ ଉନ୍ମାଦ ରୋଗରେ ମୁଣ୍ଡ ଗରମ ହୋଇଥିଲା ଭଳି ବ୍ୟବହାର କରୁଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଆଜେବାଜେ କଥା ବକିବା ବଦଳେ ସେ ଅନବରତ ଭଗବାନଙ୍କ ନାମସମ୍ବଳିତ ନାନାପ୍ରକାର ଗୀତ ଓ ଭଜନ ଆବୃତ୍ତି କରୁଛନ୍ତି । ପିଲାମାନେ ଛୋଟ ଛୋଟ । ତିନି ପୁଅ ଓ ଦୁଇ ଝିଅ । ବଡ଼ଟି ପୁଅ, ବୟସ ୧୩ ବା ୧୪ ହେବ । ସେ ଘରର ସବୁ କାମ ଚଳାଉଥାଏ । ଏପରିକି ରନ୍ଧାବଢ଼ା ପର୍ଯ୍ୟନ୍ତ କରି ସମସ୍ତଙ୍କର ଖାଇବା ପିଇବାର ଯତ୍ନ ମଧ୍ୟ କରୁଥାଏ । ମାଇଁ କୌଣସି କାମଧନ୍ଦାରେ ମନ ନ ଦେଇ ଦିନସାରା ଚବିଶ ଘଣ୍ଟା ପାଗଳୀଙ୍କ ପରି ଭଜନ ଗାନ କରୁଥାଆନ୍ତି ।

ଏସବୁ ପରିସ୍ଥିତି ଦେଖି ମୋର ମୁଣ୍ଡ ଘୂରିବାକୁ ଲାଗିଲା । ଭାବିଲି, ଠାକୁର ପୁଣି ଏ କେଉଁ ବିଚିତ୍ର ପରିସ୍ଥିତି ଭିତରକୁ ଠେଲିଦେଲେ ? ଗ୍ରାମର ଲୋକେ ନାନା ପ୍ରଶ୍ନ ପଚାରୁଥାନ୍ତି । କେହି ଭୂତ ଲାଗିଛି ବୋଲି କହିଲାଣି ତ କେହି ବ୍ରହ୍ମଦୈତ୍ୟର ଆବେଶ ହୋଇଛି ବୋଲି ମନ୍ତବ୍ୟ କରୁଛନ୍ତି । ମୁଁ କାହାକୁ କଅଣ ଉତ୍ତର ଦେବି ଖୋଜି ପାଉନାହିଁ । ଏଣେ ମୋ ମନରେ ଦୁଶ୍ଚିନ୍ତା—ମୁଁ ବାବାଜୀ ତ ହୋଇସାରିଛି, ଏବେ ଗୃହସ୍ଥାଶ୍ରମରେ ଜଡ଼ିତ ହୋଇଯିବାକୁ ପଡ଼ିଯିବ ନା କଣ !

## ମାଈଁଙ୍କ ଭାବୋନ୍ମାଦ

ନାନା ଚିନ୍ତା କରି ଶେଷରେ ସ୍ଥିର କଲି ଯେ ମାଈଁଙ୍କର ଚିକିତ୍ସା କରାଯିବା ଉଚିତ । ମୋ ଛଡ଼ା ସେ କାର୍ଯ୍ୟ ତୁଲାଇବାକୁ ଆଉ କିଏ ବା ଅଛି ? ତେଣୁ ପରଦିନ ମୁଁ ପୁରୁଲିଆ ଗଲି ଓ କବିରାଜ ପରାମର୍ଶ କରି ହିମସାଗର ତୈଳଟିଏ କିଣି ଆଣିଲି । ମାଈଁଙ୍କୁ ସେଟି ଦେଖାଇ କହିଲି, "ଆପଣ ଏହି ଔଷଧଟି ମଥାରେ ଭଲଭାବେ ଘଷି ଲଗାଇଲେ ମୁଣ୍ଡ ଥଣ୍ଡା ହୋଇ ସୁସ୍ଥ ଲାଗିବ ।" ମାଈଁ କହିଲେ, "କାହିଁକି ମୋର କଣ ହୋଇଛି କି ?" ମୁଁ କହିଲି, "ଆପଣଙ୍କ ମୁଣ୍ଡ ଖୁବ୍ ଗରମ ହୋଇଯାଇଛି ।" ଏହା ଶୁଣି ସେ ହସିବାକୁ ଲାଗିଲେ ଓ କହିଲେ, "ମୋର ତ ମୁଣ୍ଡ ଗରମ ହୋଇ ନାହିଁ, ତୁମ ନିଜର ମୁଣ୍ଡ ଗରମ ହୋଇଯାଇଛି । କାରଣ ମୁଁ ତ ଘରେ ରହିଛି, ତୁମେ ଘର ଛାଡ଼ି ଯାଇ ସନ୍ନ୍ୟାସୀ ହୋଇଛ ! ମୁଁ ପାଗଳୀ ନା ତୁମେ ପାଗଳ ଏଇଥିରୁ ବିବେଚନା କରିପାରୁନା ?" ତାଙ୍କର ଏପରି ମନ୍ତବ୍ୟ ଶୁଣି ମୁଁ ବିସ୍ମିତ ହେଲି । ହଠାତ୍ କି ଉତ୍ତର ଦେବି ଠିକ୍ କରିପାରିଲି ନାହିଁ । କିଛି ସମୟ ଚିନ୍ତା କରି କହିଲି, "ଆପଣ ତେବେ କିଛିଦିନ ଚୁପ୍ କରି ରହନ୍ତୁ, ତା ହେଲେ ମୁଁ ବୁଝିବି ଯେ ଆପଣଙ୍କ ମୁଣ୍ଡ ଠିକ୍ ଅଛି ।" ମାଈଁ ସଙ୍ଗେ ସଙ୍ଗେ କହିଲେ, "ଆଚ୍ଛା ! ସାଧୁଙ୍କ କଥା ମାନି ମୁଁ ସାତଦିନ ତୁନି ହୋଇ ରହିବି । ତହିଁରୁ ଅଧିକା ହେଲେ କିନ୍ତୁ ଦେଶର ଖୁବ୍ ଅନିଷ୍ଟ ହେବ !" ଏହା କହିବା ପରମୁହୂର୍ତ୍ତରୁ ସାତଦିନ ଯାଏଁ ସେ ନୀରବ ହୋଇ ରହିଗଲେ । ଆଉ କୌଣସି ରକମ ବକାବକି ନାହିଁ—ନାମ ଗୀତ କିଛି

ନାହିଁ । ଏକାବେଳେକେ ମୂକ । ଏପରିକି ଖାଇବାକୁ ମଧ୍ୟ ମୁହଁ ଖୋଲି ମାଗିଲେ ନାହିଁ । ଘର ଭିତରେ ଏକ ବିଚିତ୍ର ପରିବେଶ ତିଆରି ହୋଇଗଲା । ମାଈଙ୍କର ଏପରି ବ୍ୟବହାର ଦେଖି ମୁଁ ଆହୁରି ବେଶୀ ବିସ୍ମିତ ହେଲି । ପାଗଳ ମନୁଷ୍ୟ ତ ଚୁପ୍ କରି ରହି ନ ପାରେ । ପୁଣି ସେ ନିଜ ପ୍ରତିଶ୍ରୁତି କିପରି ରକ୍ଷା କରିପାରିବେ ? ମାଈଙ୍କୁ ତେବେ ପାଗଳୀ କୁହାଯିବ କିପରି ? ନାନା ପ୍ରଶ୍ନ ମୋ ମନରେ ବସା ବାନ୍ଧେ । ଲୋକେ ପୁଣି ପଚାରନ୍ତି, "ସାଧୁଜୀ, ଏ କି ରକମ ଲୀଳା, ଦୈବୀ ମହିମ ନା ପାଗଳାମିର ଲକ୍ଷଣ ?" ମୋ ମୁହଁରୁ କୌଣସି ଉତ୍ତର ବାହାରୁନଥାଏ । ମାଈ ପାଗଳ ନା ଭଲ ମସ୍ତିଷ୍କ ମୁଁ ସ୍ଥିର କରିପାରୁନଥାଏ । ଭଲମନ୍ଦ ବିଷୟକ ସାଧାରଣ ସଂସ୍କାର ସୀମା ଭିତରେ ମାଈଙ୍କୁ ସ୍ଥାନ ମିଳୁନଥାଏ । ପୁଣି ତାଙ୍କୁ ଅସାଧାରଣ ବୋଲି ସ୍ୱୀକାର କରିବାକୁ ମଧ୍ୟ ମନ ବଳୁନଥାଏ । ସପ୍ତାହକ ପରେ ମାଈ ଆଗଭଳି ଭଜନ ଓ ଗାନ ଆରମ୍ଭ କରିଦେବାରୁ ମୁଁ କିଂକର୍ତ୍ତବ୍ୟ-ବିମୂଢ଼ ହୋଇଗଲି ।

## ସ୍ୱପ୍ନଦୃଷ୍ଟ ଘଟଣା ମାଈ କିପରି ଜାଣିଲେ

ବ୍ରହ୍ମଚର୍ଯ୍ୟାଶ୍ରମୀ ହୋଇଥିବାରୁ ମାମୁଁଙ୍କ ଘରେ ନ ରହି ଗ୍ରାମର ଦୁର୍ଗାମଣ୍ଡପଠାରେ ମୁଁ ରହୁଥାଏ । ଦୈନନ୍ଦିନ ପୂଜା, ଆସନ, ମୁଦ୍ରା ଧ୍ୟାନ ଓ ଜପ ଶେଷରେ ରୋଷେଇ କରି ଆହାର କରେ ଓ ଗୁରୁ ସ୍ମରଣ କରି ସେଠାରେ ରାତି ଯାପନ କରେ । କିଛିଦିନ ଅତିବାହିତ ହେଲା । ସେଥର ଶେଷ ରାତିରେ ସ୍ୱପ୍ନାବିଷ୍ଟ ହୋଇ ଦେଖିଲି ଯେ, କୌଣସି ଏକ ଅଜ୍ଞାତ ମନୋରମ ସ୍ଥାନରେ ଅନେକ ଲୋକ ସମବେତ ହୋଇଛନ୍ତି । ତିନିଜଣ ସ୍ତ୍ରୀ ଲୋକ ତାନପୁରା ବଜାଇ ସୁସ୍ୱରରେ ଗୀତ ଗାଉଛନ୍ତି । ତା ଭିତରୁ ଦୁଇ ଜଣଙ୍କୁ ମୁଁ ଚିହ୍ନି ପାରିଲି ନାହିଁ । ତୃତୀୟ ଜଣଙ୍କୁ ମୋର ମାଈ ବୋଲି ଜାଣିଲି । ସ୍ୱର ଓ ତାଳ ଏତେ ଚମତ୍କାର ଯେ ଶ୍ରୋତୃବର୍ଗ ମୁଗ୍ଧ ହୋଇ ଶୁଣୁଥାନ୍ତି । ସେହି ଗୀତ ଶୁଣି ମୋ ମନ ଏକାବେଳେକେ ମୁଗ୍ଧ ହୋଇ-

ଯାଉଥାଏ । ସେତେବେଳେ ଯେଉଁ ଶାନ୍ତି ଲାଭ କରୁଥିଲି ତାହା ଭାଷାରେ ପ୍ରକାଶ କରିବା ଅସମ୍ଭବ । ଇତିମଧ୍ୟରେ ମୋର ନିଦ ଭାଙ୍ଗି ଯାଇଛି କିନ୍ତୁ ମୋ କାନରେ ସେହି ପୂର୍ବଶ୍ରୁତ ସ୍ୱରର ଗୁଞ୍ଜନ ଲାଗି ରହି ମୋ ମନକୁ ପ୍ରଲୁବ୍ଧ କରି ରଖିଛି । ମୁଁ ଆଉ ଶେଜ ଛାଡ଼ି ଉଠିପାରୁନାହିଁ । ସେଦିନ ପ୍ରତ୍ୟୁଷରୁ ମାଈଁ ଦୁର୍ଗାମଣ୍ଡପଠାରୁ ଆସି ମୋତେ ଡ଼ାକି ପକାଇଲେ, 'କିହୋ, ସାଧୁ ହୋଇଛ ଖାଲି ଖାଇବାକୁ ଆଉ ଶୋଇବାକୁ । ଏତେବେଳ ଯାଏଁ ତ ଶୋଇ ରହିଛ—ଆଉ ଭଗବାନଙ୍କୁ ପାଇବ କିପରି ? ଖାଲି ଗୀତ ଶୁଣିବାକୁ ବାଇ ହେଲେ କ'ଣ ହେବ ?'

ମାଈଁ ମୋର ସ୍ୱପ୍ନଦୃଷ୍ଟ ଘଟଣାକୁ ଲକ୍ଷ୍ୟ କରି କହୁଥିବେ, ଏକଥା ମୋର ଧାରଣାର ଅତୀତ ହୋଇଥିବାରୁ ମୋ ମୁହଁରୁ ହଠାତ୍ ବାହାରିଗଲା, 'କାହିଁ' ମୁଁ ତ ଗୀତ ଶୁଣିବାକୁ କେଉଁଆଡ଼େ ଯାଇନଥିଲି ।' ମାଈଁ ଧମକ ଦେଇ କହିଲେ, 'କିହୋ, ସାଧୁ ହୋଇ ମିଥ୍ୟା କହୁଛ ! ମୁଁ କିଛି ସମୟ ଆଗରୁ ତୁମକୁ ଗୀତ ଶୁଣାଇନାହିଁ ? ଏବେ ବି ତୁମ କାନରେ ଗୀତର ସ୍ୱର ଲାଗି ରହିଛି ।' ମୁଁ ଏକଥା ଶୁଣି ଯୁଗପତ୍ ଲଜ୍ଜିତ ଓ ବିସ୍ମୟ ବିମୂଢ଼ ହୋଇଗଲି । କିଛି ସମୟ ଅବାକ୍ ହୋଇଯିବା ପରେ ତାଙ୍କପାଖରୁ ସ୍ୱପ୍ନାବସ୍ଥାରେ ଗୀତ ଶୁଣିଥିବା କଥା ସ୍ୱୀକାର କଲି । କଥାକୁ ବାଁଆରେଇ ଦେଇ ବିଛଣାରୁ ଉଠି ଖୁବ ବିହ୍ୱଳିତ ଅବସ୍ଥାରେ ସ୍ନାନ କରିବାକୁ ଚାଲିଗଲି । ସ୍ନାନ ସମାପନାନ୍ତେ ନିତ୍ୟପୂଜାଦିର ଅନୁଷ୍ଠାନ କରିବା ପରେ ମନ ଭିତରେ କିପରି ଏକ ଶୂନ୍ୟତାବୋଧ ଜାଗିଲା । ଗତ କିଛିଦିନ ଧରି ଘଟି ଆସୁଥିବା ଘଟଣାବଳୀର ରହସ୍ୟ ଭେଦକରିବା ଅସମ୍ଭବ ମନେ ହେଉଥିଲା । ତେଣୁ ଚିନ୍ତା କଲି ଯେ, ଆଉ କେତେଦିନ ବା ଏପରିଭାବେ ଏଠାରେ ବାସ କରିଯିବ ? ଶ୍ରୀକାନ୍ତ ମାହାତଠାରୁ ମଧ୍ୟ ସେ ଯାବତ୍ କୌଣସି ସମ୍ବାଦ ଆସି ପହଞ୍ଚି ନ ଥାଏ । ଅତଏବ ଏଥର ଆଶ୍ରମ ଫେରିଯିବା ଉଚିତ । ଏପରି ସ୍ଥିର କରି ମାଈଁଙ୍କୁ ଯାଇ କହିଲି, 'ମୁଁ କାଲି ଏଠାରୁ ଆଶ୍ରମକୁ ଫେରିଯିବି ।' ମାଈଁ କହିଲେ, 'ଯାହା ତୁମ ଇଚ୍ଛା । ସାଧୁଙ୍କୁ କିଏ ବାନ୍ଧି ରଖିପାରେ ?' ଏହା କହି ସେ ପ୍ରସ୍ଥାନ କଲେ ।

## ଆଶ୍ରମ ଫେରିଯିବା ଚେଷ୍ଟା

ମୁଁ ଦୁର୍ଗାମଣ୍ଡପକୁ ଫେରିଆସି ସେଦ୍ଧିନ ଓ ରାତିକ ବିଶ୍ରାମ କଲି । ନାନା ଚିନ୍ତାର ଆନ୍ଦୋଳନ ମଧ୍ୟରେ ମୋତେ ଖୁବ୍ ଅଶାନ୍ତ ଲାଗୁଥାଏ । ମୋର ଭବିଷ୍ୟତ ସ୍ଥିର ଓ ଗତି ଅନିଶ୍ଚିତ ମନେ ହେଉଥାଏ । ପରଦିନ ସକାଳେ ସ୍ନାନ କରି ନିତ୍ୟ ପୂଜାଦି ସମାପନ କଲି ଓ ଗୋରେଖେଇ କରିବାକୁ ମାମୁଙ୍କ ଘରକୁ ଗଲି । ସଅଳ ଖାଇ ଶୀଘ୍ର ଯାତ୍ରା କରିବି ଭାବି ରନ୍ଧାବଢ଼ା ଶେଷରେ ଖାଇବାକୁ ବସିଲି । ହଠାତ୍ ଏତିକିବେଳେ କିନ୍ତୁ ଦେହରେ ଜ୍ୱର ଆସିଗଲା । ଭାବିଲି ଏହି ଜ୍ୱର ଅବସ୍ଥାରେ ଯଦି ଭାତ ଖାଏ ତେବେ ଜ୍ୱର ବଢ଼ିଯିବ । ତେଣୁ ଭାତ ନ ଖାଇ ଉଠିଗଲି ଓ ଦୁର୍ଗାମଣ୍ଡପକୁ ଯାଇ କମ୍ବଳ ଘୋଡ଼ିହୋଇ ଶୋଇ ରହିଲି । ଦେହ ଖୁବ୍ କଂପିବାକୁ ଲାଗିଲା । ଏତିକିବେଳେ ମାଇଁ ମୁଁ ରହିଥିବା ସ୍ଥାନରେ ଆସି ପହଞ୍ଚିଲେ ଓ ଦେଖିଲେ ଯେ ଭାତ ଥାଳିକ ପଡ଼ିରହିଚି । ମାଇଁ ପଚାରିଲେ, "ଏ ଭାତଥାଳି କାହାର ? ଏପରି କିଏ ପକାଇଛି ?" ପିଲାଏ ଉତ୍ତର ଦେଲେ, "ସାଧୁ ଦାଦା, କାରଣ ସେ ଜ୍ୱର ଭୋଗୁଛନ୍ତି ।" ଏଥରକ ମାଇଁ ରାଗରେ ଅସ୍ଥିର ହୋଇ ମୋ ବିଛଣା ପାଖକୁ ଆସିଲେ ଓ ଖୁବ୍ ଧମକ ଦେଇ ଗାଳି ଦେବାକୁ ଆରମ୍ଭ କଲେ । କହିଲେ, "ତୁମେ ତ ସାଧୁ ହୋଇଛ, ତୁମେ ମରିଗଲେ କାହାର କିଛି କ୍ଷତି ହେବ ନାହିଁ । କିନ୍ତୁ ଏଠି ରହି ଗୃହସ୍ଥର ଅମଙ୍ଗଳ କରୁଛ କିଆଁ ? ତୁମେ ମରିଯାଅ ପଛେ ତୁମକୁ ଏହି ଅନ୍ନ ଅବଶ୍ୟ ଖାଇବାକୁ ପଡ଼ିବ ।" ଅଗତ୍ୟା ମୁଁ ଉଠିପଡ଼ି କମ୍ବଳ ଘୋଡ଼ାଇହୋଇ କଂପି କଂପି ଭାତ ଖାଇବାକୁ ଗଲି । ଆଶ୍ଚର୍ଯ୍ୟର କଥା ଖାଇବାକୁ ବସିବା ସଙ୍ଗେ ସଙ୍ଗେ କିନ୍ତୁ ମୋର ଜ୍ୱର ଏକାବେଳକେ ଛାଡ଼ିଗଲା ଭଳି ଲାଗିଲା । ମାଇଁ ପୁଣି କହିଲେ, "କହୋ ! ଜ୍ୱର ଛାଡ଼ିଗଲା !" ମୁଁ ବିସ୍ମିତ ହୋଇ କହିଲି, 'ହଁ' । ସେ ଏଥର ମନ୍ତବ୍ୟ କଲେ, "ତୁମେ ସାଧୁ ହୋଇଛ, ଜ୍ୱର କୁଆଡ଼ୁ ଆସୁଛି ଜାଣୁନ; ପୁଣି କିପରି କୁଆଡ଼େ ଯାଉଛି ସେ ଖବର ମଧ୍ୟ ରଖୁନାହଁ ।" ଏସବୁ ଘଟଣାର ରହସ୍ୟଭେଦ କରିବାକୁ ମୁଁ ଚେଷ୍ଟା କରିବାରେ ଲାଗିଛି । ସେ ପୁଣି କହିଲେ, "ଆଜି ଭୋଜନ କରିସାରି ଏଠାରୁ

ଚାଲିଯାଅ ।” ମୁଁ ସେତେବେଳେ ଖୁବ୍ ଦୁର୍ବଳ ଅନୁଭବ କରୁଥିବାରୁ ମାଈଁଙ୍କୁ କହିଲି, “ଆଜି ଏଠାରୁ ଯିବା ମୋପକ୍ଷରେ ସମ୍ଭବ ନୁହେଁ । ଆସନ୍ତା କାଲି ଯିବି ।” ଏହାଶୁଣି ସେ ସେଠାରୁ ପ୍ରସ୍ଥାନ କଲେ ।

## ଶିଶୁ ବାଳିକାର ଅଲୌକିକ ଲୀଳା

ଦିନେ ଦୁଇଦିନ ବିତିଗଲା । ମୁଁ ଲକ୍ଷ୍ୟକଲି ଯେ ଦୁର୍ଗାପଣ୍ଡାପଠାରେ ରହିବା ସମସ୍ତଙ୍କ ମାଈଁଙ୍କର ସାଢ଼େ ତିନି ବର୍ଷ ବୟସ୍କ ଝିଅ ଭାଙ୍ଗା ଧୂଳମାଟି ନେଇ ମନ ଆନନ୍ଦରେ ଖେଳୁଛି ଓ ମୁଁ ସ୍କୁଲଗଲେ ସେଠାରୁ ଚାଲିଯାଉଛି । ମୋ ସଙ୍ଗେ କୌଣସି ଦିନ କୌଣସି କଥାବାର୍ତ୍ତା କରେନା । ମୁଁ ମଧ୍ୟ ତାକୁ କିଛି କୁହେନା । ଆପାତତଃ ମୋ ସଙ୍ଗେ ତାର ଯେପରି କୌଣସି ସଂପର୍କ ନାହିଁ । ସେଦିନ ସକାଳେ ସ୍ନାନ ସାରି ଆସିଲି । ଅଳ୍ପ ଜଳମୂ ହୋଇଯାଇଥାଏ । ସନ୍ଧ୍ୟା କରିବାକୁ ବସିଲି । ସେ ଝିଅଟି ସେ ଦିନ ଗୋଟିଏ କଣକୁ ବସି ଖେଳୁଥିଲା । ହଠାତ୍ କହିବାକୁ ଲାଗିଲା, “ଦାଦା, (ଭାଇନା) ଆପଣ ଏ ସବୁ କରନ୍ତି କାହିଁକି ? ଯଦି କେବଳ ଆଖିବୁଜି ବସିଲେ ଭଗବାନ ଦେଖାଦିଅନ୍ତେ ତେବେ ଅନ୍ଧମାନେ ଭଗବାନଙ୍କୁ ଦର୍ଶନ କରନ୍ତେ । ଯଦି ଗୋଡ଼କୁ ମୋଡ଼ି ବସିଲେ ଭଗବତ୍ ପ୍ରାପ୍ତି ହୁଅନ୍ତା, ତେବେ ଛୋଟଙ୍କର ଭଗବାନ୍ ସାକ୍ଷାତ୍କାର ହୋଇ ସାରଥାନ୍ତା । ତଳକୁ ମୁଣ୍ଡ ଓ ଉପରକୁ ଗୋଡ଼ ଟେକି ରଖିଲେ ଯଦି ଭଗବାନ ମିଳନ୍ତି ତେବେ ଏତେ ପକ୍ଷୀ ଗଛରେ ଝୁଲୁ ନଥାନ୍ତେ ! ‘ଜୟଗୁରୁ’ ‘ଜୟଗୁରୁ’ କହିଲେ ଯଦି ମିଳୁଥାନ୍ତେ ତେବେ ଲୋକେ ଅକ୍ଲେଶରେ ଉଦ୍ଧାର ପାଆନ୍ତେ । ସାଧନ ଭଜନଦ୍ୱାରା ଭଗବାନ ମିଳୁଥିଲେ ଯୁଗ ଯୁଗ ଧରି ଯୋଗୀମାନେ ବସି ରହିଛନ୍ତି—କେତେଜଣ ତାଙ୍କୁ ପାଇଛନ୍ତି ?” ସେଇ ବାଳକଟେ ଝିଅ ମୁହଁରୁ ଏହିପରି ତତ୍ତ୍ୱପୂର୍ଣ୍ଣ କଥା ଶୁଣି ଭାବିଲି ଯେ କୌଣସି ମହାତ୍ମା ସମ୍ଭବତଃ ଏହି ଶିଶୁର ହୃଦୟରେ ରହି ଏପରି କୁହାଉଛନ୍ତି । ନଚେତ୍ ଏତେ କମ୍ ବୟସରେ ଏପରି କଥା ସେ କପରି କହନ୍ତା ? ଶିଶୁଟି ପ୍ରତି ମୋ ମନରେ ଏକ ଅପୂର୍ବ ଆକର୍ଷଣର ଭାବ ଜାଗିଲା । ମୁଁ ତାକୁ ଆଦରରେ ପାଖକୁ

ତାଙ୍କନେଇ କୋଳରେ ବସାଇଲି । ଆଶ୍ଚର୍ଯ୍ୟର ବିଷୟ, ସେ ମୋତେ ଅସ୍ୱାଭାବିକଭାବେ ଭାରି ବୋଧ ହେଲା । ମୁଁ ତାକୁ ପଚାରିଲି, "ତା' ହେଲେ ମା, କି ଉପାୟରେ ଭଗବାନ୍ ଲାଭ ହୁଅନ୍ତି ?" "ତାଙ୍କର କୃପା ହେଲେ ହିଁ ସେ ମିଳନ୍ତି"—ଭାଂଗା ମୁହଁରେ ଭକ୍ତି ଶାସ୍ତ୍ରର ସାରଭୂତ ସତ୍ୟ ! ସେ କହି ଚାଲିଲା, ମୋର ବାପା ମରିଯାଉଥିବାବେଳେ ମା ଅଧୀର ହୋଇ କାନ୍ଦିବାକୁ ଲାଗନ୍ତି । ସେତେବେଳେ ମୁଁ ମାଙ୍କୁ କହୁଥିଲି, ବାପାଙ୍କ ପାଦ ଦୁଇଟି ଯାବୁଡ଼ିଧର । ବାପା ଆଉ ଯାଇପାରିବେ ନାହିଁ । ଆମରି ଘରେ ରହିଯିବେ । ମୋ କଥା ଶୁଣି ମୋ ମା ଠିକ୍ ସେହିପରି କଲେ । ସେଠିକବେଳୁ ମାକୁ ଆଉ କାନ୍ଦିବାକୁ ହୋଇ ନାହିଁ ।

ତା'ପରେ ମୁଁ ଭାଂଗାକୁ ପଚାରିଲି, "ତୁ ତେବେ କହିପାରିବୁ ମୋର ଭଗବାନଙ୍କ ସାକ୍ଷାତ୍ ହୋଇପାରିବ କି ନା ?" ସେ ଉତ୍ତର ଦେଲା, "ମୁଁ ଘରେ ମାଙ୍କ ସଙ୍ଗେ ଦେଖାକରି ଆଳାପ କରିବି ଓ କହିବି ମୋର ଜଣେ ସାଧୁ ଦାଦା ତୁମକୁ ଦେଖିବାକୁ ଚାହୁଁଛନ୍ତି । ସେ କ'ଣ ତୁମର ଦେଖା ପାଇବେନି ! ତାଙ୍କୁ ତୁମେ ଦେଖାଦେଲେ ଖୁବ୍ ଭଲ ହେବ ! ମାଙ୍କର ମତାମତ ଜାଣି କାଲି ସକାଳୁ ଆସି ଖବର ଦେବି ।" "ମା'ଙ୍କ ସଙ୍ଗେ ତୋର ସାକ୍ଷାତ୍ ହୁଏ ?" ସେ କହିଲା, "ସେ ମୋର ମା, ତାଙ୍କ ସଙ୍ଗେ ସାକ୍ଷାତ୍ ହେବନି ?" ଏଠାରେ ସେ ନିଜ ମା ବୋଲି ମୋର ମାଈଙ୍କୁ ନା କୌଣସି ଅଦୃଶ୍ୟ ଶକ୍ତିଙ୍କ ଇଙ୍ଗିତ କରୁଥିଲା, ସେ ବିଷୟରେ ଅଧିକା ଜାଣିବାକୁ ମୁଁ ପ୍ରୟାସୀ ହୋଇପାରିନଥିଲି । ତା କଥା ଏକାବେଳକେ ମୋତେ ବିହ୍ୱଳ କରିଦେଉଥାଏ ଏବଂ ତା ପ୍ରତି ମୋର ଶ୍ରଦ୍ଧା ଓ କୃତଜ୍ଞତାର ଭାବ ଯୁଗପତ୍ ଜାଗିଉଠୁଥାଏ । ଏତେ କମ୍ ବୟସ ଅଥଚ ତାର କଥାର ସଙ୍ଗତି ଓ ମୂଲ୍ୟ ଅସାଧାରଣ ବୋଲି ମନେ ହେଉଥାଏ । ତାକୁ ସାଙ୍ଗରେ ନେଇ ଭେଟେଇ କରିବା ପାଇଁ ତାଙ୍କ ଘରକୁ ଗଲି । ସେଠାରେ ଆମେ ଦୁଇଜଣ ବସି ଭଲଭାବେ କଥାବାର୍ତ୍ତା କଲୁ । ତାର ପ୍ରତ୍ୟେକ କଥା ମୋ କାନରେ ମଧୁର ଶୁଣାଯାଉଥାଏ ଏବଂ ମୋତେ ଆନନ୍ଦ ଦେଉଥାଏ । ଭେଟେଇ ସରିବା ପରେ ଭାତ ବାଢ଼ିଲି ଓ ଭାଂଗକୁ ପଚାରିଲି, "ମା, ତୁ

ମୋ ସଙ୍ଗରେ ଖାଇବୁ ?" ଏହି ରାଜି ହେବାରୁ ଦୁଇଜଣ ଏକ ସଙ୍ଗେ ଭୋଜନ କରିବାକୁ ଲାଗିଲୁ । ଏତିକିବେଳେ ମାଈଁ ଆସି ସେଠାରେ ପହଞ୍ଚିଗଲେ ଓ ଆମ ଦୁହିଁଙ୍କୁ ଏକାଠି ଖାଉଥିବା ଦେଖି କହିଲେ, ସର୍ବନାଶ ! ସାଧୁ ହୋଇ ମୋ ଝିଅକୁ ସାଙ୍ଗରେ ବସାଇ ଖୁଆଇଲ ! ଏହା ଶୁଣି ଭଂଘା କହିଲା, "କାହିଁକି ମା, ସାଧୁ ତ ମୋର ଦାଦା, ମୁଁ ତାଙ୍କ ସଙ୍ଗେ ଖାଇବାକୁ ଇଚ୍ଛାକଲି, ସେଥିରେ ଦୋଷ କାହିଁକି ଲାଗିବ ?" ଏହା ଶୁଣି ମାଈଁ କହିଲେ, "ତା ହେଲେ ତୋର ଖାଇବାକୁ ଇଚ୍ଛା ଥିଲା । ବେଶ୍ ତେବେ !" ଏହା କହି ସେଠାରୁ ଚାଲିଗଲେ । ଆମେ ଦୁହେଁ ଖାଇସାରି ସେହି ଦୁର୍ଗାମଣ୍ଡପକୁ ଫେରିଗଲୁ । ମୋ ମନଟା ସେତେବେଳେ ଏତେ ସରଳ ହୋଇଯାଇଥିଲା ଓ ମୁଁ ଏପରି ଅଭିଭୂତ ହୋଇପଡ଼ିଥିଲି ଯେ ଭଂଘା ଯାହା କହୁଥିଲା, ତାହା ସତ୍ୟ ବୋଲି ମନେ ହେଉଥିଲା । ଏହି ଦିନଟିର ଅନୁଭୂତି ମୋ ଜୀବନରେ ଚିରସ୍ମରଣୀୟ ହୋଇ ରହିଲା ।

## ମାତୃଶକ୍ତି ଦର୍ଶନର ପ୍ରତୀକ୍ଷା

ପରଦିନ ସକାଳେ ସଅଳ ସଅଳ ସ୍ନାନ ସାରି ଆସିଲି । ପରେ ପରେ ଭଂଘା ବି ଆସି ପହଞ୍ଚିଗଲା । ସଙ୍ଗେ ସଙ୍ଗେ ମୁଁ ତାକୁ କୋଳକୁ ନେଲି ଓ ପଚାରିଲି, "ମା କାଲି ରାତିରେ କ'ଣ କହିଲେ ?" ସେ କହିଲା, "ମୁଁ ମାଙ୍କୁ ସାକ୍ଷାତ୍ କରି ଅନୁନୟ କଲି ଓ କହିଲି ଯେ ମୋର ସାଧୁ ଦାଦା ଅଛନ୍ତି, ତାଙ୍କୁ ଦେଖାଦେବାକୁ ହେବ । ମା କିନ୍ତୁ କୌଣସିମତେ ରାଜି ହେଉନଥାନ୍ତି, ମୁଁ ଅନେକ ପ୍ରକାର ବୁଝାଇ କହିଲି ଯେ, ସେ ମୋର 'ଦାଦା' ମୁଁ ତାଙ୍କୁ କହିଛି ଯେ ତୁମ ସଙ୍ଗେ ତାଙ୍କର ସାକ୍ଷାତ୍ କରାଇ-ଦେବି । ମୋର କଥା ତୁମକୁ ରଖିବାକୁଇ ପଡ଼ିବ । ଏହିପରିଭାବେ ବହୁତ କଷ୍ଟରେ ମୁଁ ତାଙ୍କୁ ରାଜି କରାଇ ପାରିଛି । ଆଜି ରାତିରେ ହିଁ ସେ ତମକୁ ଦେଖା ଦେବେ !" ମୁଁ ପୁଣି ପଚାରିଲି, "କେଉଁଠି ଦେଖାହେବ ?" "ମା କହିଲେ ଆମ ଦାଣ୍ଡ ଘର ବାରଣ୍ଡାରେ"—ଭଂଘା ଉତ୍ତର ଦେଲା । ପୁଣି ଭଂଘାକୁ ମା ପଚାରିଥିଲେ, 'ତୁମ ଦାଦା ସେଠା ଏକା ଏକା

ରହିପାରିବେ ତ ? ଭଂଘୀ କହିଥିଲା, "ନିଶ୍ଚୟ ରହିପାରିବେ । ସାଧୁ ସନ୍ୟାସୀଙ୍କର ଡ଼ର ଭୟ ତ ନଥାଏ ।" ମୁଁ ପୁଣି ସମ୍ଭ୍ରମ ସହକାରେ ତାକୁ ପଚାରିଲି, "ମୋତେ କ'ଣ ସବୁ କରିବାକୁ ପଡ଼ିବ ?" ସେ କହିଲା—କିଛି କରିବାକୁ ହେବନି, ଖାଲି ଶୋଇ ରହିଲେ ଚଳିବ ।"

ଭଂଘୀ ମୁହଁରୁ ଏସବୁ କଥା ଶୁଣି ମୋ ମନରେ ଅପାର ଆନନ୍ଦ ହୋଇଥିଲା । ମୁଁ ଉତ୍କଣ୍ଠିତ ହୋଇ ରାତିର ସେଇ ଶୁଭମୁହୂର୍ତ୍ତର ପ୍ରତୀକ୍ଷାରେ ବସି ରହିଲି । ମୋର ଚିଦାକାଶରେ ଦ୍ୱିଧାହୀନ ସରଳ ବିଶ୍ୱାସର ଆଲୋକ ଝଲସୁଥାଏ । ରାତ୍ରିଭୋଜନ ପରେ ମୁଁ ମାଇଁଙ୍କୁ କହିଲି, 'ଆଜି ରାତିକ ପାଇଁ ମୁଁ ଏଇ ବାରଣ୍ଡାରେ ଶୋଇପଡ଼ିବି ।' ସେ କହିଲେ, 'ରାତିରେ ଏଠି ଆଉ କେହି ରହନ୍ତିନି, ତୁମେ ତ ଦୁର୍ଗାମଣ୍ଡପରେ ବେଶ୍ ଅଛ, ଏଠାରେ ପୁଣି କାହିଁକି ? ମୁଁ କହିଲି, 'ମାଇଁ, ଆଜି ରାତିକ ମୋତେ ଏଠାରେ ଶୋଇବାକୁ ଦିଅନ୍ତୁ !' ସେ ଆଉ ପ୍ରତିବାଦ ନ କରି ସେଠାରୁ ପ୍ରସ୍ଥାନ କଲେ ।

ମୁଁ ସେହି ଘର ବାରନ୍ଦାରେ ବିଛଣା କରି ଶୋଇଲି । ମାଇଁ ଓ ପିଲାଏଁ ନିଜ ନିଜ ଘରେ ଯାଇ ଶୋଇଲେ । କିନ୍ତୁ କ'ଣ ବା କରିବି । କୌଣସି ଧ୍ୟାନ ଧାରଣା ପ୍ରତି ତ ସ୍ୱାଭାବିକ ଆଗ୍ରହ ନ ଥାଏ । ଶୋଇବା ପରେ ପରେ ନିଦ ଆସିଗଲା । ରାତି ଅନୁମାନ ବାରଟା ହେବ । ମୋର ମନେ ହେଲା କିଏ ଯେପରି ମୋର ପିଠି ଉପରକୁ ଲାତ ମାରୁଛି । ବ୍ୟଥା ଅନୁଭୂତ ହେବାରୁ ନିଦ ଭାଙ୍ଗିଗଲା । ଉଠିପଡ଼ି ମୁଁ ଚାରିଆଡ଼େ ଅନୁସନ୍ଧାନ କଲି । କେଉଁଠି କିଛି ଦେଖିବାକୁ ମିଳିଲାନି । ପଶୁପକ୍ଷୀ ଅବା ମନୁଷ୍ୟ, କେହି ନାହାନ୍ତି । ଫେରିଆସି ବିଛଣା ଉପରେ ବସିଲି । ଆଗରୁ ଖାଇଥିବା ଲାତ ମାଡ଼ର ବ୍ୟଥା ତଥାପି ଲାଗୁଥାଏ । ଏହି ସମୟରେ ଲକ୍ଷ୍ୟକଲି ଯେ ନିକଟସ୍ଥ ଏକ ଜାମୁ ଗଛ ଉପରେ ଗୋଟିଏ ଉଜ୍ଜ୍ୱଳ ଆଲୋକ ପଡ଼ିଲା । ଆଲୁଅ ଦେଖି ମୋ ମନରେ ଖୁବ୍ ଭୟ ଜାତ ହେଲା । ସେ ଦେଶରେ ଡକାୟତମାନଙ୍କର ଦୌରାତ୍ମ୍ୟ ମୋର ଅଜଣା ନ ଥାଏ । ମୋର ମନେହେଲା ଯେ, ଡ଼କାୟତମାନେ ବୋଧହୁଏ ଆସିଛନ୍ତି । ଏବେ ମୁଁ

କରେ କଣ ? ଯଦି ଗୁମ୍ଫା ପଳାଇଯାଏ ତେବେ ଅସହାୟା ମାଈଁ ଓ ନାବାଳକ ସନ୍ତାନଟିମାନଙ୍କର ଅନିଷ୍ଟ ହେବ । ଆଉ ସେଠି ରହିଲେ ପ୍ରଥମେ ସେମାନେ ମୋତେ ମାଡ଼ ନ ଦେଇ ଛାଡ଼ିବେ ନାହିଁ । ମୁଁ ଏପରି ଶଙ୍କିତ ହୋଇ ଉଠିଲି ଯେ ଭଗବତ୍ ସାକ୍ଷାତ୍କାରର ଆକାଂକ୍ଷା ମୋ ମନରୁ ପୋଛି ହୋଇଗଲା । ଉପାୟ ଚିନ୍ତା କରୁ କରୁ ଅନେକ ଉପରେ ଏକାଗ୍ର ଦୃଷ୍ଟି ନିବଦ୍ଧ କରି ସ୍ଥିରଭାବେ ବସି ରହିଲି ।

## ମା'ଙ୍କ ଆବିର୍ଭାବ

ତାପରେ ଅତି ଅଦ୍ଭୁତ ଘଟଣା ଘଟିଲା । ହମ୍ଭୁଖଣ୍ଡ ବୃକ୍ଷ ଉପରେ ପ୍ରତିଫଳିତ ଅନେକ ବିନ୍ଦୁ କ୍ରମାନ୍ୱୟରେ ବର୍ଦ୍ଧିତ ହେବାକୁ ଲାଗିଲା । ମୁଁ ଆକାଶ ଆଡ଼କୁ ଚାହିଁ ଦେଖିଲି, ଆକାଶ ସାରା ଜ୍ୟୋତିର୍ମୟ ହୋଇଯାଇଛି । ସେ ଜ୍ୟୋତିର କୋଳରେ ଏକ ତରୁଣୀ ନାରୀ ମୂର୍ତ୍ତି ଘନୀଭୂତ ହୋଇ ଆତ୍ମପ୍ରକାଶ କରୁଛନ୍ତି ଓ ସେ କ୍ରମଶଃ ମୋ'ର ଆଡ଼କୁ ଆସୁଛନ୍ତି । ଫଳତଃ ତାଙ୍କ ଆକାର ସେହି ଅନୁପାତରେ ବଢ଼ିବାରେ ଲାଗିଛି । ଅବଶେଷରେ ସେ ମୋ ପାଖକୁ ଆସି ପଚାରିଲେ, "କରେ, ମୋତେ ଚିହ୍ନିପାରୁଛୁ ତ ?"

"ହଁ ମା, ଶୈଶବରୁ ମାତୃହରା ହୋଇ ଆପଣଙ୍କ ଭଆଡ଼ି ତ ସବୁବେଳେ ଭାବି ଆସିଛି ।" ଏହା କହି ମୁଁ ତାଙ୍କୁ ପ୍ରଣାମ କଲି । ଏଥର ସେ ମୋତେ କହିଲେ, "ତୁ ମୋର କଥା ମାନ, ଯାହା ଆଦେଶ ଦେବି ପାଳନ କରିବୁ ?" ମୁଁ କହିଲି, "ଆପଣ ପ୍ରଥମେ ପ୍ରକାଶ କରନ୍ତୁ, କ'ଣ ମୋତେ କରିବାକୁ ହେବ । ଆପଣଙ୍କ ଆଦେଶ କଅଣ ପ୍ରଥମେ ନ ଜାଣି ତାକୁ ପାଳନ କରିବା ପାଇଁ ପ୍ରତିଶ୍ରୁତି ଦେବି କପରି ? ଆପଣଙ୍କ ଆଦିଷ୍ଟ କାର୍ଯ୍ୟ କରିବାକୁ ମୁଁ ହୁଏତ ଅକ୍ଷମ ହୋଇପାରେ !" ସେ କହିଲେ, "ନା ତୋତେ ତାହା କରିବାକୁ ହିଁ ପଡ଼ିବ, ଅସ୍ୱୀକାର କଲେ ଚଳିବନି ।" ମୁଁ ତାପରେ କହିଲି "ମା, ତେବେ ଆପଣଙ୍କ ଅଭିପ୍ରାୟ ପ୍ରକାଶ କରନ୍ତୁ ! ଏହା ଶୁଣି ମା କହିଲେ, "ଦେଖ, ତୋ ମାଈଁଙ୍କଠାରେ ମୁଁ ଆଜକୁ ପ୍ରାୟ ଦୁଇବର୍ଷ ଧରି

ରହୁ ଆସିଛୁ । ମାଈଁ କୌଣସି ସଦ୍‌ଗୁରୁଙ୍କଠାରୁ ଦୀକ୍ଷାଲାଭ କରିନଥିବାରୁ ମୁଁ ତାଙ୍କ ଭିତରେ କ୍ରିୟାଶୀଳା ହୋଇପାରୁନାହିଁ । ତୁ ଜଣେ କ୍ରିୟାବାନ୍ ସାଧକ, ବିଶେଷରେ ବ୍ରହ୍ମଚାରୀ । ତୁ ଟେ। ମାଈଙ୍କ ପାଦ ପୂଜା କରିଦେଲେ ମୋର ବିକାଶ ହୋଇଯିବ ।" ତାଙ୍କଠାରୁ ଏପରି କଥା ଶୁଣି ମୁଁ ମନେ ମନେ ଭାବିଲି ଯେ, ଏତେତ ଲୋକେ ମାଈଙ୍କୁ ପାଗଳ ବୋଲି ଧରିନେଇଛନ୍ତି, ପୁଣି ମୁଁ ସାଧୁ ହୋଇ ତାଙ୍କୁ ପୂଜା କଲେ ମୋତେ ମଧ୍ୟ ପାଗଳ ଛଡ଼ା ଆଉ କଣ ଭାବିହିବ ? ତେଣୁ ମୁଁ କହିଲି, "ମା, ମୁଁ ଆପଣଙ୍କ ଆଦେଶ ପାଳନ କରିପାରିବି ନାହିଁ । ଆପଣ ମୋତେ କ୍ଷମା କରନ୍ତୁ ।" "କରେ ସେ ତ ତୋର ମାଈଁ । ତାଙ୍କୁ ପୂଜା କରିବା ଲାଗି ତୋର ଆପତ୍ତି କାହିଁକି ?" ସେ ପ୍ରଶ୍ନ କଲେ । ମୁଁ କହିଲି, "ମାଈଙ୍କୁ ତ ପାଗଳ ବୋଲି ସମସ୍ତେ ଜାଣନ୍ତି । ଜଣେ ପାଗଳୀ ସ୍ତ୍ରୀ ଲୋକର ପୂଜା କରିବା ପାଇଁ ଆପଣ କହୁଛେ, ମୁଁ ତାହା କିପରି କରିବି ? ମୁଁ ପାରିବିନି ।" ମୋର ଏପରି ଅବଜ୍ଞାସୂଚକ ପ୍ରତ୍ୟୁକ୍ତି ଶୁଣି ସେ ଖୁବ୍ ରାଗିଗଲେ ଓ ଜୋର ଦେଇ କହିଲେ, "ତୋତେ ପୂଜା କରିବାକୁ ହିଁ ହେବ ।" ମୁଁ କହିଲି, "ମୋର ଅସ୍ତିତ୍ୱ ଥିବାଯାଏଁ ମୁଁ କଦାପି ପୂଜା କରିବି ନାହିଁ । ମୁଁ ସଦ୍‌ଗୁରୁ ସ୍ୱାମୀ ନିଗମାନନ୍ଦଦେବଙ୍କ ଶିଷ୍ୟ । ମୋର ପୁଣି ଭୟ କାହାକୁ ?"

"କାଲି ମୁଁ ତୋଠାରୁ ପୂଜାଗ୍ରହଣ କରିବାଆଗରୁ ତୋତେ ଗୁଡ଼ି ଦେଉ ନାହିଁ, ଦେଖିବି ତୋର ଶକ୍ତି କେତେ, ପୂଜା ନକରି ତୁ କୁଆଡ଼େ ଯିବୁ !" ଏହା କହି ସେ ଅନ୍ତର୍ହିତା ହେଲେ । ପୁଣି ପୂର୍ବପରି ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ ହୋଇଗଲା । ପରେ ପରେ ମୋ ମନରେ ଖୁବ୍ ଅନୁତାପ ଜାଗିଲା, ମୁଁ ଭାବିଲି, "ଆହା, କି ଗୁରୁତର ଭୁଲ ମୁଁ ନ କଲି ! ଯଦି ମା'ଙ୍କ ଆଦେଶ ପାଳନ କରିବାକୁ ରାଜି ହୋଇଥାନ୍ତି ତେବେ ସେ ନିଶ୍ଚିତ ପରିତୁଷ୍ଟା ହୋଇ କିଛି ବର ପ୍ରଦାନ କରିଥାନ୍ତେ । ମୋର ଭାଗ୍ୟରେ ତା'ବି ଜୁଟିଲାନି ! ଆଗକୁ କି ଦୁର୍ଭୋଗ ଯେ ଅଛି, କିଏ ଜାଣେ ? ମାଙ୍କୁ ପାଇବାକୁ କେତେ ସାଧନ ଭଜନ ଦରକାର ହୁଏ, କିନ୍ତୁ ମୁଁ ହତଭାଗା, ତାଙ୍କୁ ଅନାୟାସରେ ପାଇ ମଧ୍ୟ ପ୍ରତ୍ୟାଖ୍ୟାନ କରି ବସିଲି !" ଏହିପରି ଚିନ୍ତା କରୁ କରୁ ନିଦ୍ରାଭିଭୂତ ହୋଇ ରାତିଟି ବିତିଗଲା ।

# ଗୁରୁତର ବିସ୍ମୟ

ପରଦିନ ପ୍ରଭାତରୁ ଉଠି ସ୍ନାନ ସାରି ଆସିଲି । ମନର ଗମ୍ଭୀର ସ୍ତରରେ ଚାଲିଥିବା ଗୁରୁତର ଦ୍ୱନ୍ଦ୍ୱକୁ ଚାପିରଖି ପୂଜା ପୂର୍ବରୁ ମାଈଁଙ୍କର କିଛି ସେବା ଯତ୍ନ କରିବାକୁ ଚେଷ୍ଟିତ ହେଲି । ପ୍ରଥମେ ତାଙ୍କର ସ୍ନାନ ପାଇଁ ବ୍ୟବସ୍ଥା କରିଦେଲି । ସ୍ନାନ ପରେ ଜଳଯୋଗ କରାଇଦେବାରୁ ସେ ଶାନ୍ତ ହୋଇ ପୁଣି ଶୋଇପଡ଼ିଲେ । ପରେ ପରେ ଭଂଡାରୀ ଆସି କହିଲା, “ଦାଦା, ଆପଣ କେଡ଼େ ବଡ଼ ଭୁଲ ନ କଲେ ! ମାଙ୍କ ସଙ୍ଗେ ଆପଣ ଝଗଡ଼ା କରିବା ଠିକ୍ ହେଲା ନାହିଁ । ମାଁ ଖୁବ୍ ରାଗିଯାଇଛନ୍ତି । ସେ ସମସ୍ତ ଧ୍ୱଂସ କରିଦେବେ !” ଭଂଡାରୀର ଏ ସବୁ ମୋତେ ପୁଣି ବିସ୍ମିତ କଲା । ଗତ ରାତ୍ରରେ ଘଟିଥିବା ଘଟଣା ଭଂଡାରୀ କିପରି ଜାଣିପାରିଲା ତାହା ମୋର ବୋଧଗମ୍ୟ ହେଲା ନାହିଁ । ତଥାପି, ମୁଁ ଉତ୍ତର ଦେଲି, “ମୋ ଭାଗ୍ୟରେ ଯାହା ଥିବ ତାହାହିଁ ହେବ । ମା ରାଗିଲେ କେତେ, ସନ୍ତୁଷ୍ଟ ହେଲେ ବା ମୋର କ’ଣ ଯାଏ ଆସେ ? ବର୍ତ୍ତମାନ ଆଉ କ’ଣ ବା କରାଯିବ, ଯା ହେବାର କଥା ହୋଇଯାଇଛି ।” ଏହା ଶୁଣି ଭଂଡାରୀ ନୀରବ ହୋଇ ସେଠାରୁ ଚାଲିଗଲା । ଦେବୀମୂର୍ତ୍ତି ଦର୍ଶନର ରହସ୍ୟ ଓ ତାଙ୍କର ଆଦେଶ ପ୍ରତିପାଳନ ସମ୍ପର୍କୀୟ ଚିନ୍ତା ମୋ ମନକୁ ଆନ୍ଦୋଳିତ କରୁଥାଏ । କ୍ରମେ ମଧ୍ୟାହ୍ନ ଆସି ହେଲା । ପାକ ଓ ଭୋଜନ ଶେଷ କରି ବିଶ୍ରାମ କରିବାକୁ ଗଲି ।

କିଛି ସମୟ ପରେ ପିଲାମାନେ ବଢ଼ାବଢ଼ି କରିସାରି ମାଈଁଙ୍କୁ ଖାଇବାକୁ ଡ଼ାକିଲେ । ଅତୀବ ଆଶ୍ଚର୍ଯ୍ୟର କଥା, ମାଈଁ କହିଲେ, “ଆଜି ତ ମୁଁ ଭାତ ଖାଇବି ନାହିଁ, ସେହି ସାଧୁକୁ ଡାକ, ମୁଁ ତାର ମାଂସ ଖାଇବି ।” ତାଙ୍କର ଏପରି ବକ୍ତବ୍ୟ ଶୁଣି ପିଲାମାନେ ଭୟରେ ମୋ ପାଖକୁ ଆସି କହିଲେ, “ଦାଦା, ମା ଭାତ ଖାଉନାହାନ୍ତି । ଖାଇବାକୁ ଡ଼ାକିବାରୁ କହିଲେ ସେଇ ସାଧୁକୁ ଡ଼ାକିଆଣ, ମୁଁ ତାକୁଇ ଖାଇବି ।” ଗତ ରାତ୍ରରେ ମା’ଙ୍କର ସେଇ ଏକା ଜିଦ୍—ଜୋରପୂର୍ବକ ମୋର ପୂଜା ଗ୍ରହଣ

କରିବେ—ମୋର ମନେ ପଡ଼ିଯିବାରୁ ମୁଁ ଖୁବ୍ ଚିନ୍ତିତ ହେଲି ଏବଂ କେତେକ ପରିମାଣରେ ତ୍ରସ୍ତ ମଧ୍ୟ ହୋଇଗଲି । ହଠାତ୍ ଗୋଟାଏ ଉପାୟ ମନକୁ ଜୁଟିଲା । ଆଖ ପାଖରେ ଥିବା ଜଣାଶୁଣା ଲୋକ ଓ ବନ୍ଧୁ ବାନ୍ଧବଙ୍କ ପାଖରେ ପତ୍ରସ୍ଥ ସମସ୍ତ କଥା ଜଣାଇଲି ଓ କହିଲି, "ଭାଇ, ଚାଲ ସମସ୍ତେ ମିଳିମିଶି ମାଈଁଙ୍କୁ ଶାନ୍ତ କରାଇବା । ଭାବିଲି ଯେ ଯାହା ଘଟିବାକୁ ଯାଉଛି, ସମସ୍ତଙ୍କ ସାମନାରେ ଘଟୁ, ସମସ୍ତେ ତ ଦେଖିପାରିବେ !

## ମାଈଁଙ୍କ ମାଧ୍ୟମରେ ଶକ୍ତିର କ୍ରିୟା

ମୋ ପ୍ରସ୍ତାବରେ କେତେକ ଲୋକ ରାଜି ହେଲେ । ଆମେ ସମସ୍ତେ ଏକାଠି ମାମୁଁଙ୍କ ଘରକୁ ଗଲୁ । ଯାଇ ଦେଖିଲୁ ଯେ ମାଈଁ ଶୋଇ ରହିଛନ୍ତି । ତାଙ୍କ ବିଛଣା ପାଖକୁ ଯାଇ ମୁଁ କହିଲି "ମାଈଁ, ଆପଣ ଏଥରକ ଉଠନ୍ତୁ, ଭୋଜନ କରନ୍ତୁ, ଏପରି ନ ଖାଇ ଶୋଇ ରହିବା କ'ଣ ଭଲ କଥା ?" ସେ ଉତ୍ତର ଦେଲେ, "ରାତିରେ ଯେଉଁ ଆଦେଶ ପାଇଥିଲୁ ତାହା ତୋର ମନେନାହିଁ ?" ମୁଁ କହିଲି, "ଆପଣଙ୍କର ବି ତ ମନେଥିବ ଯେ ମୁଁ ସେ ଆଦେଶ ପାଳନ କରିପାରିବି ନାହିଁ ବୋଲି କହିଥିଲି । ମୁଁ କେବେହେଲେ ମିଥ୍ୟା କଥା କହେନା, ମୁଁ ଏବେ ମଧ୍ୟ ମୋର ପ୍ରତିଜ୍ଞାରେ ଅଟଳ ଅଛି ଏବଂ ରହିବି !"

"ଆଚ୍ଛା ତୋର ଶକ୍ତି କେତେ ମୁଁ ଦେଖିନେବି," ଏହା କହି ସେ ନୀରବ ହେଲେ । ମୁଁ ମଧ୍ୟ ସ୍ଥିରଭାବେ ଦଣ୍ଡାୟମାନ ହୋଇଥାଏ, କିନ୍ତୁ ଏ କ'ଣ ? କ୍ଷଣକ ପରେ ମୋର ଗ୍ରୀବା ଭିତରଟା କାହିଁକି କମ୍ପିବାକୁ ଆରମ୍ଭ କଲା ? ପାଖରେ ଥିବା କବାଟଟିକୁ ଜୋରରେ ଭିଡ଼ି ଧରିବାକୁ ଚେଷ୍ଟା କରି ସମ୍ପୂର୍ଣ୍ଣ ବିଫଳ ହେଲି । କବାଟରୁ ହାତ ଖସିଯାଇ ସଙ୍ଜ୍ଞାହୀନଭାବେ ତଳେ ପଡ଼ିଗଲି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ମୋର ଅନ୍ତର୍ଦ୍ଦେଶରେ ମା'ଙ୍କର ସେହି ପୂର୍ବଦୃଷ୍ଟ ମୂର୍ତ୍ତି ପ୍ରତିଭାତ ହୋଇ ଅସୀମ ଆନନ୍ଦ ପ୍ରଦାନ କଲା ।

ଏହିପରି ଅବସ୍ଥାରେ ମାଙ୍କ ଗୋଟିଏ ବାଡ଼ି ଆସି ମୋର ପାଦକୁ ପିଟିବାରେ ଲଗିଲେ ବୋଲି ପରେ ଶୁଣିଲି । ଏ ଘଟଣା ଉପସ୍ଥିତ ସମସ୍ତ ଲୋକେ ପ୍ରତ୍ୟକ୍ଷ କରିଥିଲେ । ଏପରି ଆଘାତ ଫଳରେ ସ୍ନାୟୁମଣ୍ଡଳ ମଧ୍ୟସ୍ଥ ଶକ୍ତି ଉଦ୍‌ଜୀବିତ ହୋଇ, ପ୍ରାୟ ଘଣ୍ଟାକ ମଧ୍ୟରେ ମୋର ଚେତନା ଫେରି ଆସିଥିଲା । ମୁଁ ଚେଣିକ ଅନୁଭବ କଲି, ଯେପରି ମୋର ପୂର୍ବ ଅହଂତ୍ୱ ବା ଅଭିମାନ ଆଉ ନାହିଁ । ଲୋକଲଜ୍ଜାବୋଧ କେଉଁଆଡ଼େ ଉଭେଇ-ଯାଇଛି । ମନର କେଉଁ ଏକ ଅଜ୍ଞାତ କେନ୍ଦ୍ରରୁ ଅପାର ଆନନ୍ଦର ସ୍ରୋତ ଛୁଟିଛି ଓ ମୋତେ କ୍ରମଶଃ ଉନ୍ମତ୍ତ କରି ତୋଳୁଛି । ମୋର ଲକ୍ଷ୍ୟ ବହିସ୍ଥ ଜାଗତିକ ବସ୍ତୁଠାରୁ ଫେରିଯାଇ ସୂକ୍ଷ୍ମ ଅନ୍ତର୍ଜଗତରେ ଫୁଟି ଉଠିଥିବା ମାତୃମୂର୍ତ୍ତି ଉପରେ କେନ୍ଦ୍ରୀଭୂତ ହୋଇଯାଇଛି । ଏତେବେଳେ ହଠାତ୍ ଖିଆଲ ଉଠିଲା ଯେ, 'ଠିକ୍ ତ, ମାଙ୍କର ପୂଜା କରିବାକୁ ହେବ, ଆଉ ବିଳମ୍ବ କଲେ ଚଳିବ କିପରି ?' ସଙ୍ଗେ ସଙ୍ଗେ ସ୍ନାନ କରିବା ପାଇଁ ପୁଷ୍କରିଣୀ ଆଡ଼କୁ ଅଗେଇଗଲି ।

## ସଂଶୟ ଦୂର ହେଲା

ସ୍ନାନ କରିବା ଆଗରୁ ପୁଣି ମନରେ ଚିନ୍ତା ଆସିଲା, ମୁଁ ଭୁଲ ବାଟରେ ଯାଉନାହିଁ ତ ? ଏ ସବୁ ଆଉ ଭୌତିକ କାଣ୍ଡ ନୁହେଁ ତ ? ଯଦି ପ୍ରକୃତରେ ଜଗନ୍ମାତା ଆଦ୍ୟାଶକ୍ତି ଏପରି ଲୀଳା କରୁଥାଆନ୍ତି, ତେବେ ସେ ତ ସବୁ ଅବସ୍ଥାରେ ମୋତେ ରକ୍ଷାକରିବେ । ବର୍ତ୍ତମାନ ମୁଁ ଏହି ପୋଖରୀରେ ବୁଡ଼ି ମରିବାକୁ ଚେଷ୍ଟା କରିବି । ଯଦି ମରିଯାଏ ତେବେ ତାଙ୍କର ପୂଜା ଆଉ କିଏ କରିବ ? ଫଳତଃ ମୋର ପ୍ରତିଜ୍ଞାରେ ଅଟଳ ରହିବି । ଅନ୍ୟ ପକ୍ଷରେ ଯଦି ମୁଁ ନ ମରି ବଂଚିଯାଏ ତେବେ ମା'ଙ୍କର ମହିମା ତଥା ଦୈବୀ ଘଟଣାର ସତ୍ୟତା ପ୍ରମାଣିତ ହେବ । ଏହିପରି ଭାବି ଭାବି ଦେଖିଲି ଗାଧୁଆ ଘାଟଠାରେ ଗୋଟିଏ ପଥର ପଡ଼ିଛି । ସେହି ପଥରଟିକୁ ଗାମୁଛା ସାହାଯ୍ୟରେ ଛାତିରେ ବାନ୍ଧି ପାଣି ଭିତରେ ପ୍ରବେଶ କଲି ଓ ପଦ୍ମାସନ ବନ୍ଧରେ ପାଦକୁ ଛନ୍ଦିଦେଇ ବୁଡ଼ିବାକୁ ଚେଷ୍ଟାକଲି ।

ଯେତେ ଚେଷ୍ଟା କଲେ କଲେହେଁ ମୋର ମୁଣ୍ଡଟି ପାଣି ବାହାରେ ରହିଲା, ପୋଖରୀ ଭିତରର ଗଭୀର ଜଳରେ ପଶି ମଧ୍ୟ ବୁଡ଼ି ପାରିଲି ନାହିଁ । ପଥର ସହ ମୋ ଦେହଟି ପାଣିରେ ଭାସିଲା ପରି ମନେ ହେଲା । ପୁଣି ସେହି ମାତୃମୂର୍ତ୍ତି ମନ ଭିତରେ ଭାସି ଉଠିଲା । ସେ ଯେପରି ମୋ କାନେ କାନେ କହି ଦେଲେ "ଅରେ, ମୁଁ ନ ମାରିଲେ କଣ କେହି ମରିପାରେ ? ତେଣୁ ଆଉ ବୃଥା ଚେଷ୍ଟା କାହିଁକି ?" ଏହି ଘଟଣା ମୋ ମନରୁ ସମସ୍ତ ଅବିଶ୍ୱାସ ଦୂର କରିଦେଲା ।

## ପାଦ ପୂଜାର ପ୍ରସାଦ

ସଙ୍ଗେ ସଙ୍ଗେ ମାଈଁଙ୍କୁ ପୂଜା କରିବା ପାଇଁ ମନ ଆନ୍ଦୋଳିତ ହୋଇ ଉଠିଲା । ସେ ପୋଖରୀରେ ଫୁଟିଥିବା ଗୋଟିଏ ପଦ୍ମଫୁଲ ତୋଳି ଆଣିଲି ଏବଂ ଏକରକମ, ଏକ ଭାବରେ କେଉଁ ଆଡ଼କୁ ନ ଚାହିଁ ଘରକୁ ଫେରିଆସି ଫୁଲଟି ମାଈଁଙ୍କ ପାଦ ଉପରେ ରଖି ପ୍ରଣାମ କଲି । ଏପରି କରିବା ପରେ ପରେ ମୁଁ ମୋର ଅନ୍ତଃସ୍ଥଳରେ ମାଙ୍କୁ ଅଧିକ ସ୍ପଷ୍ଟତର ତଥା ଚିନ୍ମୟୀରୂପରେ ଦେଖିବାକୁ ଲାଗିଲି । ମୋର ମନେ ହେଲା, ସେ ଯେପରି କୃପା ପରବଶ ହୋଇ ମୋ ଦେହାନ୍ତର୍ବର୍ତ୍ତୀ ଶୂନ୍ୟଗାମୀ ମାର୍ଗକୁ ଉନ୍ମୁକ୍ତ କରିଦେଇଛନ୍ତି । ସେତେବେଳେ ତାଙ୍କ ସହଚର୍ଯ୍ୟ ମୋତେ ଅପରିସୀମ ଆନନ୍ଦ ପ୍ରଦାନ କରୁଥାଏ । ତେଣୁ ମୁଁ ତାଙ୍କୁ ନିବେଦନ କଲି, "ମା, ମୁଁ ଆପଣଙ୍କ ଠାରୁ ଏକ ମୁହୂର୍ତ୍ତ ମଧ୍ୟ ବିଚ୍ଛିନ୍ନ ହେବାକୁ ଚାହେଁ ନା, ମୋତେ ଆପଣ ସବୁବେଳେ ପାଖେ ପାଖେ ରଖିଥାଆନ୍ତୁ ।" ସେ ମୋର ହାତ ଧରି ସାଙ୍ଗରେ ନେଲେ ଓ ପ୍ରତି ଚକ୍ରରେ ପ୍ରବେଶ କରି ବୁଲିବାକୁ ଲାଗିଲେ । ମୁଁ ମଧ୍ୟ ତାଙ୍କ ସଙ୍ଗେ ଊର୍ଦ୍ଧ୍ୱଗାମୀ ହୋଇ ବ୍ରହ୍ମରନ୍ଧ୍ର ପାର ହେବାକୁ ବସିଲି । ମୋର ବାହ୍ୟ ଦେହଜ୍ଞାନ ଶୂନ୍ୟ ହୋଇଯାଉଥାଏ । କିନ୍ତୁ ମାଈଁ କେତେ ରକମ କ୍ରିୟା କୌଶଳ ଅନୁଷ୍ଠାନଦ୍ୱାରା ମୋତେ ପୁଣି ସେହି ଦେହ ମଧ୍ୟକୁ ଫେରାଇ ଆଣୁଥାନ୍ତି । ସେତେବେଳେ ମୋର ଶିବତ୍ୱସ୍ମୃତି ଅର୍ଥାତ୍ 'ମୁଁହିଁ ଶିବ,' ଏହିପରି ଭାବ ଜାଗ୍ରତ ହୋଇ

ଆନନ୍ଦ ମାତ୍ର ଅବଶେଷ ରହିଲା । କେବେ କେବେ ଉନ୍ମତ୍ତ ହୋଇ ନାଚିବାକୁ ଲାଗିଲି, ପୁଣି କେତେବେଳେ ବା ଶରୀର ଭଲ ଉପଗ୍ରହରେ ଛୁଟାଛୁଟି କରୁଥିଲି । ମନେ ହେଉଥିଲା ଯେପରି ମୁଁ ପୃଥିବୀଟାକୁ ଓଲଟାଇ ଦେବି—ସ୍ୱର୍ଗ ମର୍ତ୍ତ୍ୟ ଏକାକାର କରି ଦେବି । ମାଈଁ ମୋତେ ଧରି ବାରମ୍ବାର ଶାନ୍ତ କରାଇବାରେ ଲାଗିଥାନ୍ତି । ତେଣିକି ମୋ ପାଖରେ ଦିନ ରାତିର ଭେଦାଭେଦ ଜ୍ଞାନ ବଦୂରିତ ହୋଇଗଲା । ସ୍ୱୟଂ ମା ସବୁବେଳେ ମୋ ସାଙ୍ଗରେ ରହି ଆନନ୍ଦ ଦେବାକୁ ଲାଗିଲେ । ମୋତେ ସୁଧାଧାର ପ୍ରଦାନ କରୁ କରୁ ସର୍ବାଙ୍ଗ ସୁଧାପୂର୍ଣ୍ଣ ହୋଇଗଲା । ସୁଧା ସେବନ କରି କରି ମୋର ଖଣ୍ଡ ଗୋଟିକ ପୂରି ଗଲା । କ୍ଷୁଧାତୃଷାର ଲେଶ ମାତ୍ର ରହିଲା ନାହିଁ, ମୁଁ ଏକରସ ଓ ଏକଭାବରେ ରହିଲି ।

ପରଦିନ ମାଈଁ ମୋତେ ପୋଖରୀକୁ ନେଇଗଲେ । ପୋଖରୀ ଭିତରେ ପଶି ମନ୍ତ୍ର ଓ ଜଳରେ ବୁଡ଼ିବାର କୌଶଳ ପ୍ରଦାନ କଲେ । ବେକବୁଡ଼ା ପାଣିରେ ମୋ ହାତକୁ ଧରି ପାଣିରେ ବୁଡ଼ିଲେ । ଦୁଇଜଣ ଜଳରେ ବୁଡ଼ି ରହିଥାଉ । ଆଉ ଉଠିବାକୁ ଇଚ୍ଛା ହେଉ ନଥାଏ । ମନେହେଲା ଯେ ଜଳ ଭିତରେ ମା ଅଛନ୍ତି ଓ ମାଙ୍କ କୋଳରେ ମୁଁ ବସି ମନ୍ତ୍ର ଜପ କରିବାରେ ଲାଗିଛି । ଏପରି କେତେ ସମୟ ଭାବୋନ୍ମାଦ ମଧ୍ୟରେ ରହିଗଲି । ଜଳ ଭିତରୁ ଉଠିବା ପରେ ସେ କହିଲେ, ଆଜି ତୋତେ ସନ୍ନ୍ୟାସ ଦେଲି ଓ ତୋର ନାମ ରଖିଲି 'ଯୋଗାନନ୍ଦ' ।" ସନ୍ନ୍ୟାସୀ ହେବା ପରେ ମୋର ଆଉ ଜାତି ବର୍ଣ୍ଣର ଲୋପ ହେବାରୁ ମୋର ଉପବୀତ ଜଳରେ ବିସର୍ଜନ କରିଦେଲି । ସେ କିନ୍ତୁ ଉପବୀତଟି ଉଠାଇ ଆଣି ମୋ ଗଳାରେ ଲମ୍ବାଇ ଦେଲେ ଓ ମୋ ହାତ ଧରି ଘରକୁ ଫେରାଇ ଆଣିଲେ ।

ମାଈଁ ପୁଣି ମୋତେ କହିଲେ, "ତୁମେ ଯାଇ ବାରଜଣଙ୍କ ଘରୁ ଜଳ ଭିକ୍ଷା କରି ଆଣ । ଏହା କହି ଗୋଟିଏ ଢାଳ ମୋ ହାତରେ ଦେଲେ । ମୁଁ ସେତି ଧରି ଭାବାବେଗରେ ମାତାଲଙ୍କ ପରି ଉଦ୍ଦ ଗୃହେ ଘରୁ ଜଳଭିକ୍ଷା ଆଣି ସାରିବା ପରେ ଦିଗ ନିର୍ଣ୍ଣୟ କରିପାରିଲି ନାହିଁ । ଏହି ସମୟରେ

ମାଉଁ ଆସି ମୋର ହାତ ଧରି କହିଲେ, 'ଆଉ ଦରକାର ନାହିଁ, ତୁମେ ଏଥର ଘରକୁ ଚାଲ ।' ତା' ପରଦିନ ପୁଣି ଅନ୍ନ ଭିକ୍ଷା କରିବା ପାଇଁ ଆଦେଶ ଦେଲେ । ଗୋଟିଏ ଝୋଲି ହାତରେ ନେଇ ଗଲି । ସାତ ଆଠ ଘର ବୁଲି ସାରିବା ପରେ ମାଉଁ ଆସି ମୋତେ ଘରକୁ ଫେରାଇ ନେଲେ । ଏହି କେତୋଟି ଦିନ ଅନବରତ ଭାବାବେଶ ମଧ୍ୟରେ ଦିନ କଟିବାକୁ ଲାଗିଲା । ମୁଁ କି ଅପୂର୍ବ ଆନନ୍ଦର ପରିବେଶ ମଧ୍ୟରେ ରହୁଥିଲି ତାହା ଭାଷାରେ ଫୁଟାଇବା କଷ୍ଟକର । ପ୍ରତି ମୁହୂର୍ତ୍ତରେ ମାଙ୍କର ସାନ୍ନିଧ୍ୟ ପାଉଥିଲି ଓ ମୋ ଶରୀର ସବୁବେଳେ କମ୍ପୁଥିଲା । ଏପରି ଭାବେ ସାତଦିନ ଅତିବାହିତ ହେଲା ।

---

# ଅଷ୍ଟମ ଅଧ୍ୟାୟ

## ଘୂର୍ଣ୍ଣୀ

### ପୁଣି ସଂଶୟର ଉନ୍ମେଷ

କିନ୍ତୁ ସେଥରକ ଗାଡ଼ିରେ ପୁଣି ମୋର ସେଇ ପୂର୍ବ ସଂଶୟ ଉପସ୍ଥିତ ହେଲା—ଏ ସବୁ ଭୌତିକ କାଣ୍ଡ ନୁହେଁ ତ ? ବିଚାରିଲି କୌଣସି ସାଧୁଙ୍କ ସଙ୍ଗେ ଆଲୋଚନା କରି ଏହାର ସାମଞ୍ଜସ୍ୟ କରି ନେଲେ ଭଲ ହୁଅନ୍ତା । ମୁଁ ଯେଉଁ ପଥରେ ଚାଲିଛି ତାହା ସତ୍ୟ ନା ଭୌତିକ ?—ଏହା ନିରୂପଣ କରିବାର ଉପାୟ କଣ ? ମାଈଙ୍କୁ ତ ସମସ୍ତେ ପାଗଳ ବୋଲି କହୁଛନ୍ତି । ଏବେ ଆମେ ଦୁହେଁ ସେହି ଆଖ୍ୟା ପାଇବୁ । ମୋ'ମନରେ ଏପରି ବିଚାର ଜାଗିବା ମାତ୍ରେ ମାଈଁ କେଜାଣି କିପରି ମୋ ମନକଥା ଜାଣି-ପାରିଲେ । ମୋତେ ବନ୍ଦସ୍କାର କରିବାପାଇଁ କହିଲେ, "ତୁ ଏଠାରୁ ଶୀଘ୍ର ବାହାରିଯା, ଯେଉଁଠି ସାଧୁ ପାଇବୁ ସେଠାରେ ଆଲୋଚନା କରି ସଂଶୟ ନିରସନ କରି ଆସିବୁ ।" ତାଙ୍କଠାରୁ ବିଦାୟ ହୋଇ ମୁଁ ଏକ ଭାବ ଓ ଲକ୍ଷରେ ମୋ ଜନ୍ମଗ୍ରାମ ଲଧୁଡ଼ୁକା ଉଦ୍ଦେଶ୍ୟରେ ଯାତ୍ରା କଲି । ଅପରାହ୍ନ ପ୍ରାୟ ଚାରିଟାବେଳେ ଘରେ ଯାଇ ପହଞ୍ଚିଲି । ମୋତେ ଦେଖି ସମସ୍ତେ ପାଗଳ ବୋଲି କହିଲେ । ଆତ୍ମୀୟମାନଙ୍କର ଏପରି ମନ୍ତବ୍ୟ ଶୁଣି ମୋତେ ଭାରି ରାଗ ଲାଗୁଥିଲା । ତାପରେ ମୁଁ ମୋର ଜଣେ ମାଉସୀଙ୍କ ଘରକୁ ଗଲି । ମାଉସୀ ପୁଅ ଭାଇ ମୁରଲୀ (ଶ୍ରୀମୁରଲୀମୋହନ ଗୋସ୍ୱାମୀ) ମୋତେ ଦେଖି ଖୁବ୍ ଆନନ୍ଦିତ ହେଲା । ସେ ମୋତେ ଲକ୍ଷ୍ୟ କରି ଉପସ୍ଥିତ ସମସ୍ତଙ୍କୁ କହିଲା ଯେ, ଭଗବାନ କାହା ଉପରେ କିପରି କୃପା କରନ୍ତି ତା'ର

କଲନା କଏ ବା କରିବ ? ବଡ଼ ରହସ୍ୟମୟ ତାଙ୍କ ମହିମା ! ତାଙ୍କୁ ଲାଭ କରି ମନୁଷ୍ୟ ଯେଉଁ ଆନନ୍ଦ ପାଏ, ତାର ବହିଃ ପ୍ରକାଶକୁ ଆମେମାନେ ଈଶ୍ୱରୋନ୍ମାଦ ବୋଲି କହିଥାଉ । ଏପରିଭାବେ ଅଭିଭୂତ ହୋଇ ଭକ୍ତ ନାଚେ, ହସେ ଓ ବେଳେ ବେଳେ ଆନନ୍ଦାଶ୍ରୁ ମୋଚନ କରେ । ପୁଲକ ଓ ରୋମୋଦ୍‌ଗମ ଆଦି ଅଷ୍ଟ ସାତ୍ତ୍ୱିକ ବିକାର ଶରୀରରେ ପ୍ରକାଶ ପାଏ । ଆଜି ଭୋଳାବାବାଙ୍କର ଏହି ଯେଉଁ ପରିବର୍ତ୍ତନ ଦେଖାଯାଉଛି ତା'ର ରହସ୍ୟ ଭେଦ କରିବା ଈଶ୍ୱରବିଶ୍ୱାସୀ ଆସ୍ତିକ ଭକ୍ତ ବ୍ୟତୀତ ଅନ୍ୟର ସାଧ୍ୟାତୀତ । ଏହିପରି ଆଲୋଚନା ଶୁଣି ମୋ ମନରେ ବିଶେଷ ଆନନ୍ଦ ହେଲା ।

## ଅପରିମିତ ଭୋଜନ

ଆଳାପ ଶେଷରେ ମୁରବି ମୋତେ କହିଲେ, "ଆଜି ରାତିରେ ତୁମେ ଆମ ଏଠାରେ ଭୋଜନ କରିବ ।" ମୁଁ କହିଲି, "ଦେଖ, ଆଜିକୁ ସାତଦିନ ହେବ ମୁଁ ଅଭୁକ୍ତ ଅଛି । ତୁମେ ମୋତେ ପେଟ ପୂରାଇ ଖାଇବାକୁ ଦେଇପାରିବତ ।" ଭାଇ କହିଲେ, "ଯେତେ ଗ୍ରହିବ ସେତେ ଖାଇବ । ତହିଁରେ ସଙ୍କୋଚ କାହିଁକି ? ଆମମାନଙ୍କ ପାଇଁ ବୋଧହୁଏ ୪ ସେର ଓଜନର ଗୋଟିଏ ମାଛ କିଣା ହୋଇ ଆସିଲା । ପାକ ଇତ୍ୟାଦି ଶେଷରେ ପ୍ରଥମେ କେବଳ ମୋ ପାଇଁ ଆସନ ଦିଆଗଲା । ମୁଁ ଭାଇକୁ କହିଲି ଯେ, ଏକାବେଳେ ସମସ୍ତେ ଖାଇବାକୁ ବସ । ତା ନୋହିଲେ ଆଉ କିଛି ଖାଦ୍ୟ ପଦାର୍ଥ ଅବଶିଷ୍ଟ ରହିବ ନାହିଁ । ତାଙ୍କ ଘରେ ସାତ ଆଠ ଜଣଙ୍କ ପାଇଁ ରନ୍ଧା ହୋଇଥାଏ । ସମସ୍ତେ ମୋ କଥା ଶୁଣି ହସିବାକୁ ଲାଗିଲେ । ମୋତେ ମୁରବି କହିଲେ, 'ତୁମେ ଯେତେ ପାରୁଛ ଖାଅ ।' ମୁଁ ତାପରେ ଖାଇବାକୁ ଆରମ୍ଭ କରିଦେଲି । ମୋର ମନେ ହେଲା ମୁଁ ଏକା ଖାଉ ନାହିଁ, ମା ଯେପରି ମୋ ସାଙ୍ଗରେ ଆସି ଖାଉଛନ୍ତି । ଯେତେ ଖାଦ୍ୟ ଦିଆଗଲା ସମସ୍ତ ଖାଇ ଶେଷ କରିଦେଲି । ତାଙ୍କ ଘରେ ଯାହା ରନ୍ଧା ହୋଇଥିଲା ସେ ସବୁ ମୋ ପାଇଁ ନିଅଣ୍ଟ ହେଲା । ତାପରେ ମୁଁ କହିଲି "କିଛି ମୁଢ଼ି ଥିଲେ ଖାଇବାକୁ ଦିଅ, ଏବେ ବି ମୋର କ୍ଷୁଧା ନିବୃତ୍ତ

ହୋଇନାହିଁ ।” ସମସ୍ତେ ଏ ଘଟଣାରେ ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ମୋ ପେଟ ତଥାପି ପୂରିଲା ଭଳି ଦେଖାଯାଉନଥିଲା । ଖାଇବା ଆଗରୁ ଯେପରି ଥାଏ ଠିକ୍ ସେପରି ଖାଲି ଥିଲା । ମୁଁ କହିଲି, “ମୋତେ ଏବେ ଯେତେ ଖାଇବାକୁ ଦେବ ମୁଁ ସେତେ ଖାଇପାରିବି ।” ତାପରେ ମୋର ମଉସିଆ ଭାଇନା ଆସି କହିଲେ, “ଏଥର ଆମ ଘରକୁ ଚାଲ ଯିବା, ସେଠାରେ ଖୁବ୍ ଖାଇବାକୁ ଅଛି ।” ମାଉସୀଙ୍କ ଘରେ ଭୋଜନ ପର୍ବ ଶେଷ କରି ଭାଇନାଙ୍କ ଘରକୁ ଆସିଲି ; ଭାଇନା ସମସ୍ତଙ୍କୁ ସାବଧାନ କରାଇ କହିଲେ, “ଦେଖ, ପିଲାକୁ କେହି ଯେପରି ପାଗଳ ନ କୁହନ୍ତୁ !” ତାଙ୍କ ଘରେ ରାତିଟି କଟାଇ ସକାଳୁ ସକାଳୁ ବାଗାଲିଆ ରେଳ ଷ୍ଟେସନକୁ ଗଲି । ଟ୍ରେନ୍‌ରେ ଚଢ଼ି ଗଡ଼ବେତା ପହଞ୍ଚିଲି । ଏଠାରେ ଜଣେ ଗୁରୁଭାଇ ରହୁଥାନ୍ତି । ସେ ମୋର ଖୁବ୍ ଆଦର ଯତ୍ନ କଲେ ।

## * କୁତବପୁର ଯାତ୍ରା

ଭୋଜନ କରିସାରି ଅପରାହ୍ନରେ ଖଡ଼କୁସମା ଆଶ୍ରମକୁ ଚଲି । ଆଶ୍ରମରେ ମଧ୍ୟ ସମସ୍ତେ ମୋତେ ପାଗଳ ବୋଲି କହିଲେ । ମୁଁ ଠିକ୍ ବୁଝିପାରୁନଥିଲି । ସେମାନେ ମୋ ସଙ୍ଗେ ଧର୍ମାଲୋଚନା ନ କରି ମୋତେ ପାଗଳ କାହିଁକି କହୁଥିଲେ ? ମୁଁ ସେତେବେଳେ ଅନେକ ସମୟ ଧରି ପାଣିରେ ବୁଡ଼ି ରହୁଥାଏ । ମାଉଁଙ୍କଠାରୁ ଥରେ ମାତ୍ର ଜଳରେ ବୁଡ଼ିବା କୌଶଳ ଶିକ୍ଷା କରିଥିଲେହେଁ ସ୍ୱାଭାବିକ ଭାବେ ମୋର ତହିଁରେ ପ୍ରବୃତ୍ତି ବଢ଼ିବାକୁ ଲାଗିଲା ଓ ଖୁବ୍ କମ ଅଭ୍ୟାସରେ ଅନେକ ସମୟ ଧରି ଜଳମଗ୍ନ ହୋଇ ରହିପାରୁଥିଲି । ଏହା ମୋର ଜନ୍ମାନ୍ତରୀଣ ସଂସ୍କାର ହୋଇଥିବା ସମ୍ଭବପର । ମୋର ଏହିସବୁ କାର୍ଯ୍ୟକଳାପ ଦେଖି ଆଶ୍ରମସ୍ଥ ସାଧୁ ବ୍ରହ୍ମଚାରୀମାନେ ମୋ ସମ୍ପର୍କରେ ବିଚିତ୍ର ଧାରଣା ପୋଷଣ କଲେ । ସାଧନ ତତ୍ତ୍ୱ ଆଲୋଚନା ତ ଦୂରର କଥା, କାହାରିଠାରୁ ସହାନୁଭୂତିସୂଚକ ପଦେ କଥା ଶୁଣାଗଲା ନାହିଁ । ଦୁଇଦିନ ପରେ ଝୁଲଣ ପୂର୍ଣ୍ଣିମା ହେବାକୁ ଥାଏ ।

* ମୋର ଗୁରୁଦେବ ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦଙ୍କ ଜନ୍ମସ୍ଥାନ ।

ଏହି ଅବସରରେ କୁଜଙ୍ଗପୁର ଗୁରୁ ଧାମରେ ପ୍ରତିବର୍ଷ ଗୁରୁଦେବଙ୍କ ଜନ୍ମୋତ୍ସବ ପାଳିତ ହୁଏ । କାଳେ ସଦାନନ୍ଦ ମହାରାଜ ଏହି ଉତ୍ସବ ଉପଲକ୍ଷେ ଆସିଥିବେ ଏବଂ ତାଙ୍କ ସଙ୍ଗେ ସାକ୍ଷାତ ଆଲୋଚନା କଲେ ସଂଶୟ ଦୂର ହେବ, ଏଇ ଚିନ୍ତା କରି ଯାହା ଟଙ୍କା ଯୋଗାଡ଼ କରିବା ପାଇଁ ମାଣିକପଡ଼ାର ପାଲଙ୍କ ଘରକୁ ଗଲି । ସେତେବେଳେ ମୋ ପାଖକୁ ଲୋକେ ଆସିବାକୁ ଭୟ ପାଉଥାନ୍ତି । କିନ୍ତୁ ପାଲଙ୍କ ଘରେ ସମସ୍ତେ ମୋତେ ଶ୍ରଦ୍ଧା କଲେ । ସେଠାରେ ଗୋଟିଏ ଦିନ ରହି କଲିକତା ଗଲି । ପାଲଙ୍କ ଦୋକାନଗଦି ବସାରେ ରହିଲି । ବାଗ ବଜାରର କେତେ ଜଣ ଗୁରୁ ଭାଇଙ୍କ ସଙ୍ଗେ ଦେଖାହେଲା । ସେମାନେ ଖୁବ୍ ଆନନ୍ଦିତ ହେଲେ ଓ କୁଜଙ୍ଗପୁର ଯିବା ପାଇଁ ଗାଡ଼ି ଭଡ଼ା ଯୋଗାଡ଼ କରିଦେଲେ । ଚୂଆଡ଼ାଙ୍ଗା ଷ୍ଟେସନଠାରୁ କୁଜଙ୍ଗପୁର ଯିବାକୁ ହୁଏ । ଷ୍ଟେସନରେ ପହଞ୍ଚି ଦେଖିଲି ଯେ ଦୁଇଜଣ ପରିଚିତ ସତୀର୍ଥ (ସନ୍ନ୍ୟାସୀ) ଗାଡ଼ିରୁ ଓହ୍ଲାଇଲେ । ସେମାନେ କୁଲି ଦରକାର କଲେ । କିନ୍ତୁ ସେଠାରେ କେହି କୁଲି ନ ଥାନ୍ତି । ମୁଁ ତାଙ୍କ ପାଖକୁ ଯାଇ କହିଲି ମୋତେ ଆପଣଙ୍କର ଜିନିଷ ଦିଅନ୍ତୁ ମୁଁ ନେଇ ବସରେ ଚଢ଼ାଇଦେବି । ଏହା କହି ତାଙ୍କଠାରୁ ସୁଟ୍‌କେଶଟି ନେଇ ବସରେ ଉଠାଇଦେଲି । ସେମାନଙ୍କ ସଙ୍ଗେ ମୁଁ ମଧ୍ୟ ବସରେ ଚଢ଼ିଲି । ପ୍ରବୀଣ ସନ୍ନ୍ୟାସୀ ଜଣକ ପଚାରିଲେ, "ତୁମର ବସ୍ ଭଡ଼ା କିଏ ଦେବ ?" ମୁଁ କହିଲି, "ମାଲିକ ଦେବେ । ଆପଣଙ୍କୁ ଚିନ୍ତା କରିବାକୁ ହେବନି ।" ସେ ଆଉ କିଛି ନ କହି ତୁନି ରହିଲେ । ଆମେମାନେ ସିହରପୁରଠାରେ ଓହ୍ଲାଇଲୁ । ଗାଡ଼ି କଣ୍ଡକ୍ଟର ମୋ ଠାରୁ ଭଡ଼ା ଚାହିଁବାରୁ ମୁଁ ସନ୍ନ୍ୟାସୀ ମାଲିକଙ୍କ ଆଡ଼କୁ ଦେଖାଇଦେଲି । ସନ୍ନ୍ୟାସୀ ମହାରାଜ ମୋ ବ୍ୟବହାରରେ ଖୁବ୍ ବିରକ୍ତି ଭାବ ପ୍ରକାଶ କଲେ । ମୁଁ ଯୁକ୍ତି କଲି, "ଆପଣଙ୍କର ସୁଟ୍‌କେଶ ବୋହି ଆଣିଲା ବେଳେ ଆପଣ ମୋର ମାଲିକାନା ଭାବିନାହାନ୍ତି ?" ଏହା ଶୁଣି ସେ ନିତାନ୍ତ ଅନିଚ୍ଛାକୃତ ଭାବରେ ମୋ ପାଇଁ ଗାଡ଼ିଭଡ଼ା ଦେଲେ । ରାଗରେ ମୋତେ ଆଉ କଥା କହୁନଥାନ୍ତି । ମୋତେ ସେତେବେଳକୁ ଖୁବ୍ କ୍ଷୁଧା ଲାଗୁଥାଏ । ମୁଁ କହିଲି, "ମହାରାଜ, ମୋତେ ଖୁବ୍ କ୍ଷୁଧା ଲାଗୁଛି, ଆପଣଙ୍କ ଅନୁମତି ହେଲେ ପାଖ ଦୋକାନରୁ କିଛି ମିଠା ଆଣି ଆସନ୍ତି ।" ସେ କହିଲେ, "ନା,

ଦରକାର ନାହିଁ ।" ମୁଁ କିନ୍ତୁ ତାଙ୍କ ନିଷେଧ ନ ମାନି ମିଠାଇ ଦୋକାନକୁ ଗଲି ଓ ହେରେ ମିଠାଇ ଧରି କହିଲି, "ଏଇ ମହାରାଜଙ୍କ ପାଖକୁ ଆସ, ପଇସା ନେବ ।" ଏହା କହି ମିଠେଇ ନେଇ ଆସିଲି ଓ ମହାରାଜମାନଙ୍କୁ ମିଠାଇ ଖାଇବା ପାଇଁ ଅନେକ ଅନୁରୋଧ କରି କହିଲି । କିନ୍ତୁ କେହି ଖାଇବାକୁ ଚାହିଁଲେନି । ତେଣୁ ମୁଁ ସମସ୍ତ ମିଠାଇ ଏକା ଏକା ଖାଇଦେଲି । ଦୋକାନୀ ଆସି ପଇସା ଚାହିଁବାରୁ ମୁଁ ମହାରାଜଙ୍କ ଆଡ଼କୁ ଦେଖାଇ-ଦେଲି । ସାଧୁ ଦୁଇଜଣ ରାଗରେ ଅଗ୍ନିଶର୍ମା ହୋଇଗଲେ । ଅସମ୍ମାନ ରକ୍ଷାକରିବା ଲାଗି ମହାରାଜ ମିଠାଇର ମୂଲ୍ୟ ଦେବାକୁ ବାଧ୍ୟ ହେଲେ ।

## ନୌକା ବିଳାସ

ଏତେବେଳକୁ ଘାଟରେ ନୌକା ଆସି ପହଞ୍ଚିଗଲା । ଆମେ ତହିଁରେ ଯାଇ ବସିଲୁ । କେତେ ଦୂର ଯିବା ପରେ ଝଡ଼ ବତାସର ପାଗ ଦେଖି ନାବିକ ନୌକାର ପାଲଟିକୁ ନୁଆଁଉଛି, ଏତିକିବେଳେ ବାୟୁର ବେଗ ହଠାତ୍ ବଢ଼ିଯାଇ ନୌକାଟି ଘୂରିବାକୁ ଲାଗିବାରୁ ମହାବିପଦ ଉପସ୍ଥିତ ହେଲା । ଦେଖୁଁ ଦେଖୁଁ ନୌକାଟି ବୁଡ଼ିବାକୁ ବସିଲାଣି । ମହାରାଜ ଏବେ ଆଉ ଯାଆନ୍ତୁ କୁଆଡ଼େ ? ତାଙ୍କ ମୁହଁର ଭାବ ଲକ୍ଷ୍ୟ କରି ଦେଖିଲି ଅନ୍ୟମାନଙ୍କ ଭଳି ସେ ମଧ୍ୟ ଭୟରେ ଖୁବ୍ ଅସ୍ଥିର ଦେଖାଯାଉଥାନ୍ତି । ମୁଁ କହିଲି, "ମୋତେ ଆଦେଶ ଦେଲେ ମୁଁ ସଙ୍ଗେ ସଙ୍ଗେ ନୌକାକୁ ସ୍ଥିର କରିଦିଅନ୍ତି ।" ମହାରାଜ ସଙ୍ଗେ ସଙ୍ଗେ କହିଲେ, "ଦେଖ ଭାଇ, କୌଣସି ଉପାୟ ଥାଏ ତ କର ।" ମୁଁ ହସି ହସି ନାବିକକୁ ଏକ ଚାପୁଡ଼ା ମାରିଲି ଓ ପାଲର ଦଉଡ଼ିଟାକୁ ଟାଣି ଫସାଇଦେଲି । ପାଲଟି ପଡ଼ିଯିବାରୁ ନୌକାଟି ସଙ୍ଗେ ସଙ୍ଗେ ସ୍ଥିର ହୋଇଗଲା । ସମସ୍ତଙ୍କର ପ୍ରାଣ ରକ୍ଷା ହେଲା । ତାପରେ ନୌକା ଭିତରେ ଜମିଥିବା ପାଣି ବାହାରକୁ ଫୋପାଡ଼ିବା କାମରେ ସାହାଯ୍ୟ କଲି । ଅପରାହ୍ନ ପ୍ରାୟ ପାଞ୍ଚଟା ବେଳେ ଗୁରୁଧାମରେ ସମସ୍ତେ ପହଞ୍ଚିଲୁ । ସେଠାରେ ସମସ୍ତଙ୍କ ସଙ୍ଗେ ଖୁବ୍ ଆନନ୍ଦ ମନରେ ସାକ୍ଷାତ କଲି ଓ ରାତ୍ରରେ ପ୍ରସାଦ ପାଇଲି । ଠାକୁରଙ୍କ ଜନ୍ମୋତ୍ସବ ପାଇଁ ବିରାଟ ଆୟୋଜନ ହେଉଥାଏ ।

ଝୁଲଣ ପୂର୍ଣ୍ଣିମା ଦିନ ଠାକୁରଙ୍କ ଆସନ ସମ୍ମୁଖରେ ପୂଜା, ହୋମ, ଭୋଗ, ଆରତି ଇତ୍ୟାଦି ହେଲା ଓ ମହାରାଜମାନଙ୍କୁ ଭୋଗ ଦର୍ଶନ କରିବାକୁ ଡ଼କାଗଲା । ମୁଁ ମଧ୍ୟ ସେମାନଙ୍କ ସଙ୍ଗେ ଯାଇ ଭୋଗ ଦର୍ଶନ କଲି ।

## ଭୋଗ ଦର୍ଶନ

ଠାକୁରଙ୍କ ଭୋଗ ପାଇଁ ଗୋଟା-ଖାସିର ଖେଚେଡ଼ି ନିବେଦନ କରାଯାଇଥାଏ । ଜେଠନୈକ ପ୍ରବୀଣ ସନ୍ନ୍ୟାସୀ ଆପତ୍ତି ଉଠାଇ କହିଲେ, "ଏ କ'ଣ ? ଯେଉଁ ଉତ୍ସବ ପାଇଁ ହଜାରେ ବାରଶ ଟଙ୍କା ଆଦାୟ ହୋଇଛି ସେଥିରେ ଠାକୁରଙ୍କ ଭୋଗପାଇଁ ଗୋଟାଖାସିର ଖେଚେଡ଼ି ଦେବା ନିତାନ୍ତ ଅସଙ୍ଗତ ।" ଏହା କହି ସେ ଖୁବ୍ ରାଗିଗଲେ । ଏ ବିଷୟରେ କିଛି ସମୟ ଖୁବ୍ ଆନ୍ଦୋଳନ ଚାଲିଲା । ସେ ସନ୍ନ୍ୟାସୀ ମହାଶୟ ପୁଣି କହିଲେ, "ଆମେମାନେ ଏଇ ମୁହୂର୍ତ୍ତରେ ଚାଲିଯିବୁ ।" ମୁଁ କହିଲି, "ଦେଖନ୍ତୁ, ବର୍ତ୍ତମାନ ଗଣ୍ଡଗୋଳ କରି କିଛି ଲାଭ ନାହିଁ । ଆପଣମାନେ ପ୍ରସାଦ ପାଇସାରି ଏସବୁ ବିଷୟ ଆଲୋଚନା କରିଯାଇବେ ।" ଏହା ଶୁଣି ସମସ୍ତେ ନିରସ୍ତ ହେଲେ ଓ ବହୁ ଲୋକଙ୍କୁ ପ୍ରସାଦ ଦିଆଗଲା । ମୁଁ ମଧ୍ୟ ସମସ୍ତଙ୍କ ସଙ୍ଗେ ପ୍ରସାଦ ପାଇଲି । କିନ୍ତୁ ପୂର୍ବୋକ୍ତ ସନ୍ନ୍ୟାସୀ ମହାଶୟ ତଥାପି ଅଭୁକ୍ତ ଅଛନ୍ତି । ରାତି ସାତଟା ବେଳକୁ ସ୍ଥାନୀୟ ଭଦ୍ରଲୋକମାନେ ଆସି ମହାରାଜାଙ୍କ ପାଦ ଧରି ନାନା ରୂପେ କ୍ଷମାପ୍ରାର୍ଥନା କରିବାକୁ ଲାଗିଲେ କିନ୍ତୁ କୌଣସି ସୁଫଳ ହେଲା ନାହିଁ । ସମସ୍ତେ ମନ ଦୁଃଖରେ ବସି ରହିଲେ । ତଥାପି ସନ୍ନ୍ୟାସୀ ମହାରାଜଙ୍କ ରାଗ ଭାଙ୍ଗିଲା ନାହିଁ । ଏଥିରକ ମୋର ଆଉ ଧୈର୍ଯ୍ୟ ରହିଲା ନାହିଁ । ମୁଁ ସେହି ସ୍ଥାନୀୟ ଭକ୍ତ ଓ ଉଦ୍ୟୋକ୍ତାମାନଙ୍କୁ କହିଲି, "ଦେଖନ୍ତୁ, ଆପଣମାନେ କାହାକୁ ଏତେ ଅନୁରୋଧ କରୁଛନ୍ତି ? ଠାକୁରଙ୍କ ପ୍ରସାଦର ଅପମାନ ଠାକୁରଙ୍କର ଯଥାର୍ଥ ଭକ୍ତ ବା ଶିଷ୍ୟ କେବେ କରିପାରେ ? ଆମ ଠାକୁର ଯାହା ସେବା କରିଛନ୍ତି ସେଇ ଅମୃତ ।" ମୋଠାରୁ ଏପରି ମନ୍ତବ୍ୟ ଶୁଣି ସମସ୍ତେ କହିଲେ, "ଏଣିକି ଆପଣମାନଙ୍କର ଇଚ୍ଛା, ଠାକୁରଙ୍କ ପ୍ରସାଦ ପାଇବାକୁ ଚାଲନ୍ତୁ । ଚଟିଯାଇଥିବା ସନ୍ନ୍ୟାସୀ ମହାଶୟ ମୋ ଉପରେ

ଚକ୍ଷୁ ଲାଲ କରି ନୀରବ ରହିଲେ ଓ ଅଳ୍ପ ସମୟ ପରେ କହିଲେ ଯେ, ସେ ପ୍ରସାଦର କଣିକା ମାତ୍ର ସେବା କରିବେ । ଏ କଥା ଶୁଣି ଉଦ୍ୟୋକ୍ତା-ମାନେ ଆନନ୍ଦରେ ପ୍ରସାଦ ପାଇବାକୁ ଗଲେ ।

ଉତ୍ସବ ପରଦିନ କର୍ଦ୍ଦମ ଖେଳର ଆୟୋଜନ କରା ହେଲା । ପାଣି ଢାଳି କାଦୁଅକୁ ଆହୁରି ଖସଡ଼ା କରାଯାଇଥାଏ । ଖେଳିବାକୁ ଭାରି ଆରାମ—ଏକା ଧକ୍କାରେ ଦଶ ଦଶ ହାତ ଦୂରକୁ ସମସ୍ତେ ଖସି-ଯାଉଥାଆନ୍ତି । ସେ ଏକ ଅପୂର୍ବ ଦୃଶ୍ୟ ଓ ଅନୁଭୂତି ! ଦିନ ୧୨ଟା ସୁଦ୍ଧା ଖେଳ ଶେଷରେ ସ୍ନାନ କରି ଭୋଜନ କଲୁ । ଅପରାହ୍ଣରେ ସ୍ଥାନୀୟ ନିଗମାନନ୍ଦ ହାଇସ୍କୁଲର ପିଲାମାନେ ଖେଳ ଦେଖିବାକୁ ଆମମାନଙ୍କୁ ନିମନ୍ତ୍ରଣ କଲେ । ସେଠାରେ ବେଶ୍ ମେଜିକ୍ ଖେଳ ଦେଖାହେଲା ।

## ରାମକୃଷ୍ଣ ମିଶନର ସାଧୁଙ୍କ ସଙ୍ଗେ

ପରଦିନ ଆମ୍ଭେମାନେ ବିଦାୟ ନେଲୁ । ମୁଁ ମହାରାଜମାନଙ୍କ ସଙ୍ଗେ ହାଲି ସହରର ଦକ୍ଷିଣ ବାଂଲା ସାରସ୍ୱତ ଆଶ୍ରମକୁ ଗଲି । ସେଠାରେ ଠାକୁରଙ୍କ ସମାଧି ଦର୍ଶନ କଲି । ସେଠାରୁ ଗଡ଼ବେତା ଫେରିଆସି ଚନ୍ଦ୍ରଶେଖର ରାଣାଙ୍କ ଘରେ ରହିଲି । ଅପରାହ୍ଣରେ ବୁଲିବାକୁ ଯାଇ ଦେଖିଲି ଯେ, ରାମକୃଷ୍ଣ ମିଶନର ଆଶ୍ରମଟିଏ ସେଠାରେ ଅଛି । ଭାବିଲି ଯଦି କେହି ସାଧୁ ସେଠାରେ ଥାଆନ୍ତି ତେବେ ତାଙ୍କ ସଙ୍ଗେ ଆଲୋଚନା କଲେ ଭାବର ମିଳନ ଘଟି ସଂଶୟ ଦୂର ହୋଇଯାଇପାରେ । ଆଶ୍ରମକୁ ଯାଇ ଦେଖିଲି ଯେ, ସନ୍ଧ୍ୟା ଆରତି ଚାଲିଛି । ମୁଁ ସେହି ଆରତି କୀର୍ତ୍ତନରେ ଯୋଗ ଦେଇ ସେଠାରେ ପ୍ରସାଦ ପାଇଲି । ତାପରେ ଦେଖିଲି ଯେ, ସାଧୁମାନେ ଏକାଠି ବସି ରାଷ୍ଟ୍ର ଇତ୍ୟାଦି ବିଷୟରେ ଆଲୋଚନା କରିବାକୁ ଲାଗିଲେ । ସେତେବେଳକୁ ମୋର ମୁଣ୍ଡ ଗରମ ହେବାକୁ ଆରମ୍ଭ କଲା । ମୁଁ ସ୍ତବ୍ଧ ହୋଇ ହଠାତ୍ ତଳକୁ ଓହ୍ଲାଇ ଆସି ଓ କହିଲି, "ଏ ପର୍ଯ୍ୟନ୍ତ ତୁମମାନଙ୍କ ରାଷ୍ଟ୍ରର ଭୂତ ଛାଡ଼ି ନାହିଁ । ରହ, ମୁଁ ଆଜି ତୁମର ରାଷ୍ଟ୍ର ଛଡ଼ାଇଦେଉଛି ! ଏଠାକୁ ମହାପୁରୁଷଙ୍କ ଆଶ୍ରମ ଭାବି ଆସିଲି ଓ ଆଶା ଥିଲା ଯେ, ମହାପୁରୁଷଙ୍କ

ଜବାବ ଶୁଣିବ ।" ମୋର ଏପରି କଥା ଶୁଣି ଜଣେ ବୃଦ୍ଧ ସନ୍ନ୍ୟାସୀ କହିଲେ, "ଆଚ୍ଛା ବାବା, ମୋର ବୈଠକଖାନାକୁ ଚାଲ, ସେଠାରେ ଆଲୋଚନା କରିବା ।" ମୁଁ ଆନନ୍ଦରେ ସେଠାକୁ ଯାଇ ଅପେକ୍ଷା କଲି । କିଛି ସମୟ ପରେ ସେ ଆସି କହିଲେ, "ଦେଖ, ମୁଁ ତ ବେଶୀ କିଛି ଜାଣେନା । ବିବେକାନନ୍ଦ ଆମ ଘରକୁ ଆସନ୍ତୁ ଓ ତାଙ୍କ ଉପଲବ୍ଧି କଥା କହନ୍ତୁ । ରାମକୃଷ୍ଣ ଦେବଙ୍କ ଅନୁଗ୍ରହରୁ ବିବେକାନନ୍ଦ ମାଙ୍କ କୃପା ଉପରେ ଲାଭ କଲେ ସେ ସମସ୍ତ ଇତିବୃତ୍ତି ବର୍ଣ୍ଣନା କରନ୍ତୁ ।" ସାଧୁଙ୍କଠାରୁ ବିବେକାନନ୍ଦଙ୍କ ଜୀବନଚରିତ ଶୁଣି ମୋ ମନରେ ଖୁବ୍ ଆଶ୍ୱାସନା ଜାଗିଲା । ମୁଁ ଆଗ୍ରହର ସହ ମନଯୋଗ କରି ସମସ୍ତ ଶୁଣିବାକୁ ଲାଗିଲି । ସେ କହିଲେ ଯେ, ନିମ୍ନ ସ୍ତରର ସାଧନ ଅନୁଭୂତି ବା ରହସ୍ୟ ଭାଷାରେ ପ୍ରକାଶ କରାଯାଇପାରେ କିନ୍ତୁ ଉଚ୍ଚ ସ୍ତରକୁ ଉଠିଲେ ସମସ୍ତ ତତ୍ତ୍ୱ କେବଳ ଅନୁଭବଦ୍ୱାରା ବୁଝିବାକୁ ହୁଏ । ତାହା ଭାଷାରେ ପ୍ରକାଶ କରାଯାଇପାରେନା । ଏସବୁ ଶୁଣି ମୁଁ କହିଲି, "ଆପଣଙ୍କୁ ଆଉ କିଛି କହିବାକୁ ହେବନି । ମୁଁ ଆପଣଙ୍କ ପାଖରେ ବିଶେଷ ଅନୁଗୃହୀତ । ଆପଣ ମୋର ସଂଶୟ ଦୂର କରିଛନ୍ତି ।" ଏହା କହି ମୁଁ ସେହି ସନ୍ନ୍ୟାସୀଙ୍କୁ ପ୍ରଣାମ କରି ବିନୀତ ଭାବେ କହିଲି, "ମହାରାଜ, ଆପଣ ମୋତେ କ୍ଷମା କରନ୍ତୁ । ମୁଁ ଆପଣଙ୍କୁ ଅନେକ କଟୁ କଥା କହି କଷ୍ଟ ଦେଇଛି । ମୁଁ ଆଜି ଆପଣଙ୍କ ପାଖରେ ଯେଉଁ ପରମ ଶାନ୍ତି ପାଇଲି ତାହା ଆଉ ମୁଖରେ ପ୍ରକାଶ କରିପାରୁନାହିଁ ।

---

## ନବମ ଅଧ୍ୟାୟ

## ଅଲୌକିକତ୍ୱ

### ବିଭୂତି ଲୀଳା

କ୍ରମେ ମୋର ଧାରଣା ବଦ୍ଧମୂଳ ହେଲା ଯେ, ମୁଁ ଭୁଲ ପଥରେ ତ ଯାଇନ ! ଠିକ୍ ପଥରେ ହିଁ ଚାଲିଛି । ଏହିପରି ଚିନ୍ତା କରି ମୁଁ ପୁଣି ସେହି ମାଈଙ୍କ ପାଖକୁ ଫେରିଗଲି । ତେଣେ ଇତି ମଧ୍ୟରେ ମାଈ ଯୋଗୈଶ୍ୱର୍ଯ୍ୟ ବିକାଶ କରିଦେଇଥାଆନ୍ତି । ମୁଁ ଶୁଣିଲି ଯେ, ମୁଁ ଯିବା ପରେ ସ୍ଥାନୀୟ ଲୋକମାନେ ଆସି ମାଈଙ୍କୁ କହିଲେ ଯେ, ଭୋଳାନାଥଙ୍କୁ ଯାହା ଦେଖାଇଲ ଆମକୁ ମଧ୍ୟ ତାହା ଦେଖାଇବାକୁ ପଡ଼ିବ । ମାଈ କହିଲେ, "ଭୋଳାନାଥ ସାଧୁ ବୋଲି ବଞ୍ଚିଲେ, ତୁମେମାନେ ଦେଖିଲେ ସାଙ୍ଗେ ସାଙ୍ଗେ ଦେହପାତ ହୋଇଯିବ ।" ଏହା ଶୁଣି ସମସ୍ତେ କହିଲେ "ଆମେମାନେ ମଲେ ମରି ପଛେ ଯିବୁ କିନ୍ତୁ ତୁମକୁ ଶକ୍ତି ଅବଶ୍ୟ ଦେଖାଇବାକୁ ପଡ଼ିବ ।" ମାଈ କହିଲେ, "ତୁମେ ଯଦି ନିତାନ୍ତ ଦେଖିବାକୁ ଚାହିଁବ, ମୋର ପାଦରେ ହାତ ଦେଲେ ହିଁ ଦେଖିପାରିବ ଏବଂ ଦେଖିବା ମାତ୍ରେ ପ୍ରାଣ ହରାଇବ ।" ଏ କଥାରେ ସେମାନଙ୍କର ବିଶ୍ୱାସ ହେଲାନି । ଜଣେ ଜଣେ କରି ତାଙ୍କ ପାଦରେ ହାତ ଦେଇ ମୃତବତ୍ ହୋଇ ପଡ଼ିଲେ । ପୁରୁଷ ସ୍ତ୍ରୀ ହୋଇ ପ୍ରାୟ ଷୋହଳ ଜଣଙ୍କର ସେହି ଏକା ଦଶା ହେଲା । ସମସ୍ତେ ଏହା ଦେଖି ଖୁବ୍ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଓ ଭୟରେ ଆଉ କେହି ପାଖକୁ ଆସିଲେ ନାହିଁ, ଦୂରରେ ରହି ଦେଖିବାକୁ ଲାଗିଲେ । ତାପରେ ସମସ୍ତେ ଯୁକ୍ତି ପରାମର୍ଶ କରି ଠିକ୍ କଲେ ଯେ ଥାନାକୁ ଖବର ପଠାଯାଉ । ପୁଲିସ ଦାରୋଗା ଆସି ଯାହା କରଣୀୟ କରିବ —

ଆଉ ତ ଅନ୍ୟ ଉପାୟ କିଛି ଦେଖାଯାଉନ । ଏହି ଆଲୋଚନା ପରେ ଦୁଇଜଣ ଲୋକ ଦାରୋଗା ଡାକି ଆଣିବାକୁ ବାହାରିଲେ । ଥାନାକୁ ଗଲେ ନଦୀ ପାର ହେବାକୁ ହୁଏ । ନଦୀରେ ବେଶୀ ପାଣି ନ ଥାଏ । ଅଣ୍ଟାବୁଡ଼ା ପାଣି ହେବ । ସେହି ପାଣି ଭିତରେ ପଶିଯାଇ ସେମାନେ ଆଉ ଆଗକୁ ଯାଇପାରିଲେ ନାହିଁ । ଏହି ସମୟରେ ଶୂନ୍ୟବାଣୀ ହେବାକୁ ଲାଗିଲା, ଆରେ ବୋକା, ତୁମେ ସେଇ ମାଁଙ୍କ ପୂଜା କଲେ ସେ ମୃତ୍ୟୁ କବଳିତ ବ୍ୟକ୍ତିଙ୍କୁ ବଞ୍ଚାଇପାରିବେନି ? ଥାନାକୁ ଗଲେ ସେମାନେ ବଞ୍ଚିବେ କିପରି ? ପୁଲିସ କ'ଣ ସେମାନଙ୍କୁ ବଞ୍ଚାଇପାରିବ ? ଏହି ଶୂନ୍ୟବାଣୀ ଦୁଇଜଣଯାକ ଏକାଭଳି ଶୁଣିପାରିଲେ ଓ ସେଠାରୁ ଗ୍ରାମକୁ ଯାଇ ସବୁକଥା ଜଣାଇଲେ । 'ମାଁଙ୍କୁ ପୂଜା କଲେ ସେ ସମସ୍ତଙ୍କୁ ବଞ୍ଚାଇଦେଇପାରିବେ'—ଏକଥା ଶୁଣିବା ମାତ୍ରେ ସମସ୍ତେ ଆତୁରର ହୋଇ ପୂଜାର ଆୟୋଜନ କରିବାକୁ ବାହାରିଲେ । ମାଈଁଙ୍କୁ ପୂଜା କରି ପ୍ରଣାମ ଜଣାଇ କହିଲେ, "ମା, ଆମର ପୁଅଝିଅମାନଙ୍କୁ କୃପା କରି ବଞ୍ଚାଇ ଦିଅନ୍ତୁ ।" ମାଈଁ କହିଲେ, "ମୁ ଆଉ ଏମାନଙ୍କୁ ଛୁଇଁ ନାହିଁନି । କିନ୍ତୁ ବଞ୍ଚାଇ ଦେବି ।" ଏତିକି କହି ସେ କିଛି ସମୟ ଚୁପ୍ ହୋଇ ବସି ରହିଲେ । ହଠାତ୍ ଗୋଟିଏ ମାଙ୍କଡ଼ ଝିଅ ଜାଳିସୀ ଲାଗିବା ଅବସ୍ଥାରେ ସେଠାରେ ଆସି ପହଞ୍ଚିଲା ଓ କହିବାକୁ ଲାଗିଲା ଯେ, 'ମୁଁ ସ୍ୱୟଂ କାଳୀ, ତୁମମାନଙ୍କୁ ବଞ୍ଚାଇବାକୁ ଆସିଛି ।" ଏତିକି କହି ପ୍ରତ୍ୟେକ ଲୋକଙ୍କୁ ଗୋଟିଏ ବାଡ଼ିଦ୍ୱାରା ପାହାରେ ଲେଖା ଆଘାତ କରିବାକୁ ଲାଗିଲା ଓ ଜଣେ ଜଣେ ଜୀବନ ପାଇ ଉଠି ବସିଲେ । ଏପରି ଭାବେ ସେ ସମସ୍ତଙ୍କୁ ବଞ୍ଚାଇ ଦେବାରୁ ଲୋକେ ମାଈଁଙ୍କର ପୂଜା କରିବାକୁ ଲାଗିଲେ ।

ଏହିପରି କିଛିଦିନ ଅତୀତ ହେବା ପରେ ମୁଁ ସେଠାରେ ଯାଇ ପହଞ୍ଚି ଦେଖିଲି ଯେ, ଦୈନିକ ତିନି ଚାରି ଶହ ଯାଏଁ ଲୋକ ସେଠାକୁ ଆସୁଛନ୍ତି । ତାଙ୍କ ମଧ୍ୟରେ ଅଧିକାଂଶ ନାନାପ୍ରକାର ରୋଗ ନେଇ ଆସିଥାଆନ୍ତି । ମା'ଙ୍କ କୃପା ହେଲେ ରୋଗମୁକ୍ତ ହୋଇଯିବେ । ସେଇ ମାଙ୍କଡ଼ ଝିଅଟି ପାଦ ବୁଲାଇ ଆଣିଲେ ସଙ୍ଗେ ସଙ୍ଗେ ରୋଗ ଭଲ ହୋଇଯାଉ-ଥାଏ । ପୁଣି, ଗୋଟିଏ କୁକୁର ଅନାହାରରେ ମାଈଁଙ୍କ ଦରଜା ସାମନାରେ

ପଡ଼ି ରହିଥାଏ । ମୁଁ ସେଠାରେ ଏହି ସମସ୍ତ କାଣ୍ଡ ଦେଖି ମାଈଙ୍କୁ କହିଲି ଯେ, ମୁଁ ଆପଣଙ୍କର ଏହି ସମସ୍ତ ଐଶ୍ୱର୍ଯ୍ୟ ଦେଖି ଭୁଲିଯିବାର ପାତ୍ର ନୁହେଁ । ମୋତେ ଉପଯୁକ୍ତ ଜିନିଷ ଦେଖାଇବାକୁ ପଡ଼ିବ । ଏହା ଶୁଣି ସେ କହିଲେ, "କାଲି ମୁଁ ପାଣିରେ ଭାସି ଯିବି ।" ଏ କଥା ଜାଣିବାକୁ ପାଇ ଆଜି ଅନେକ ଲୋକ ଦେଖିବାକୁ ଆସିଲେ । ବାଦ୍ୟ ବାଜଣା ସଙ୍ଗେ ମାଈଙ୍କୁ ପୋଖରୀକୁ ନିଆଗଲା । ପ୍ରାୟ ଦୁଇ ହଜାର ଲୋକ ପୋଖରୀ ଘାଟପାଖରେ ରହି କୀର୍ତ୍ତନ କଲେ । ମାଈ ଘାଟରେ ବସି ତେଲ ଲଗାଇଲେ ଓ ମୋତେ କହିଲେ, "ଦେଖ, ମୁଁ ପାଣି ଭିତରକୁ ଗଲେ ଏଇ ସମସ୍ତ ଲୋକେ ପାଣିରେ ପଶିବେ ।" ଏହା କହି ସେ ପାଦେ ପାଦେ କରି ପାଣି ଭିତରକୁ ଗଲେ, ଆଶ୍ଚର୍ଯ୍ୟର ବିଷୟ ସମସ୍ତେ ଯନ୍ତ୍ର ଭଳି ପାଣିରେ ପଶିବାକୁ ଆରମ୍ଭ କଲେ ଓ ଆଣ୍ଠୁଏ ପାଣିରେ ଯାଇ ଠିଆହେଲେ । ମୁଁ ସେସବୁ ଦେଖି ବିସ୍ମିତ ହୋଇଗଲି ଓ କହିଲି - ବେଶ୍ ହେଲା । ଆଉ ଏ ସବୁରେ ଲାଭ ନାହିଁ । ଲୋକେ ଏଥର ମରିଯିବେ । ଦର୍ଶକ ମଧ୍ୟରେ ଜଣେ ଶିକ୍ଷକ ଥିଲେ । ସେ ହଠାତ୍ କହିଲେ ଯେ, ମାଁ, ଆପଣଙ୍କୁ ଯିବାକୁ ହେବନି । ମୁଁ ପାଣିରେ ଭାସିଯିବି—ଏହା କହି ସେ ଧୂର ଧୂର ପୋଖରୀଟା ପାର ହୋଇଗଲେ । ତା ପରେ ସମସ୍ତେ ପୁଣି ବାଦ୍ୟ ବାଜଣା କରି ମାଈଙ୍କୁ ଘରଠାକୁ ଫେରାଇ ଆଣିଲେ ।

## ବିଭୂତି ସମ୍ବରଣାନ୍ତ ନିର୍ଯ୍ୟାତନା

ସେହି ଅବସ୍ଥାରେ ମୁଁ ଲକ୍ଷ୍ୟ କଲି ଯେ ମାଈ ସମସ୍ତ ଲୋକଙ୍କୁ ଯନ୍ତ୍ର ଭଳି ଚଳାଇବାରେ ଲାଗିଛନ୍ତି । ମୁଁ ଏସବୁ ଦେଖି ଅବାକ୍ ହୋଇ-ଯାଉଥିଲି ।

ସେଦିନ ରାତିବେଳା ପୁଣି ମୁଁ କହିଲି, 'ମା, ଆପଣଙ୍କର ବିଭୂତି ଦେଖିବାକୁ ଆଉ ଆଗ୍ରହ ନାହିଁ । କୃପାକରି ଆପଣା ସ୍ୱରୂପ ଜଣାଇବେ କି ?' 'ଦେଖ ମୁଁ ଯଦି ଏହି ବିଭୂତି ଲୀଳା ବନ୍ଦ କରିଦିଏ ତ ତାହାହେଲେ ସମସ୍ତେ

ଆସି ତୁମ ଉପରେ ଅତ୍ୟାଚାର କରିବେ,' ସେ କହିଲେ । 'ସେ ଯା ହେଉ, ଆପଣ ଏସବୁ ବନ୍ଦ କରନ୍ତୁ,' ମୁଁ ତାଙ୍କୁ ବାଧ କଲାଭଳି କହିଲି । 'ଆଚ୍ଛା ତା ଇ ହେବ ।' ତାଙ୍କର ସମ୍ମତି ଶୁଣି ମୁଁ ସୁଖୀ ହୋଇଥିଲି । କିନ୍ତୁ ଏ କଣ ! ପରଦିନ ଆଉ କେହି ମାମୁଁଙ୍କ ଘରଠାକୁ ଅସୁନାହାନ୍ତି ଯେ ! ମୁଁ ଖବର ନେଇ ଜାଣିପାରିଲି ଯେ ସମସ୍ତେ ଏକତ୍ରିତ ହୋଇ ଯୁକ୍ତି ପରାମର୍ଶ କରିବାରେ ଲାଗିପଡ଼ିଛନ୍ତି । ଜଣେ କହୁଛି "ଦେଖ, ଏଇ, ସାଧୁ ଲାଗି ହିଁ ଆମମାନଙ୍କର ଯେତେସବୁ ବିପଦ ଲାଗି ରହିଛି । ଏଇ ଆସି ଆମ ମା'ଙ୍କୁ ପାଗଳୀ ବନାଇଲା ।" "ଏହାକୁ ଧରି ନେଇ ପାଗଳ ଗାରଦରେ ଭର୍ତ୍ତି କରିଦେବା— ଆଉ ଜଣେ ପରାମର୍ଶ ଦେଲା । ପରେ ପରେ ସେମାନେ ଏକଜୁଟ ହୋଇ ଆସି ମୋତେ ମାରି ଧରି ଘରୁ ବାହାରକୁ ତଡ଼ିଦେଲେ । ମୁଁ ଆଦ୍ୟୋପାନ୍ତ ସକଳ ଉପଲବ୍ଧି କରି ଓ ମାଈଁ ଆଗରୁ ଶୁଣାଇଥିବା ଚେତାବନୀ କଥା ଭାବି ହସିବାକୁ ଲାଗିଲି । ଜଣେ ମୋଟା ମୋତେ ବାଡ଼ି ଧରି ପ୍ରହାର କରିବା ପାଇଁ ଆସିଲା । ଏତିକିବେଳେ ମାଈଁ ଘର ଭିତରୁ ବାହାରକୁ ଆସି କହିଲେ, 'କିରେ, ଏଠାରେ କଣ ସବୁ କରୁଛ ?' ମାଈଁଙ୍କୁ ଦେଖିବାକ୍ଷଣି ସେଇଠୁ ଲୋକ ଯିଏ ଯୁଆଡ଼େ ଉଭେଇଗଲେ । ଏହିପରି ଭାବେ ଅନେକ ଦୌରାତ୍ମ୍ୟରୁ ମୁଁ ବଞ୍ଚିଲି । ମୁଁ ଫେରି ଆସିବା ପରେ ସେ କହିଲେ, 'ଦେଖ, ଏଠାରେ ରହିଲେ ସେମାନେ ତୁମକୁ ମାରିଦେବେ । ତେଣୁ ଏଠାରୁ ଅନ୍ୟତ୍ର ଚାଲିଯିବାକୁ ହେବ—କିନ୍ତୁ ଯିବା କୁଆଡ଼େ ?' ମୁଁ କହିଲି, "କାହିଁକି, ଆମର ଆଶ୍ରମକୁ ଗଲେ ସବୁଠୁ ଭଲ ।"

## ଗଡ଼କୁସମା ଯାତ୍ରା

ତା ପରେ ସେ ସ୍ଥାନୀୟ ଗରିବ ଲୋକମାନଙ୍କୁ ଡ଼ାକାଇ ଘରେ ଯାହା ଥିଲା ସମସ୍ତ ଦାନ କରିଦେଲେ । ମୁଁ ପଚାରିଲି, ଆପଣ ଏ ସମସ୍ତ ଦାନ କରିଦେଉଛନ୍ତି କାହିଁକି ? ସେ କହିଲେ, ଏସବୁ ରହିଲେ ଚୋର ଆସି ନେବେ । ଏ ସବୁ ତ ମୋର ନୁହେଁ—ତେଣୁ ଦାନ କରିଦେବା ଅପେକ୍ଷା ଆଉ ମହତ୍ତର କଣ ଅଛି ? ଦାତାଠୁ ବଳି ବଡ କୃପଣ ଆଉ କିଏ ? କାରଣ ଦାନ କରିଥିଲେ ପୁଣି ପାଇବା । ଦାନ ନ କଲେ ମିଳିବ କେଉଁଠୁ ?

ସ୍ଥାନୀୟ ଲୋକେ ପରସ୍ପର କୁହାକୁହି ହେଲେ, 'ମୃଣ୍ମୟ ଚରମ ହୋଇ ନ ଥିଲେ ଏପରି କିଏ କରିବ ? କାଲି ପାଇଁ ଯେ କଣ ଖିଆପିଇ ହେଉଛନ୍ତି ସେଥିରେ ନାହିଁ ।' ପରଦିନ ବଳଦଗାଡ଼ି ଯୋଗେ ପୁଅ ଝିଅଙ୍କୁ ସାଙ୍ଗରେ ନେଇ ବାହାରିପଡ଼ିଲେ । ମୁଁ ତାଙ୍କ ଅନୁଗାମୀ ହେଲି । ଅଧାବାଟରୁ ବଡ଼ ପୁଅଟି ଘରକୁ ଫେରି ଆସିଲା । କୋଡ଼ଦା ଗ୍ରାମରେ ମାଈଁଙ୍କ ଭଉଣୀ ଘର । ସେଠାରେ ରାତିଟି କଟାଇଲୁ । ପରଦିନ ବସ ଯୋଗେ ବାଙ୍କୁଡ଼ା ଯାତ୍ରା କରିବା କଥା । ଏକ ମାଇଲ ଦୂରରେ ବସଷ୍ଟାଣ୍ଡ । ଆମେମାନେ ସେଠାକୁ ଯାଉଛୁ, ଏପରି ସମୟରେ ଦେଖିଲୁ ବସଟି ଚାଲିଯାଉଛି । ମୁଁ କହିଲି, "ଆଉ, ଆଗେଇ ଯାଇ କଣ ହେବ, ବସ ତ ଚାଲିଗଲା । ଆମକୁ ଆହୁରି ଅଧମାଇଲ ଏ ରାସ୍ତା ଚାଲିବାକୁ ହେବ । ଆଉ ବୃଥା ଚେଷ୍ଟା କାହିଁକି ?' ମାଈଁ କିନ୍ତୁ ଆପତ୍ତି କଲେ, 'ଆରେ, ମୁଁ ନ ଗଲେ କଣ ବସର ସାଧ ଅଛି ଚାଲିଯିବ ? ଆଗକୁ ଯାଇ ଅଳବତ୍ତ ଅଟକିବ ।' ତାଙ୍କ କହିବା ଅନୁଯାୟୀ ଆମେମାନେ ଆସ୍ତେ ଆସ୍ତେ ଯିବାକୁ ଲାଗିଲୁ । ହଠାତ୍ ଦେଖିଲୁ ବସଟି ଅଟକିଗଲା । ଆମେମାନେ ଯାଇ ବସରେ ଉଠିଲୁ । ସେ ପୁଣି କହିଲେ, ଦେଖ, ମୁଁ ତଳକୁ ନଯିବା ଯାଏଁ ବସ ଯାଇପାରିବନି ।' ଏହା କହି ସେ ବସରୁ ଓହ୍ଲାଇଗଲେ । ହଠାତ୍ ହଠ ବସଟି ଷ୍ଟାର୍ଟ ହେଲା । ବସରେ ଥିବା ସମସ୍ତ ଯାତ୍ରୀ ଆଶ୍ଚର୍ଯ୍ୟ ହୋଇ ଏ ଘଟଣା ପ୍ରତ୍ୟକ୍ଷ କଲେ । ଡ୍ରାଇଭର କିନ୍ତୁ କହିଲା, 'ମୋ ବସ ଆପେ ଷ୍ଟାର୍ଟ ହେଲା, ଆପଣ ଥିବା ସଙ୍ଗେ ଏହାର ସମ୍ପର୍କ କଣ ?' ମାଈଁ କହିଲେ, 'ଆଚ୍ଛା, ମୁଁ ତୁମର ମଟରକୁ ଅଟକାଇ ରଖିବି, ତୁମେ ଚାଲୁ କର ଦେଖି !' ଏହା କହିବା ସଙ୍ଗେ ସଙ୍ଗେ ବସଟି ଅଟକିଗଲା । ଡ୍ରାଇଭର ଏ ଘଟଣାରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ମାଈଁଙ୍କୁ ଆସି ପ୍ରଣାମ କଲା ଓ କହିଲା, 'ମା, ମୁଁ ଆପଣଙ୍କୁ ଚିହ୍ନିପାରିନଥିଲି । ଆପଣଙ୍କ ଆଦେଶ ମୋର ଶିରୋଧାର୍ଯ୍ୟ !' ଏହି ଘଟଣା ପ୍ରତ୍ୟକ୍ଷ କରି ଯାତ୍ରୀମାନେ ଖୁବ୍ ବିସ୍ମିତ ହୋଇଥିଲେ ।

## ବାଘ କବଳରୁ ରକ୍ଷା

ଏ ସମସ୍ତ ଲୀଳା ଅଭିନୀତ ହେବା ପରେ ବସ ଯୋଗେ ବାଙ୍କୁଡ଼ା ଆସିଗଲୁ ଓ ସେଠାରୁ ଟ୍ରେନ ଧରି ଦିନ ପ୍ରାୟ ବାରଟା ବେଳକୁ ଗଡ଼ବେତା

ପହଞ୍ଚିଲୁ । ଗୁରୁଭାଇ ଚନ୍ଦ୍ରଶେଖର ସ୍ୱାଇଁଙ୍କ ଘରେ ଖିଆପିଆ କରି ବିଶ୍ରାମ କଲୁ । ସନ୍ଧ୍ୟା ବେଳେ ଗୋଟିଏ ବଳଦ ଗାଡ଼ି ଭଡ଼ା କଲୁ। ଖାଇସାରି ରାତ୍ରି ପ୍ରାୟ ଦଶଟା ବେଳକୁ ଖଡ଼ଗପୁର ଅଭିମୁଖେ ଯାତ୍ରା କଲୁ । ବର୍ଷା ଦିନ, କଚ୍ଚା ରାସ୍ତା—ଗାଡ଼ିରେ ମାଈଁ ଓ ପିଲାଏ ବସିଲେ—ଗାଡ଼ି ଚାଳକ ଆଗରେ ଓ ମୁଁ ପଛରେ ଚାଲିବାକୁ ଲାଗିଲୁ । ଆମଲାଗୋଡ଼ା ପାର ହେବା ପରେ ପରେ ଘନ ଜଙ୍ଗଲ ପଡ଼ିଲା । ଜ୍ୟୋତ୍ସ୍ନା ରାତ୍ରି ହୋଇଥାଏ । ଗାଡ଼ିବାଲା ଦେଖିଲା, ସଡ଼କ ଉପରେ ଏକ ବିରାଟ ବାଘ । ଗୋରୁଗୁଡ଼ିକ ଛାନିଆ ହୋଇ ଉଡ଼ି ଓଟାରି ହେଲେଣି । ଗାଡ଼ିବାଲା ଭୟଭୀତ ଭାବେ "ବାବାରେ, ଖାଇଗଲା" ବୋଲି ଚିତ୍କାର କରି ଗାଡ଼ି ଭିତରକୁ ପଶିଗଲା । ମୁଁ ପଚାରିଲି, "କଣ ହେଲା କି ?" କହିଲା, "ସାମନାରେ ଦେଖନ୍ତୁ...ଆଉ ଆମର ରକ୍ଷା ନାହିଁ, ବାଘ ଆଜି ଆମକୁ ଶେଷ କରିଦେବ !" ଚାହିଁ ଦେଖିଲି କିଛି ଦୂର ଆଗକୁ ମଝି ସଡ଼କରେ ବିରାଟ ବାଘ ବସି ରହିଛି । ହୁଏତ ଗୋଟିଏ ଗୋରୁ କିମ୍ବା ଗାଡ଼ିଚାଳକ ବାଘ ମୁହଁରେ ପଡ଼ିଯିବେ । ତେଣୁ ମୁଁ ମାଈଁଙ୍କୁ କହିଲି, ବିଚରା ଗୋରୁ ବା ଗାଡ଼ିବାଲା ଆମ ଲାଗି ପ୍ରାଣ ହରାଇବା ଅପେକ୍ଷା ମୁଁ ନିଜେ ବରଂ ବାଘ ହାବୁଡ଼ିକୁ ଯାଉଛି !" ମାଈଁ କହିଲେ, "ହଁ, ଚାଲି-ଯାଅ ।" ପରେ ପରେ ମୁଁ ସାମନାକୁ ଯାଇ ବଳଦଙ୍କ ଆଗରେ ଠିଆ ହେଲି ଓ ଏକ ଦୃଷ୍ଟିରେ ବାଘକୁ ଚାହିଁ ରହିଲି । ପ୍ରାୟ ଚାରି ପାଞ୍ଚମିନିଟ ଅତୀତ ହେଲା । ବାଘ ଠିକ୍ ଆଗ ଭଳି ବସିରହିଥାଏ । ତାପରେ ମୁଁ ହେଇଁ ହେଇଁକା ଆଗେଇ ଯାଇ ବାଘଠାରୁ ପ୍ରାୟ ଆଠ ଦଶହାତ ଦୂରରେ ପହଞ୍ଚିଗଲି । ଆଶ୍ଚର୍ଯ୍ୟର କଥା ଭୟରୁ ହେଉ ବା ଅନ୍ୟ କାରଣରୁ ହେଉ ବାଘଟି ଧୀରେ ଧୀରେ ଜଙ୍ଗଲ ଭିତରକୁ ଚାଲିଗଲା । ଗାଡ଼ି ଚାଳକକୁ ଡାକି କହିଲି, "ବାବୁ, ଏଥରକ ବାଘ ଚାଲିଗଲା, ତୁମେ ଗାଡ଼ି ଚଳାଅ ।" ତାପରେ ସାରାରାତ୍ରି ଗାଡ଼ି ଚଳାଇ ପ୍ରତ୍ୟୁଷରୁ ଆଶ୍ରମରେ ଯାଇ ପହଞ୍ଚିଲୁ । ତତ୍କାଳୀନ ଅଧ୍ୟକ୍ଷ ଚଣ୍ଡୀଦାଙ୍କ ସଙ୍ଗେ ଯାଇ ମୁଁ ସାକ୍ଷାତ୍ କଲି ଓ କହିଲି, "ମୋର ମାଈଁ ଆସିଛନ୍ତି । ସେ ଖୁବ୍ ଉଚ୍ଚ ସ୍ତରର ସିଦ୍ଧି ଓ ଶକ୍ତିସମ୍ପନ୍ନା, ତାଙ୍କ ପାଖରେ ରହି ନାନା ଭାବରେ ତାଙ୍କ କୃପା ବିଭୂତି ମୁଁ ଅନୁଭବ କରିଛି । ସେ ଆଶ୍ରମରେ ରହିଲେ ଆପଣମାନେ ମଧ୍ୟ ତାଙ୍କ ମହିମା ଅନୁଭବ କରି

ପାରନ୍ତେ । ଏହା ସମସ୍ତଙ୍କ ପାଇଁ କଲ୍ୟାଣପ୍ରଦ ହୁଅନ୍ତା ! ସାଧୁ ବ୍ୟକ୍ତି ସାଧାରଣ ଲୋକେ ତାଙ୍କ ଭାବଧାରା କ'ଣ ବା ବୁଝିବେ ।" ଚଣ୍ଡୀଦା ମୋ କଥାର ଗୁରୁତ୍ୱ ଆଦୌ ହୃଦୟଙ୍ଗମ କରିନପାରି ସଙ୍ଗେ ସଙ୍ଗେ ମୋ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ ଓ କହିଲେ, ଆଶ୍ରମରେ କୌଣସି ସ୍ତ୍ରୀ ଲୋକ ରହିବା ମନା, ତେଣୁ ତୁମ ମାଈଙ୍କୁ ଏଠାରେ ସ୍ଥାନ ଦିଆଯାଇପାରିବ ନାହିଁ । ଚଣ୍ଡୀଦାଙ୍କର ଅଭିପ୍ରାୟ ବୁଝିପାରି ମାଈ କହିଲେ, "ମୁଁ ତୁମର ଆଶ୍ରମରେ ରହିବାକୁ ଚାହେଁ ନା, ମୋତେ ଦୟା ଦେଇ ରଖିବା ପାଇଁ ଅନ୍ୟ ଲୋକ ଆସୁଛି ।" ସତକୁ ସତ କିଛି ସମୟ ପରେ ଉକ୍ତ ମାଇଲ ଦୂରସ୍ଥ ଆଡ଼ସାବନ୍ଧୀ ଗ୍ରାମର ସୁଧୀର ଘୋଷଙ୍କ ଘରୁ ଜଣେ ଲୋକ ବଳଦଗାଡ଼ି ସଙ୍ଗେ ଆସି ମାଈଙ୍କୁ ପ୍ରଣାମ କଲା ଓ ଆମମାନଙ୍କୁ ସେଠାରୁ ଡାକ ନେଇ ଗଲା ।

## ପରଲୋକଗତ ଆତ୍ମା

ସୁଧୀର ଘୋଷଙ୍କ ବାକାଙ୍କ ଦେହ ଅସୁସ୍ଥ ହୋଇଥାଏ । ତାଙ୍କ ମୁଣ୍ଡରେ ଅନବରତ ପାଣି ଢ଼ାଳିବାକୁ ପଡ଼ୁଥାଏ । ମାଈ ଯାଇ ଥରେ ଦିଥର ହାତ ବୁଲାଇଦେବାରୁ ତାଙ୍କ ମୁଣ୍ଡ ଥଣ୍ଡା ହୋଇଗଲା । ଆଉ ପାଣି ଢ଼ାଳିବା ଦରକାର ହେଲା ନାହିଁ । ଏପରି ଭାବେ ତାଙ୍କ ଘରେ ଗୋଟିଏ ସପ୍ତାହ କଟାଇଲୁ । ଦିନେ ମାଈ କହିଲେ, "ଦେଖ, ଏ ରୋଗୀ ଆଉ ବେଶୀଦିନ ବଞ୍ଚିବ ନାହିଁ । ତାର ଦୁଇଟି ଝିଅ (ମାତୃହୀନା) ବାପାଙ୍କ ଉପରେ ଖୁବ୍ ଆସକ୍ତ ଥିବାରୁ ପ୍ରାଣ ଛାଡ଼ୁ ନାହିଁ ।" ଝିଅ ଦୁହିଁଙ୍କୁ ଡାକି ମାଈ କହିଲେ, "ମା, ତୁମ ବାପାଙ୍କର ଆୟୁ ଆଉ ବେଶୀ ନାହିଁ । ତୁମେମାନେ ତାଙ୍କର ମାୟା କାଟି ଦିଅ । ବାପାଙ୍କ ଦେହଟା ଏଣିକି ଅକର୍ମଣ୍ୟ ହେଲାଣି, ଖାଲି ତୁମର ଆସକ୍ତି ଲାଗି ସେ ବଞ୍ଚିଛନ୍ତି । ତୁମେ ତାଙ୍କୁ ଆଉ ବେଶୀ କଷ୍ଟ କାହିଁ ଦେଉଛ ? ତୁମ ମା'ତ ପୂର୍ବେ ଦିନେ ମରିଯାଇଥିଲେ ! ବାପା କ'ଣ ଆଉ ସବୁଦିନ ବଞ୍ଚି ରହି ପାରିବେ ?" ପିଲାମାନେ ମାଈଙ୍କ କଥାରେ ଖୁବ୍ ବ୍ୟସ୍ତ ହୋଇ କାନ୍ଦିବାକୁ ଆରମ୍ଭ କଲେ । ମାଈ ପୁଣି ବୁଝାଇଲେ, "ଦେଖ, ବାପା ମରିଗଲେ ତୁମ ମା'ଙ୍କ ପାଖରେ ଯାଇ ରହିବେ । ତୁମେ ଦେଖିବାକୁ ଚାହିଁଲେ

ମୁଁ ତମ ମା'ଙ୍କୁ ଏଠାକୁ ନେଇ ଆସିମାଇବ । ତୁମ ବାପା ତାଙ୍କ ସଙ୍ଗେ ଚାଲିଯିବେ । ତୁମେ ବାପାଙ୍କୁ ଛୁଡ଼ି ଦେବ ତ ?" ଏ କଥା ଶୁଣି ସେମାନେ ପଚାରିଲେ, "ତେବେ ଆମେ ଆମ ମାଙ୍କୁ ଦେଖିବାକୁ ପାଇବୁ ?" "ହଁ, ପାଇବ", ମାଇଁ କହିଲେ । ଝିଅମାନେ ଖୁବ୍ ଖୁସି ହୋଇଗଲେ । ଟପସପ କରୁ କରୁ ରାତି ବାରଟା ବାଜିଗଲା । ରୋଗୀ ଶୋଇଥିବା ଘରେ ସେଇ ଦୁଇ ଝିଅ, ମୁଁ ଓ ମାଇଁ ବସିଥାଉଁ । ମାଇଁ କହିଲେ, "ଲକ୍ଷ୍ୟ କରିଥାଅ, ତୁମ ମା ମଲାପରେ ଯେପରି ନାଲିଲୁଗା ପିନ୍ଧି ଶ୍ମଶାନକୁ ଯାଇଥିଲେ ଠିକ୍ ସେଇ ରୂପରେ ସେ ଏଠାକୁ ଆସିବେ ।" ମୋତେ ଉଦ୍ଦେଶ୍ୟ କରି ମାଇଁ କହିଲେ, "ତୁ ରୋଗୀକୁ ସାବଧାନ ହୋଇ ଧରିଥିବୁ, ନଚେତ୍ ସେ ଠିଆ ହୋଇ ଚାଲିବାକୁ ଚେଷ୍ଟା କରିବ ଓ ସଙ୍ଗେ ସଙ୍ଗେ ପଡ଼ି ମରିଯିବ !' ପ୍ରାୟ ଦୁଇ ମିନିଟ ପରେ ଦେଖିଲି, ଦରଜା ପାଖରେ ତାଙ୍କ ମା ଆସି ଉଭା ହେଲେ । ଝିଅ ଦୁଇଟି ସମ୍ଭବତଃ ଏହା ଲକ୍ଷ୍ୟ କରି ଭୟରେ ଅଜ୍ଞାନ ହୋଇ ପଡ଼ିଲେ । ଏଣେ ରୋଗୀଟି ଚଟାପଟ୍ ବସିପଡ଼ିବା ଦେଖି ମୁଁ ତାକୁ ଜୋରପୂର୍ବକ ଧରି ଶୁଆଇଦେଲି । ମୁହଁରେ ପାଣି ଛିଟି ଝିଅଙ୍କ ସଂଜ୍ଞା ଅଣାଗଲା । ଘର ଲୋକଙ୍କୁ ମାଇଁ କହିଲେ, ଏଥର ତୁମେ ଫୁଲ ଚନ୍ଦନ ଇତ୍ୟାଦି ଯୋଗାଡ଼ କର । ଗୀତା ଭାଗବତ ପାଠକର । କାଲି ସକାଳ ଅଠା ବେଳକୁ ରୋଗୀ ପ୍ରାଣ ହରାଇବ । ସତକୁ ସତ ପରଦିନ ସକାଳେ ରୋଗୀର ମୃତ୍ୟୁ ହୋଇଗଲା ।

## ସାପ ଆଶ୍ରୟ ପାଇଲା

ଆଉ ଦିନେ ସେଠାରେ ଅନ୍ୟ ଏକ ଅଦ୍ଭୁତ ଘଟଣା ଘଟିବା ମୁଁ ପ୍ରତ୍ୟକ୍ଷ କଲି । କେତେଜଣ ସାପୁଆକେଲା ଗୋଟିଏ ଗାତରୁ ସାପଟିଏ ଧରିବାକୁ ଚେଷ୍ଟା କରୁଥିଲେ । ସାପଟି କିନ୍ତୁ ଖସି ଆସି ଘର ଭିତରେ ପଶିଗଲା । ମାଇଁ ଘର ମୁହଁକୁ ବସିଥାଆନ୍ତି । ଅନ୍ୟମାନେ ବସି ତାଙ୍କ ସଙ୍ଗେ ଗଳ୍ପ କରୁଥିଲେ । ସାପଟି କାହାକୁ କିଛି ନ କରି ଚଞ୍ଚଳ ଗତିରେ ଘର ଭିତରେ ଲୁଚିଗଲା । ମୁଁ ଅଳ୍ପ ଦୂରରେ ବସିଥାଏ । ସାପୁଆମାନେ ଦଉଡ଼ି

ଆସି କହିଲେ, "ଦେଖନ୍ତୁ, ଆମ ସାପଟି ଏ ଘର ଭିତରେ ପଶିଯାଇଛି, ଆମେ ଯାଇ ସେଟିକୁ ଧରି ଆଣିବୁ, ଆମକୁ ଭିତରକୁ ଯିବାକୁ ଦିଅନ୍ତୁ ।" ମାଉଁ କହିଲେ, "ଜାହିକି, ତୁମେ ଯେପରି ମୋର ପିଲା, ସେ ମଧ୍ୟ ଗୋଟିଏ ପିଲା । ତୁମେମାନେ ତାକୁ ଧରି କଷ୍ଟ ଦେବ, ହେତୁ ଭୟରେ ସେ ମୋ ପାଖକୁ ଚାଲିଆସିଛି, ମୁଁ ତାକୁ ଛାଡ଼ିଦେବି ? କଦାପି ଛାଡ଼ିବି ନାହିଁ !" ଗୁଣୀ ସାପୁଆମାନେ କହିଲେ, "ଅଚ୍ଛା, ତୁମର ଏତେ ବଡ଼ିମା, ଆମେ ଦେଖି ନେବୁ ତୁମେ ଆମ ସାପଟିକୁ କିପରି ରଖିବ ! ଆମ ପାଖରେ ଆଉ ଯେତେ ସାପ ଅଛି ସମସ୍ତଙ୍କୁ ଏଠାରେ ଛାଡ଼ିଦେବୁ । ଦେଖିବୁ ତୁମେ କିପରି ରଖୁଛ !" ମାଉଁ କହିଲେ, "ବେଶ୍, ତୁମେ ସବୁଗୁଡ଼ିକ ସାପ ଏଠାରେ ଛାଡ଼ି ଦେଇ ପାର । ସମସ୍ତେ ମୋ ପାଖରେ ରହିବେ ।" ଏକଥା ଶୁଣି ସତକୁ ସତ ସେମାନେ ପାଖରେ ଥିବା ଆଠ ଦଶଟି ସାପଙ୍କୁ ପେଡ଼ିରୁ ଖୋଲି ବାହାରେ ଛାଡ଼ିଦେଲେ ; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ସାପଗୁଡ଼ିକ ପରସ୍ପର ଲଗାଲଗି ହୋଇ ଏକା ଜାଗାରେ ଛିଡ଼ା ହୋଇ ରହିଲେ । କେହି ଗୋଟିଏ ହେଲେ ଘର ଭିତରକୁ ପଶିଲେ ନାହିଁ । ଏହା ଦେଖି ସାପୁଆମାନେ ଭୟଭୀତ ହୋଇ ପଡ଼ିଲେ ଓ ଆପଣାର ପରାଜୟ ମାନିଯାଇ ସାପଗୁଡ଼ିକୁ ପେଡ଼ି ଭିତରେ ପୂରାଇ ସେଠାରୁ ଶୀଘ୍ର ବିଦାୟ ନେଲେ । ତାପରେ ଘରେ ପଶିଥିବା ସାପ ବିଷୟରେ ମାଉଁଙ୍କୁ ପଚାରିବାରୁ ମାଉଁ କହିଲେ, "ଦେଖ, ସେ ସାପ ଆଉ ଏ ଘରେ ନାହିଁ, ସେ ତା ନିଜ ବସାକୁ ଚାଲିଯାଇଛି ।" ସତକୁ ସତ ସେ ଘରେ ଅନେକ ଖୋଜା ଖୋଜି କରାଗଲା, କିନ୍ତୁ ସାପ ଆଉ ମିଳିଲା ନାହିଁ ।

## ସମାଧି ପରୀକ୍ଷାର ଫଳ

ଘୋଷଙ୍କ ଘରେ ଆମେ ପ୍ରାୟ ଏକ ମାସ ରହିଲୁ । ମାଉଁ ତାପରେ କହିଲେ, ଆଉ ଏଠାରେ ନୁହେଁ, ଏଣିକି ଅନ୍ୟ ଏକ ଜାଗାକୁ ଯିବାକୁ ହେବ । ମୁଁ ପଚାରିଲି, "ପୁଣି କେଉଁଠାକୁ ? ଏଠାରେ ତ ଆପଣଙ୍କର କେହି ଜଣାଶୁଣା ଲୋକ ନାହାନ୍ତି ?" ସେ କହିଲେ, ଦେଖ, ଠିକ୍ ସମୟରେ

ଲୋକ ଡାକିବାକୁ ଆସିବେ । ତୁମକୁ ତ କିଛି କରିବାକୁ ପଡୁନ, ତୁମେ ଏତେ ଅଧୈର୍ଯ୍ୟ କାହିଁ ? ସାଧୁ ତ ହୋଇଛ, ତୁମର ଆଉ ଚିନ୍ତା କଣ ? ଯାହା କରିବା କଥା ମୁଁ କରୁଛି ।

ସତକୁ ସତ ପରଦିନ ପାଥରଚୋଡ଼ିଆ ଗ୍ରାମରୁ ଗୋପୀ ସାହ ନାମରେ ଜଣେ ବ୍ୟକ୍ତି ଆମମାନଙ୍କୁ ନେବାକୁ ଆସି କହିଲେ, 'ମା ! ଆପଣ ଆମ ଘରକୁ ଚାଲନ୍ତୁ । ଆପଣ ଆମ ପାଖରେ ରହିଲେ ମଙ୍ଗଳ ହେବ ।' ମାଈଁ ରାଜି ହେବାରୁ ଆମେ ତାଙ୍କ ସଙ୍ଗେ ଯାଇ ତାଙ୍କ ଘରେ ରହିଲୁ । ତାଙ୍କ ଘରେ ମଧ୍ୟ ଶକ୍ତିର ନାନାପ୍ରକାର ଲୀଳା ସଂଘଟିତ ହେଲା । ସନ୍ଧ୍ୟା ସମୟରେ ଯେ ଯେଉଁ ଦେବୀଙ୍କୁ ଦର୍ଶନ କରିବାକୁ ଇଚ୍ଛିଲା ମାଈଁ ତାକୁ ସେହି ଦେବୀଙ୍କୁ ଦର୍ଶନ କରିବା ସୁଯୋଗ ଦେଲେ । ନାମ ସଙ୍କୀର୍ତ୍ତନ ଚାଲୁଥାଏ । ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ମୂର୍ଚ୍ଛିତହୋଇ ସମାଧିର ଅବସ୍ଥା ପ୍ରାପ୍ତ ହେଉଥାଆନ୍ତି । ସ୍ଥାନୀୟ ଜଣେ ନାସ୍ତିକ ଶ୍ରେଣୀର ବ୍ରାହ୍ମଣ ଏସବୁ ଦୈବୀ କ୍ରିୟା ବିଶ୍ୱାସ ନ କରି ପରୀକ୍ଷା ପାଇଁ ଗୋଟିଏ ସମାଧିସ୍ଥ ପିଲାର ଗୋଡ଼ରେ ଅନ୍ୟମାନେ ନ ଦେଖିଲା ଭଳି ନିଆଁ ଧରାଇଦେଲେ । ଆଶ୍ଚର୍ଯ୍ୟର ବିଷୟ, ପିଲାର ତ କିଛି ହେଲା ନାହିଁ, କିନ୍ତୁ ସେ ବ୍ରାହ୍ମଣ ଦେହରେ ସେହି ଅଗ୍ନିଦାହ ପ୍ରବେଶ କରିବାରୁ ଘରକୁ ଫେରିଯାଇ ସେ ଚିତ୍କାର କରିବାକୁ ଲଗିଲେ । କ୍ରମେ ସମସ୍ତେ ଏହି ବ୍ୟାପାର ଜାଣିବାକୁ ପାଇଲେ । ବ୍ରାହ୍ମଣ ନିଜ ଅପରାଧ ସ୍ୱୀକାର କରି କହିଲେ, "ମୁଁ ମହାପାପୀ, ମୁଁ ଖୁବ୍ ଅନ୍ୟାୟ କରିଛି । ମା ଦିବ୍ୟଶକ୍ତିସମ୍ପନ୍ନା, ସେ ଆସି ମୋତେ ଟିକିଏ ସ୍ପର୍ଶ କରିନଦେଲେ ମୋର ଆଉ ରକ୍ଷା ନାହିଁ, ମୋ ଦେହ ସାରା ଜଳି ପୋଡ଼ି ଯାଉଛି ।" ବ୍ରାହ୍ମଣର ସ୍ତ୍ରୀ ଓ ପିଲାମାନେ ଏବଂ ଅନ୍ୟାନ୍ୟ ଲୋକେ ଆସି ମାଈଁଙ୍କୁ ଏହି ସମ୍ବାଦ ଦେଲେ । ମାଈଁ କହିଲେ, "ପିଲାଟିମାନେ ମୋ ପାଖରେ ଆସି ପଡ଼ି ରହିଛନ୍ତି । ସେ ବ୍ରାହ୍ମଣର ଏତେ ଆସ୍ପର୍ଦ୍ଧା ଯେ ପିଲାଟି ଦେହରେ ନିଆଁ ଲଗାଇବ । ଆଚ୍ଛା, ସେ କେତେ ନିଆଁ ଜଳାଇ ପାରିବ ଏବେ ଜାଣୁ ।" ସମସ୍ତେ ମାଈଁଙ୍କୁ ବିଶେଷ ଭାବେ ଅନୁନୟ କଲେ । ମୁଁ ମଧ୍ୟ କହିଲି, "ମାଈଁ, ସେ ବ୍ରାହ୍ମଣ ଜଣେ ବୋକା ଲୋକ । ଆପଣ ଯାଇଁ ଟିକିଏ ହାତ ବୁଲାଇନଦେଲେ ତାର ଆଉ ରକ୍ଷା ନାହିଁ ।"

ଏହା ଶୁଣି ମାଈଁ ସେ ବ୍ରାହ୍ମଣ ଘରକୁ ଯାଇ ତାର ଶାନ୍ତି ବିଧାନ କଲେ । ସେତେବେଳେ ଏହିପରି ନାନା ରକମ ବିଭୂତି ପ୍ରକାଶିତ ହେଉଥିଲା । ମୁଁ ମାଈଁଙ୍କ ପଛେ ପଛେ ବୁଲି ଭଲ ପାଉଥିଲି । ମୋ ନିଜର କୌଣସି ନିଜସ୍ୱ ବାସ୍ତବ ବସ୍ତୁର ଧାରା ନଥିଲା । ନିମ୍ନଲିଖିତ ଘଟଣାରୁ ଏହା ପ୍ରମାଣିତ ହେଲା ।

## ଶିବଙ୍କ ଚୈତନ୍ୟ ଲାଭ

ସ୍ଥାନୀୟ ଜଣେ ବ୍ରାହ୍ମଣ ଆସି ଦିନେ ମୋତେ କହିଲେ, "ବାବା, ମୋର ସବୁ ଶେଷ ହେଲା । ଆଜକୁ ଛ'ମାସ ହେଲା ମୁଁ ଖାଇବାକୁ ପାଉ-ନାହିଁ । ମୁଁ ପଚାରିଲି "କାହିଁକି ?" ସେ କହିଲେ, "ମୁଁ ଶିବ ମନ୍ଦିରରେ ପୂଜା ପୂଜି କରି ପିଲାଛୁଆଙ୍କୁ ବଡ଼ କରୁଥିଲି । ଶିବ ମନ୍ଦିରରେ ଅନେକ ରୋଗୀ ଆସି ଅଧିଆ ପଡ଼ୁଥିଲେ । ସେଥିରୁ ମୋର ଦୁଇ ପଇସା ରୋଜଗାର ହେଉଥିଲା । ଏବେ କିନ୍ତୁ ସମସ୍ତ ବନ୍ଦ । ଶିବଙ୍କର ମହିମା ବୋଧହୁଏ କ୍ଷୀଣ ହୋଇଯାଇଛି । ଆପଣ ଦୟାକରି ଶିବଙ୍କର ଚୈତନ୍ୟ ସଂପାଦନ କରି ନ ଦେଲେ ମୁଁ ସପରିବାର ଅଭୁକ୍ତ ରହିବି ।" ମୁଁ କହିଲି, "ଆଚ୍ଛା, କାଲି ଯାଇ ତୁମ ଶିବଙ୍କୁ ଦେଖିବା, ତୁମକୁ ଖାଇବାକୁ ନ ଦେଇ ସେ କେଉଁଠା ମହାଦେବ କିପରି ହେବ !" ପରଦିନ ଶିବ ମନ୍ଦିରକୁ ଯାଇ ଦେଖିଲି ଏକ ବିରାଟ ଶିବଲିଙ୍ଗ । ମୁଁ ଭାବାବେଗରେ କହିଲି, "ଆରେ ତୁମେ ଆଜଯାଏଁ ବ୍ରାହ୍ମଣଠାରୁ ପୂଜା ପାଇଲ, ଏବେ ତାର ଖାଇବା ବନ୍ଦ କଲେ ସେ କୁଆଡ଼େ ଯିବ ? ତା ପିଲାଛୁଆ ତ ମରିଯିବେ ! ତୁମେ ତାର ଗୋଟାଏ କିଛି ବ୍ୟବସ୍ଥା ନ କଲାଯାଏଁ ମୁଁ ତମକୁ ଛାଡ଼ୁନି । ପଦାଘାତ କରି ତୁମର ମୁଣ୍ଡ ଫଟାଇ ଦେବି ।" ଏହା କହି ରାଗରେ ମୁଁ ଶିବଲିଙ୍ଗ ଉପରେ ପାଦ ପ୍ରହାର କରିବାକୁ ଲାଗିଲି । କିଛି ସମୟ ପରେ ହଠାତ୍ କେଉଁଆଡ଼ୁ ଜଣେ ବ୍ରାହ୍ମଣ ଆସି ମୋର ଏହି କୃତିତ୍ୱ ଦେଖିବାକୁ ପାଇଲେ । ସେ ଖୁବ୍ ବିସ୍ମିତ ହୋଇ ଗ୍ରାମର ଅନ୍ୟ ବ୍ରାହ୍ମଣମାନଙ୍କୁ ଡକାଇ ସଭା ବସାଇଲେ । ସ୍ଥିର ହେଲା ଯେ, ପଦସ୍ପର୍ଶରେ ଅପବିତ୍ର ହୋଇଯାଇଥିବା ଶିବଲିଙ୍ଗର ପଞ୍ଚଗବ୍ୟ ସଂସ୍କାର ଓ ଶୁଦ୍ଧି କରାଯିବ । ପରଦିନ ଶିବ ପୂଜା ଓ ଅଭିଷେକ ଇତ୍ୟାଦି କରାଗଲା ।

ସନ୍ଧ୍ୟାବେଳେ ଛ'ଜଣ ରୋଗୀ ଆସି ପଡ଼ିଗଲେ । ପୂଜାରୀ ଏସବୁ ଦେଖି ଖୁବ୍ ଆନନ୍ଦ ମନରେ ମୋତେ ଆସି କହିଲା, "ବାବୁ, ଆପଣ ପୁଣି ଥରେ ଯାଇ ଶିବଙ୍କ ଉପରେ ପାଦ ଦିଅନ୍ତୁ । ମୁଁ ଚମକିଗଲି । ଥରେ ପାଦ ଦେବାରୁ ଛ'ଜଣ ଲୋକ ଆସି ପଡ଼ିଗଲେ । ଆପଣ ପୁଣି ଥରେ ଦୟା କଲେ ମୋର ସବିଶେଷ ଉନ୍ନତି ହେବ !" ମୁଁ ହସି ହସି କହିଲି, 'ଦେଖ, ଥରେ ପାଦ ଦେବାରୁ ଶୋଇଥିବା ଶିବ ଏବେ ଜାଗ୍ରତ ହୋଇ ଉଠିଛନ୍ତି—ଆଉ ଥରେ ଦେଲେ ସେ ରାଗି ଅସ୍ଥିର ହେବେ । ତେଣୁ ତୁମର ଆଉ ଚିନ୍ତା ନାହିଁ । ଶିବଙ୍କର ଚୈତନ୍ୟ ଲାଭ ହୋଇଛି ଯେତେବେଳେ, ଆଉ ପାଦ ଦେବା ଦରକାର ହେବନି ।

---

## ଦଶମ ଅଧ୍ୟାୟ

## ଉତ୍‌କ୍ରାନ୍ତି

### ମହେଶପୁର ଫେରିଲି

କିଛିଦିନ ପରେ ପାଥରଚୋଡ଼୍ୟାରୁ ଧାନ୍ୟଗୋଡ଼ା ଗ୍ରାମକୁ ଆସି ପ୍ରାୟ ପନ୍ଦର ଦିନ ରହିଲୁ । ତାପରେ ମାଈଁ ମହେଶପୁର ଫେରିଯିବାକୁ ଚାହିଁଲେ । ଇତିମଧ୍ୟରେ ଦିନେ ମାଈଙ୍କ ଝିଅ ଭଂଗୀ ମୋତେ କହିଲା, "ଦାଦା, ଆପଣ ମୋର ଗୋଡ଼ ଚିପିଦେଇପାରିବେ ?" ସଙ୍ଗେ ସଙ୍ଗେ ରାଜି ହୋଇଯାଇ ମୁଁ ତାର ଗୋଡ଼ ଦୁଇଟିକୁ ଆସ୍ତେ ଆସ୍ତେ ଚିପିବାକୁ ଲାଗିଲି । ଏତିକିବେଳେ ମାଈଁ ସେଠାରେ ଆସି ପହଞ୍ଚିଗଲେ ଓ କହିଲେ, "ଆଃ, ତୁ ଏ କ'ଣ କଲୁ, ଏହି ଶ୍ରେଷ୍ଠ ଲୁଆଟିର ପଦସେବା କଲୁ ? ଆଉ ଏ ଝିଅ ବଞ୍ଚିବ ନାହିଁ !" ଏହା ଶୁଣି ଝିଅଟି ଖାଲି ହସିବାକୁ ଲାଗିଲା । ମୁଁ କିନ୍ତୁ ଖୁବ୍ ଆତଙ୍କିତ ହୋଇଗଲି ।

ମା ମୁଁ ଘରକୁ ଫେରିଯିବା ପୂର୍ବଦିନ ବିଦାୟ ନେବା ପାଇଁ ଆଶ୍ରମକୁ ଗଲି ଓ ସମସ୍ତଙ୍କୁ ଦେଖାକରି କହିଲି ଯେ, ମୁଁ ମାଈଙ୍କ ସଙ୍ଗେ ମହେଶପୁର ଯାଉଛି । ଆଶ୍ରମରେ ଥିବାବେଳେ ମୁଁ ଯେଉଁ ଲୋଟା କମ୍ବଳ ଇତ୍ୟାଦି ପାଇଥିଲି ସାଧୁମାନେ ସେ ସବୁ ଛଡ଼ାଇ ରଖିଲେ । ମୁଁ ମଧ୍ୟ ଜିଦ୍ଖୋର ଭାବେ ସେ ସମସ୍ତ ଫେରାଇ ଦେଇ କହିଲି, "ତୁମେମାନେ ଶ୍ରୀ ଶ୍ରୀ ଠାକୁରଙ୍କୁ ତ ମୋଠାରୁ କାଢ଼ିନେଇପାରିବ ନାହିଁ, ପାରିବ କି ? ଶ୍ରୀ ଶ୍ରୀ ଠାକୁର ଯେତେବେଳେ ମୋ ସାଙ୍ଗରେ ଅଛନ୍ତି, କମ୍ବଳର ଅଭାବ ମୋର ହେବ ନାହିଁ । ଅନେକ କମ୍ବଳ ମିଳିବ ।" ଏହା କହି ମୁଁ ବିଦାୟ ହେଲି ।

ପାଖରେ ଗାଡ଼ି ଭଡ଼ା ପଇସା ନ ଥାଏ । ଟଙ୍କା ପଇସାର ଖିଆଲ ମଧ୍ୟ ଆମର ନ ଥାଏ । ବିନା ଟିକେଟ୍‌ରେ ଗାଡ଼ିରେ ଉଠିଲୁ । ଗୁଡନା ଷ୍ଟେସନରେ ଟିକେଟ୍ ଇନ୍‌ସ୍‌ପେକ୍‌ଟର ଆସି ଆମକୁ ଗାଡ଼ିରୁ ବାହାର କରିଦେଲା । ମାଇଁ କହିଲେ, "ଚାଲ, ଆଉ ଗାଡ଼ିରେ ନୁହେଁ, ଶଗଡ ଭଡ଼ା କରି ଗାଁକୁ ଯିବା ।" ତାଙ୍କ କଥା ଶୁଣି ମୁଁ ଶଙ୍କିତ ହେଲି । କୋଡ଼ିଏ ପଚିଶ ମାଇଲ୍ ରାସ୍ତା, ପାଖରେ ପଇସା ନାହିଁ, ଗ୍ରେଟ ପିଲାଙ୍କୁ ନେଇ କେଉଁଠି ରହିବୁ, କିଏ ବା ଶଗଡ ନେବାକୁ ରାଜି ହେବ । ସେ ଆଗେ ଆଗେ ମୁଁ ସବା ପଛରେ ଚିନ୍ତାକୁଳ ହୋଇ ଚାଲିଲି । ମୋର ଇତସ୍ତତ ଭାବ ଦେଖି ସେ କହିଲେ, "ଆରେ, ତୁ ବାବାଜୀ ହୋଇ ମୋ ପଛରେ ଦୁଃଖ କରୁଛୁ, ଗୃହସ୍ଥ ଲୋକ ମୋ ପାଇଁ ଶଗଡ଼ ନେଇ ଯିବେନି ? ମୁଁ କଣ ତାଙ୍କ ମା ହୋଇଛି ? ସମସ୍ତେ ମୋ ପଛରେ ଯିବେ ଓ ମୋର ଉପକାର କରିବେ । ମୋ ସାଙ୍ଗରେ ଆସ । ପାଖ ଗାଁରୁ ମୁଁ ବଳଦ ଗାଡ଼ି ଯୋଗାଡ଼ କରୁଛି ।" ଗ୍ରାମରେ ପହଞ୍ଚି ମାଇଁ ଲୋକଙ୍କୁ ପଚାରିଲେ, ଏଠାରେ ଭଡ଼ା ବଳଦ-ଗାଡ଼ି କିଏ ଚଳାଏ ? ଲୋକେ ମୁସଲମାନପଡ଼ାକୁ ନିର୍ଦ୍ଦେଶ କରିଦେବାରୁ ଆମେ ସେଇଆଡ଼େ ଗଲୁ । ମାଇଁଙ୍କର ଅନୁରୋଧରେ ଗୋଟିଏ ମୁସଲମାନ ଗାଡ଼ିବାଲା ଖୁବ୍ ଆଗ୍ରହର ସହ ରାଜି ହେଲା । ମାଇଁ କହିଲେ, "ଦେଖ, ମୋ ପାଖରେ ଟଙ୍କା ନାହିଁ, ଖାଇବାକୁ ନାହିଁ । ତୁମେ ଆମମାନଙ୍କୁ ଗାଡ଼ିରେ ବସାଇ ମହେଶପୁର ପହୁଞ୍ଚାଇ ଦେଇ ପାରିବ ? ଗାଡ଼ିବାଲା ଖୁବ୍ ଉତ୍ସାହରେ କହିଲା, "ମା ସାଙ୍ଗରେ ଥିଲେ ମୋର ଆଉ ଦରକାର କଣ ? ମୁଁ ଆପଣଙ୍କୁ ଘରେ ଠିକ୍ ପହୁଞ୍ଚାଇଦେଇ ଫେରିବି ।" ଏପରି କହି ସେ ବଳଦ ଯୋଚିଲା ଓ ଆମକୁ ଗାଡ଼ିରେ ବସାଇ ନେଇଗଲା । ରାତି ହୋଇଥାଏ, କଚାରାସ୍ତା, ସାରା ରାତି ଓ ପରଦିନ ବେଳା ପ୍ରାୟ ଚାରିଟା ସୁଦ୍ଧା ଆମେ ଯାଇ ମହେଶପୁରରେ ପହଞ୍ଚିଲୁ ।

## ପୁଣି ବିପଦ

ଗାଁ ମଝିରେ ଯାଉ ଯାଉ ଗୋଟିଏ ଚୁଡ଼ାକୁଟୁଣୀ ସ୍ତ୍ରୀ ଲୋକ ସଙ୍ଗେ ଦେଖା ହେଲା । ସେ ଖୁବ୍ ମାତୃଭକ୍ତ । ମୋତେ ସେ ପ୍ରଥମେ ଗାଡ଼ିରୁ

ଓହ୍ଲାଇ ଆସିବାକୁ କହିଲା ଓ ପାଖକୁ ଗିବାରୁ ଧୀର ସ୍ୱରରେ ପୁଣି କହିଲା, "ମାଈଁ ଓ ପିଲାମାନେ ଘରକୁ ଯାଆନ୍ତୁ । ଆପଣ ଆଜି ଆମ ଘରେ ବିଶ୍ରାମ କରନ୍ତୁ, କାଲି ଘରକୁ ଗିବେ । କାରଣ, ଆପଣଙ୍କର ଫେରିବା ସମ୍ବାଦ ପାଇ ଆପଣଙ୍କୁ ମାରିଦେବାକୁ ବ୍ରାହ୍ମଣମାନେ ପ୍ରସ୍ତୁତ ହୋଇ ରହିଛନ୍ତି । ତେଣୁ ମୁଁ ଆଜି ଆପଙ୍କୁ ଗିବାକୁ ଦେବି ନାହିଁ । ମାଈଁ ଓ ପିଲାଙ୍କ ସଙ୍ଗେ ମୁଁ ମୋର ପିଲାଙ୍କୁ ପଠାଇଦେବି, କେହି ଯେପରି ତାଙ୍କର କୌଣସି ଅନିଷ୍ଟ ନ କରେ, ସେମାନେ ତା'ର ଯତ୍ନ କରିବେ ।" ସାରାଦିନ ମୁଁ ଖାଇ-ନଥାଏ । ମୋ ପାଇଁ ସେ ପ୍ରଥମେ ଚୂଡ଼ା ଜଳଖିଆ ଦେଲା । ରାତିରେ ମୁଁ ପେଟେପେଇ କରି ଭୋଜନ କଲି, ମାଈଁ ଓ ଝୁଆଙ୍କୁ ନେଇ ତାର ଆତ୍ମୀୟ-ମାନେ ଆମ ଘରକୁ ଗଲେ । ଘରେ ପହଞ୍ଚି ଏମାନେ ଘୋଷଣା କଲେ ଯେ, ସାଧୁ, ତାଙ୍କ ମାଈଁ ଓ ପିଲାଙ୍କ ଉପରେ କେହି କୌଣସି ରକମ ଅତ୍ୟାଚାର ଯେପରି ନ କରନ୍ତି । ଯଦି କେହି ସେପରି କରେ ତେବେ ଆମେ ତାର ଉପଯୁକ୍ତ ମୁକାବିଲା କରିବୁ । ଏମାନଙ୍କର ପ୍ରତାପ ଓ ସାମର୍ଥ୍ୟ ବ୍ରାହ୍ମଣ-ମାନଙ୍କୁ ଆଗରୁ ଜଣାଥାଏ; ତେଣୁ କେହି କୌଣସି ଅନିଷ୍ଟ ନ କରି ଆପଣା ଘରକୁ ଫେରିଗଲେ । ତେଣେ ମାଈଁ ଉଧାର ଆଣି ଗାଡ଼ିବାଲାକୁ ଛ'ଟି ଟଙ୍କା ଭଡ଼ା ଦେଲେ । ଭାତ ଖାଇ ସାରି ଖୁବ୍ ଆନନ୍ଦ ମନରେ ସେ ଗାଡ଼ି ନେଇ ଫେରିଲା । ପରଦିନ ଘରକୁ ଆସି ମୁଁ ସମସ୍ତ କଥା ଶୁଣିବାକୁ ପାଇଲି । ବ୍ରାହ୍ମଣମାନଙ୍କର ଏପରି ଆକ୍ରୋଶର କାରଣ ପଚାରି ବୁଝିବାରୁ ଜଣାଗଲା ଯେ କିଛିଦିନ ଆଗରୁ ସେହି ମାହାତ ଜାତିର ସ୍ତ୍ରୀଟି ବାଡ଼ିରେ ଆଘାତ କରି ମୃତ ବ୍ୟକ୍ତିମାନଙ୍କୁ ଯେ ଜୀବନ ଦାନ କରିଥିଲା ତାହା ଏକ ଲଜ୍ଜାର ବିଷୟ ହୋଇଉଠିଛି । ସେଥିପାଇଁ ଚାରିଆଡ଼େ ଏକ ଆନ୍ଦୋଳନ ଚାଲିଛି । ସବୁଠୁ ବ୍ରାହ୍ମଣମାନଙ୍କର ଅପମାନ ବୋଧ ଜାଗିଛି । ବ୍ରାହ୍ମଣମାନେ ମୋତେ ଦେଖିବା ମାତ୍ରେ ରାଗରେ ଜଳିଉଠୁଥାନ୍ତି । ତାଙ୍କର ବିଷ ଦୃଷ୍ଟି ମୋରି ଉପରେ ନିବଦ୍ଧ । ମାଈଁଙ୍କୁ ସେମାନେ କହୁଥାନ୍ତି, "ତୁମ ଉପରେ ଆମ-ମାନଙ୍କର କୌଣସି ଆକ୍ରୋଶ ନାହିଁ । କିନ୍ତୁ ତୁମ ପାଖରେ ଭୋଳାନାଥ ରହୁଥିବା ଯୋଗୁଁ ଆମେମାନେ ଖୁବ୍ ଅପମାନିତ ଅନୁଭବ କରୁଛୁ ।" ଆପଣ ଅଧିକ ଦିନ ତାଙ୍କୁ ଏଠାରେ ରଖିଲେ ଆମେମାନେ ଯେପରି

ଉପାୟରେ ହେଉ ତୁମକୁ ଜବତ କରିବୁ । ମାଈଁ କହିଲେ, "ଦେଖ, ମୁଁ ତ ତାକୁ ଚାଲିଯିବାକୁ କହିପାରିବି ନାହିଁ । ସେ ନିଜେ ଯେଉଁ ଦିନ ଚାଲିଯିବ ଯିବ । ନଚେତ୍ ମୋ ଘରେ ରହିବାକୁ ଚାହିଁଲେ ରହିବ ।" ଏହା ଶୁଣି ବ୍ରାହ୍ମଣମାନେ କହିଲେ ଯେ, ତାହାହେଲେ ଆମ୍ଭେମାନେ କେହି ତୁମ ଘରକୁ ଆସିବୁ ନାହିଁ । ତୁମ ସାଙ୍ଗରେ ଆମମାନଙ୍କର ଖିଆପିଆ ବନ୍ଦ କଲୁ । ଏପରି କଟୂକ୍ତି କରିବା ପରେ ମୋତେ ସେମାନେ ବିଶେଷ ଘୃଣା ଦୃଷ୍ଟିରେ ଦେଖିବାକୁ ଲଗିଲେ ଏବଂ ଯାହା ମୁହଁକୁ ଯାହା ଆସିଲା ସେ ତାହା ମୋ ପ୍ରତି ପ୍ରୟୋଗ କରି ମୋର ନିନ୍ଦାବାଦ କଲେ । ମୁଁ ନୀରବରେ ସବୁ ସହ୍ୟ କରୁଥାଏ । ବ୍ରାହ୍ମଣମାନଙ୍କ ଛଡ଼ା ଅନ୍ୟ ସମସ୍ତେ ଆମମାନଙ୍କୁ ଭଲ ପାଉ-ଥାଆନ୍ତି । ସେତେବେଳେ କିନ୍ତୁ ମୋର ଅନ୍ତଃକରଣ ଆନନ୍ଦରେ ପରିପୂର୍ଣ୍ଣ ହୋଇ ରହିଥିବାରୁ ବ୍ରାହ୍ମଣମାନଙ୍କର ଭର୍ତ୍ସନା ବା କୁତ୍ସାରଟନା ପ୍ରତି ମୋର ଭ୍ରୂକ୍ଷେପ ନ ଥାଏ । ପୁଣି, ଗ୍ରେଟ ଗ୍ରେଟ ନାବାଳକ ଏବଂ ଅସହାୟ ପିଲାଙ୍କୁ ଛାଡ଼ିଦେଇ ଚାଲିଯିବା ଅନ୍ୟାୟ ବୋଲି ମୁଁ ଭାବୁଥାଏ ।

## ଭନ୍ଦୀର ଜୀବନାବସାନ

ଆମେମାନେ ଘରକୁ ଆସିବା ପରେ ଦେଖିଲୁ ମାତ୍ର ତିନି ମହଣ ଚାଉଳ ଅବଶିଷ୍ଟ ଥିଲା କିନ୍ତୁ ସେଇତକ ଚାଉଳ ଅନେକ ଦିନ ଚାଲିଗଲା— ମନେହେଲା ଯେପରି ଭଣ୍ଡାର ଶେଷ ହେବ ନାହିଁ । କାର୍ତ୍ତିକ ଶେଷରେ ନୂଆ ଧାନ ପାଚିଲା । ମନ ଚାହିଁଲା ଯେପରି ବାହ୍ୟ ବିପଦ ଆପଦ ମୁକ୍ତ ହୋଇ ଶାନ୍ତିମୟ ପରିବେଶ ମଧ୍ୟରେ ବସବାସ କରିହେବ । କିନ୍ତୁ ବିଧିର ବିଧାନ ବିଚିତ୍ର ଏବଂ ବେଳେବେଳେ ଏହା ଅତୀବ କଠୋର । କାଳୀପୂଜାର ସମୟ । ହଠାତ୍ ରାତିରେ ମାଈଁଙ୍କ କୋଳରେ ଭନ୍ଦୀ ଘନ ସାଦା ରଙ୍ଗର ଅଧ ସେରେ ମୂତ୍ର ତ୍ୟାଗ କଲା । ମାଈଁ ଏହା ଦେଖି କହିଲେ, 'ଆରେ, ଏ କ'ଣ କଲା । ଏହାର ଆଉ ବେଶୀ ଅୟୁ ନାହିଁ । ଶେଷ ସମୟ ପ୍ରାୟ ଉପଗତ । ଏହା କହୁ କହୁ ଭନ୍ଦୀ ମାଙ୍କ କୋଳରେ ଟଳିପଡ଼ିଲା । ଚାରି ବର୍ଷର ଅପ୍ରାକୃତ ଲୀଳାବସାନ ପରେ ଦେବ ଶିଶୁର ଦିବ୍ୟାତ୍ମା ଦିବ୍ୟଧାମକୁ

ଫେରିଗଲା—ମୋ ସାଧୁ ଜୀବନରେ ଭନ୍ଦୀର ରହସ୍ୟପୂର୍ଣ୍ଣ ଲୀଳା କଥା ଚିନ୍ତାକରି ଏବେମଧ୍ୟ ମୁଁ ବିସ୍ମିତ ହୁଏ । ମାତୃଦର୍ଶନ ଉଦ୍ଦେଶ୍ୟରେ ମୁଁ କରୁଥିବା ସାଧନ ପର୍ବର ସେ ଥିଲା ଉତ୍ତରସାଧିକା । ଏତେ କମ ବୟସରେ ଯେ ସେ ବିଦାୟ ନେବ ସେ କଥା ମୁଁ କଳ୍ପନା ସୁଦ୍ଧା କରିନଥିଲି । ମୋର ମନର ବିଷଣ୍ଣତା ଦେଖି ମା ମୋତେ ବୁଝାଇଥିଲେ, ଦେଖ, ଏବେ ମଧ୍ୟ ସେ ସୂକ୍ଷ୍ମଭାବେ ତୁମର ଯେଉଁଥିରେ କଲ୍ୟାଣ ହେବ ତାର ବ୍ୟବସ୍ଥା କରିବ । ଭନ୍ଦୀର ମୃତ୍ୟୁରେ ମାଙ୍କୁ ତିଳେମାତ୍ର ବିଚଳିତ ହେବା ମୁଁ ଲକ୍ଷ୍ୟ କଲି ନାହିଁ । ବରଂ ସେ କହୁଥିଲେ, "ଦେଖ, ଏଥିରେ ବ୍ୟସ୍ତହେବାର କ'ଣ ଅଛି ? ମୋ ପାଖରେ ସେ ସୂକ୍ଷ୍ମରେ ସବୁବେଳେ ରହିଛି । ସ୍ଥୂଳ ଦେହର ଯେତେଦିନ ଆବଶ୍ୟକ ଥିଲା ସେତେଦିନ ସେ ଲୀଳାଖେଳା କଲା—ଏବେ ତାର ଆଉ ଆବଶ୍ୟକତା ନ ଥିବାରୁ ସେ ଫେରିଗଲା । ଏଥିପାଇଁ ଅନୁଶୋଚନା କାହିଁକି ?" ମୁଁ ତାଙ୍କର ଅନାସକ୍ତ ଭାବ ଦେଖି ବିସ୍ମିତ ହୋଇଥିଲି । ଭନ୍ଦୀର ମରଣ ସମ୍ବାଦ ପାଇବା ସଙ୍ଗେ ସଙ୍ଗେ ବ୍ରାହ୍ମଣମାନେ ଆସି ଆବଶ୍ୟକୀୟ ଶୁଦ୍ଧି କ୍ରିୟାର ଅନୁଷ୍ଠାନ କଲେ । ସେମାନଙ୍କର ଯିବା ଆସିବା ଫଳରେ ମୋର କୌଣସି ଭାବର ବୈଷମ୍ୟ ଘଟିଲା ନାହିଁ । ତାଙ୍କର ଶତନିନ୍ଦାବାଦକୁ ହଜମ କରିଦେଇ ମୁଁ ଆତ୍ମାନନ୍ଦରେ ବିଭୋର ହୋଇ ରହୁଥାଏ ।

## ମୋର ସ୍ୱାସ୍ଥ୍ୟଭଙ୍ଗ

ଏହି ସମୟରେ ମୁଁ ଆମାଶୟ ରୋଗ ଦ୍ୱାରା ଆକ୍ରାନ୍ତ ହେଲି । ପ୍ରଥମେ ସାମାନ୍ୟ ମାତ୍ରାରେ ଆରମ୍ଭ ହୋଇ କ୍ରମେ ଏହି ରୋଗ ସାଂଘାତିକ ହେଲା ଓ ମୁଁ ଛଅମାସ କାଳ ଶଯ୍ୟାଶାୟୀ ହୋଇ ପଡ଼ିରହିଲି । ଅରେ ରାତିବେଳା ଶେଯରୁ ଉଠି ଆଉ ପାଇଖାନାକୁ ଯାଇପାରିଲି ନାହିଁ । ଲୁଗାପଟା ମଳମୂତ୍ରମୟ ହୋଇଗଲା । ମନରେ ପ୍ରବଳ ଗ୍ଲାନିଭାବ ଜାଗିଲା ଓ ନିଜକୁ ଶତ ଧିକ୍କାର କରିବାକୁ ଲାଗିଲି । ମରିଯିବାହିଁ ଉଚିତ ଭାବିଲି । ଏପରି ଦୁର୍ଗନ୍ଧ, ଅସହାୟ ଓ ଅକର୍ମା ହୋଇ ବଞ୍ଚିବାରେ ଲାଭ କଣ ? ଏପରି ଚିନ୍ତା କରି କାହାକୁ

କିଛି ନ କହି ମଧ୍ୟରାତ୍ରିରେ ନଦୀ ପାରସ୍ଥ ଜଙ୍ଗଲକୁ ଗ୍ଲଲଗଲି । ସେଠାରେ ଗୋଟିଏ ଚଟିର ମଧ୍ୟଭାଗରେ ଶୋଇ ରହିଲି । ନିଜ ନିଜ ମନକୁ କହିଲି— ଏଇଥର ଯେତେ ପାରୁଚୁ ସେତେ ପାଇଖାନା କର, ମୁଁ ଏଠାରୁ ଆଉ ଉଠିବି ନାହିଁ । ପରଦିନ ସକାଳ ହେଲା ଏବଂ କ୍ରମେ ଅପରାହ୍ନ ୪ଟା ବେଳ ହେବାକୁ ଗଲା; କିନ୍ତୁ ଆଉ ପାଇଖାନା ନ ହୁଏ । ଘରେ ସମସ୍ତେ ଖୁବ୍ ଚିନ୍ତିତ ହୋଇ ଚତୁର୍ଦ୍ଦିଗରେ ଖୋଜି ବୁଲିଲେ । କେତେକ ସ୍ତ୍ରୀ ଲୋକ ସେ· ଦିନ ଜଙ୍ଗଲକୁ ଆସିଥିଲେ । "ଏଠାରେ ଗୋଟିଏ ଲୋକ ମରିଯାଇଛି କିଷ୍ଟାୟ"—ସେମାନେ ମୋତେ ଶୋଇଥିବା ଅବସ୍ଥାରେ ଦେଖି ଏପରି କୁହା-କୁହି ହେବା ମୁଁ ଶୁଣିଲି । ସେମାନେ ଗାଁକୁ ଫେରିଯାଇ ଏହି ଖବର ରାଷ୍ଟ୍ର କରିଦେବାରୁ ଅନେକେ ଦେଖିବାକୁ ଦୌଡ଼ିଆସିଲେ । ମୁଁ ଏତେବେଳେ ଭାବିଲି ଯେ, ନା ପାଇଖାନା ହେଲା, ନା ମରଣ । ତେବେ ଆଉ ଏଠି ପଡ଼ି ରହି ଲାଭ ବା କଣ ?—ଉଠି ଆସି ନଦୀରେ ସ୍ନାନ କଲାବେଳେ ଗ୍ରାମରୁ ସମସ୍ତ ଆତ୍ମୀୟ ଆସି ପହଞ୍ଚିଲେ ଓ ମୋତେ ଦେଖି ଆନନ୍ଦିତ ହେଲେ । ସେହିଦିନଠାରୁ ମୋର ଆମାଶୟ ଭଲ ହେଲା କିନ୍ତୁ ଶରୀର୍ ଖୁବ୍ ଦୁର୍ବଳ ହୋଇପଡ଼ିଲା ।

## କ୍ରୋଧ ଜୟ

ପରେ ପରେ ଲକ୍ଷ୍ୟ କଲି ଯେ ଖୁବ୍ ସାମାନ୍ୟ କଥାରେ ମୋର କ୍ରୋଧ ଜାତ ହେଲା । ପିଲାଏ ଯଦି କୌଣସି କଥା ନ ମାନନ୍ତି ତେବେ ମୁଁ କ୍ରୁଦ୍ଧ ହୋଇ ତାଙ୍କୁ ପ୍ରହାର କରିବାକୁ ଲାଗେ । ମାରିସାରିବା ପରେ କିନ୍ତୁ ମନରେ ଅନୁତାପ ଦେଖାଦିଏ । ସେଥିରକ ମାଇଁଙ୍କୁ କହିଲି, "ମାଇଁ, ସାଧୁ ହୋଇ କ୍ରୋଧ ରିପୁର ବଶବର୍ତ୍ତୀ ହେବା କେତେ ବଡ଼ ଅନ୍ୟାୟ କଥା ! କିନ୍ତୁ ମୋର ଏଭଳି ପ୍ରବୃତ୍ତି ହଠାତ୍ ଜାଗିଉଠିବା ବାସ୍ତବିକ୍ ଆଶ୍ଚର୍ଯ୍ୟର ବିଷୟ ।" ମାଇଁ କହିଲେ, "କ୍ରୋଧ କେଉଁଠାରୁ ଉତ୍ପନ୍ନ ହେଉଛି ଏବଂ କିପରି ଲୟ ପାଉଛି ଅନୁସନ୍ଧାନ କରି ଦେଖିପାରୁନୁ ! କାମ, କ୍ରୋଧ ଓ ଅନ୍ୟାନ୍ୟ ରିପୁମାନଙ୍କର ମୂଳ ଉତ୍ସକୁ ଧରିପାରିବା ପାଇଁ ଯତ୍ନ କରିବା ତ ସବୁଠାରୁ ବଡ଼ ସାଧନା !" ମାଇଁଙ୍କର ଏପରି ଉପଦେଶ ଶୁଣିବା ପରଠାରୁ

କ୍ରୋଧର ଉଦ୍ଭବ ସମୟକୁ ଜଗି ରହି ତାର ଉତ୍ପତ୍ତି ଓ ଆଶୟ ନିରୂପଣ କରିବାକୁ ଚେଷ୍ଟା କଲି । କିଛିଦିନ ଏପରି ହେବା ପରେ ଯେତେବେଳେ ଅରେ ତାର ୟାଳକୁ ଚିହ୍ନି ପାରିଲି ଆଉ ମୋର କ୍ରୋଧ ସ୍ୱତଃପ୍ରବୃତ୍ତ ହୋଇ ଜାଗି ପାରିଲା ନାହିଁ ! କେବଳ ମୋର ସ୍ୱେଚ୍ଛାକ୍ରମେ କ୍ୱଚିତ୍ ଆବଶ୍ୟକ ହେଲେ କ୍ରୋଧଭାବ ଜାଗିଲା । ପରବର୍ଷ ବର୍ଷାଦିନେ ମୁଁ ଚିନ୍ତାକଲି ଯେ, ଏଠାରେ ବସିରହିବା ଅପେକ୍ଷା ମାମୁଙ୍କର ଯାହା ଜମି ଥିଲା ତା'ର ଚାଷ ବାସ ଦାୟିତ୍ୱ ନେବା ଭଲ । ତା ନୋହିଲେ, ପିଲାମାନେ ଖାଇବେ କ'ଣ ? ତେଣୁ ମୁଁ ନିର୍ବିଚାରରେ ଦିନରାତି ପରିଶ୍ରମ କଲି । ମଜୁରିଆଙ୍କ ସଙ୍ଗେ ସାଙ୍ଗ ହୋଇ ବିଲରେ କାମ କରିବାକୁ ଲାଗିଲି । ଜଙ୍ଗଲକୁ ଯାଇ କାଠ କାଟି ଆଣିଲି । ନାନା ପ୍ରକାର ଯତ୍ନ ଓ କମଣ ଫଳରେ ଆମ ଜମିରେ ଅଧିକ ଧାନ ଫଳୁଥିଲା । ତେଣୁ ଆଉ କୌଣସି ଅଭାବ ନ ଥିଲା ।

## ବାମଦେବଙ୍କ ବିଷାଦ ଭଙ୍ଗ

ଚାଷବାସ ଆରମ୍ଭ କଲାବେଳେ ଏଠାରେ ଘଟିଥିବା ଗୋଟିଏ କୌତୁହଳପ୍ରଦ ଘଟଣାର ଉଲ୍ଲେଖ ନ କରି ରହିପାରୁନି । ଜଣେ ଚାଷକାମ ତଦାରଖ କରିବାପାଇଁ ଦୁଇଟି ବଳଦ କିଣି ଆଣିଲି । ଖୁବ୍ ବଡ଼ ବଡ଼ ତାଜା ଦୁଇଟି ବଳଦ । ଭାବିଲି ଯେ ଅନାୟାସରେ ଚାଷ ବେଉଷା କରାଯିବ । ପରଦିନ ସକାଳୁ ବଳଦଙ୍କ ବେକରେ ଜୁଆଳି ଓ ଲଙ୍ଗଳ ରଖି ଚାଷ କଲାବେଳେ ବଳଦ ଦୁଇଟି ଏକ ସଙ୍ଗେ ଶୋଇପଡ଼ିଲେ । ଯେତେ ଚେଷ୍ଟା କଲେ ହେଁ ସେମାନେ ଆଉ ନ ଉଠନ୍ତି ! ଦୁହେଁ ଏକାବେଳେ ଯେପରି ଅଚଳ ! ଏହା ଦେଖି ମନକୁ ଖୁବ୍ ଅସହାୟ ଲାଗିଲା । ମୁଣ୍ଡରେ ହାତ ରଖି ବସିପଡ଼ିଲି । ଭାବିଲି ଏତେଗୁଡ଼ାଏ ଟଙ୍କା ବିନିମୟରେ ଏପରି ଦୁଇଟି ଅକାମୀ ଜନ୍ତୁ ମୋ ଭାଗ୍ୟରେ ଜୁଟିଲା ! ବିକେତା ଜଣ ଆଉ ଏ ବଳଦ ଫେରାଇ ନେବ ? ମାଈଙ୍କୁ ଯାଇ ଏହି ଦୁରବସ୍ଥାର କଥା ଜଣାଇଲି । ମାଈ ନିର୍ବିକାର ଭାବେ କହିଲେ, "ଚାଷ ଦାୟିତ୍ୱ ମୋର ନୁହେଁ, ତୁମର । ତୁମର ଖିଆଲ ହେଲା, ତୁମ କର୍ତ୍ତବ୍ୟ ତୁମେ କର । ଆଉ ବଳଦ ତା' କର୍ତ୍ତବ୍ୟ କରିବ । ମୋତେ କାହିଁକ ସେ ଜଞ୍ଜାଳରେ ପୂରାଉଛ ।" ଖୁବ୍ ଚିନ୍ତାନ୍ୱିତ

ଏବେ ପରବନ ଜମିଉପରକୁ ଯାଇ ହଳ ବନ୍ଧାଇଲି ଓ ତାଙ୍କ ପିଠିରେ ହାତ ବୁଲାଇ କହିଲି, "ଦେଖ ବାବା, ତୁମେମାନେ ଗୋଟିଏ ବିପଦରେ ପଡ଼ିଲ ଆଉ ମୁଁ ମଧ୍ୟ ହାଧୁ ହୋଇ ଗୋଟିଏ ବିପଦରେ ପଡ଼ିଛି । ମୋର କର୍ତ୍ତବ୍ୟ ହେଲା ନାବାଳକ ପିଲାଙ୍କୁ ବଡ଼ କରିବାପାଇଁ ଚାଷ ବାସର ଧନ୍ଦା ବୁଝିବାକୁ ହେବ । ତୁମର କର୍ତ୍ତବ୍ୟ ହେଲା ତୁମେ ଜମି ଚାଷରେ ମୋତେ ସାହାଯ୍ୟ କରିବ । ତୁମେ ଯଦି ଅଚଳ ହୁଏ, ମୋର ଉଦ୍ଦେଶ୍ୟ ଭଣ୍ଡୁର ହେବ ।' ଆଶ୍ଚର୍ଯ୍ୟର କଥା, ମୋର ଏପରି ପରାମର୍ଶ ଶୁଣି ବଳଦଗୁଡ଼ାକ ଚାଲିବାକୁ ଆରମ୍ଭ କଲେ । ଜମି ଚାଷ ଆରମ୍ଭ ହେବାର କିଛି ସମୟ ପରେ ମୁଁ ଅନ୍ୟାଡ ଚାଲିଗଲି କିନ୍ତୁ ମୂଲିଆ କହିଲା ଯେ, ବଳଦ ପୁଣି ଆଗ ଭଳି ଶୋଇପଡ଼ିଲେ । ମୁଁ ସେଠାରେ ଥିବା ଯାଏଁ ସେମାନେ କାମ କରନ୍ତି, ମୁଁ ଅପସରିଗଲେ ସେମାନେ ଶୋଇପଡ଼ନ୍ତି । ଆଉ ବିପଦ ହେଲା । ହଳ ଚାଲିବ ବୋଲି ମୋତେ ସାରାଦିନ ସେଠାରେ ଜଗିରେ ବସି ରହିବାକୁ ହେବ ! ମୁଁ ପୁଣି ଏକଥା ମାଈଁଙ୍କୁ କହିବାରୁ ସେ ପରାମର୍ଶ ଦେଲେ, "ତୁମର ଦୁର୍ଭୋଗ ତୁମେ ଭୋଗୁଛ, ବଳଦ ହଳକ ନିଜର ଭୋଗ କରୁଛନ୍ତି । ତୁମେ ତାଙ୍କୁ ବୁଝାଇ କହିଦିଅ ଯେ, ସେମାନେ ଯେପରି ତାଙ୍କ କର୍ତ୍ତବ୍ୟରେ ହେଳା ନ କରନ୍ତି ।" ପରଦିନ ପୁଣି ଜମି ଉପରକୁ ଗଲି । ହଳ କରିବା ଆରମ୍ଭ ହେଲା । କିଛି ସମୟ ପରେ ମୁଁ ଗୋଟିଏ ଗାମୁଛା ବିଛାଇଦେଇ ବିଲ ହୁଡ଼ାରେ ଶୋଇ ରହିଲି । କାରଣ ମୁଁ ନ ରହିଲେ ତ ସେମାନେ କାମ କରିବେ ନାହିଁ । କିନ୍ତୁ ମୋତେ ଶୋଇବା ଦେଖି ବଳଦ ପୁଣି ଶୋଇଗଲେ । ମୂଲିଆ ମୋତେ ଡାକି କହିଲେ, "ବାବା ଦେଖନ୍ତୁ, ବଳଦ ପୁଣି ଶୋଇଲେଣି ।" ମୁଁ କହିଲି, "ଦେଖ ସେମାନଙ୍କୁ ମାଡ଼ ଦିଅନା । ମୁଁ ଯାଉଛି ।" ତା'ପରେ ଗୋରୁଙ୍କ ପାଖକୁ ଯାଇ କହିଲି, "ଦେଖ ବାପୁ, ମୁଁ ଏଠାରେ ରହୁଥିବା ସତ୍ତ୍ୱେ ତୁମେ ଚାଷ ନ କରିବା ନିହାତି ଅନ୍ୟାୟ କଥା । ମୁଁ ତ କେଉଁଆଡ଼େ ଯାଉନ, ତୁମେ ତୁମର କାମ କରୁନା କାହିଁ ?" ଗୋରୁ ପୁଣି ଚାଲିବାକୁ ଆରମ୍ଭ କଲେ । ମୁଁ ଆସି ଶୋଇଲି । ସର୍ବମୋଟ ଘଣ୍ଟାଏ କାଳ ଚାଷ ହୋଇଥିବ । ଏହି ଅବସ୍ଥାରେ ମଣିଷ ଭଳି ଗୋରୁ ଆସି ମୋତେ କହୁଥିବା ଶୁଣିବାକୁ ପାଇଲି—ସେମାନେ କହିଲେ, "ବାବା,

ଆମେ ଆଉ ଚ୍ଚଲ ପାରବୁ ନାହିଁ । ଆମକୁ ଗ୍ରୁଡ଼ିଦିଅନ୍ତୁ । ଆଉ ତାହିଁକ କଷ୍ଟ ଦେଉଛନ୍ତି ?" ମୁଁ କହିଲି, "ତୁମକୁ କଷ୍ଟ ଦେଉଛୁ ନା ମୁଁ କଷ୍ଟ ପାଉଛୁ । ବାବାଜି ହୋଇ ମୋ ଭାଗ୍ୟରେ ଏପରି ଦୁର୍ଯୋଗ ଥିଲା ଯେ ମୁଁ କୃଷି ଧନ୍ଦା ଧରି ହଳରେ ପଡ଼ି ରହୁଛୁ । ବାବାଜିଙ୍କୁ ତୁମେ ଏତେ କଷ୍ଟ କାହିଁକି ଦେଉଛ ? ଘରରେ ମୁଁ ଆଉ ଏଠି କେତେ ସମୟ ପଡ଼ି ରହିବି ? ଠିକ୍‌ଏ ଚ୍ଚଲ, କୃଷି ନ କଲେ ତ ତୁମର ରକ୍ଷା ନାହିଁ । ପୁଣି ଚୃଷ ବାସ ବ୍ୟବସ୍ଥା ନ ବୁଝିଲେ ମୋର ମଧ୍ୟ ନିସ୍ତାର ନାହିଁ ।" ମୋଠାରୁ ଏପରି କଥା ଶୁଣି ସେମାନେ କହିଲେ, "ଆଚ୍ଛା ବାବା, ଆମେ ଏଥର ଚୃଷ କରିବୁ, ଆପଣଙ୍କୁ ଆଉ ଏଠି ବସିବାକୁ ହେବ ନାହିଁ ।" ପରେ ପରେ ମୁଁ ଉଠି ପଡ଼ି ବଳଦଙ୍କୁ ଉଠାଇଦେବା ମାତ୍ରେ ସେମାନେ ଚ୍ଚଲିବାକୁ ଲାଗିଲେ । ସେହିଦିନଠାରୁ ସତକୁ ସତ ମୋତେ ଆଉ ଜମି ଉପରେ ରହିବାକୁ ହୋଇନ । ଶଗଡ଼ଟଣା ଓ ଯାବତୀୟ କୃଷିକାମ ସେମାନେ ଖୁବ୍ ଦକ୍ଷତାର ସହ କରିବାକୁ ଲାଗିଲେ ।

## ସାଧୁଙ୍କ ଭବିଷ୍ୟବାଣୀ

ହଠାତ୍ କେଉଁଆଡ଼ୁ ଜଣେ ସାଧୁ ଆସି ପହଞ୍ଚିଲେ । ଖୁବ୍ ଭଲ ସାଧୁ ଓ ଭୂତ ଭବିଷ୍ୟତ ଜ୍ଞାତା ବୋଲି ଶୁଣି ମୁଁ ତାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଗଲି । ସେ ମୋତେ ସାଙ୍କେତିକ ଭାଷାରେ କହିଲେ, "ପ୍ରବଳ ଝଡ଼ ଆସୁଛି, ଘର ଉଡ଼ାଇ ଦେବ ।" ଏହା ଶୁଣି ମୁଁ ଉତ୍ତର ଦେଲି, "ଘର ଉଡ଼ିଗଲେ ନୂଆ ଘର ତୋଳିବା ।" ସେ ପୁଣି କହିଲେ, "ସାଧୁର ଘର ମୁଁ ଉଡ଼ିଯିବାକୁ ଦେବି ନାହିଁ ।" ମୁଁ କହିଲି, "ଦୂରଦୃଷ୍ଟି ବଳରେ ଝଡ଼ର ସମ୍ଭାବନା ଯିଏ ଜାଣିପାରୁଛି ସେ ଚାହିଁଲେ ତ ସେଥିରୁ ରକ୍ଷା କରି-ପାରିବ । ମୋର ସେଥିରେ ଯାଏ ଆସେ କେତେ ?" ସାଧୁ ତାପରେ ମୋ ସଙ୍ଗେ ଆମ ଘର ଆଡ଼କୁ ଆସିଲେ । ମାଈଙ୍କୁ ମୁଁ କହିଲି, "ମା, ଖୁବ୍ ବଡ଼ ଝଡ଼ ଆସୁଛି, ଆମ ଘର ଭାଙ୍ଗିଦେବ ।" ମାଈ କହିଲେ, "ତୁମେ ଦୁହେଁ ବୁଝ ଭାଇପର; ଯାହା ଭଲ ଭାବିବ ତା'ଇ କର । ମୋ ପକ୍ଷରେ ସବୁ ସମାନ ।" ମୋତେ ଉଦ୍ଦେଶ୍ୟ କରି ସାଧୁ କହିଲେ, ଝଡ଼ ସମୟରେ ଆଖି

ଭୂଜ ମାଟି ଉପରେ ଶୋଇପଡ଼ିଲେ ସମସ୍ତ ବିପଦ କଟିଯିବ । ଝଡ଼ ଉପରେ ଉପରେ ବହି ଚାଲିଯିବ ।" ମୁଁ କହିଲି, "ତୁମେ ଆସି ଏପରି କରିବ ! (ଅର୍ଥାତ୍ ମୋ ନିଜର କର୍ତ୍ତୃତ୍ୱ କିଛି ନାହିଁ ! ଗୁରୁ ପରମେଶ୍ୱରଙ୍କ ଇଚ୍ଛା ଉପରେ ମୁଁ ନିର୍ଭରଶୀଳ । ଠିକ୍ ବେଳରେ ସେଇ ଆସି ଯାହା କରିବା କଥା କରିବେ ।) ସେ ସମ୍ମତ ହୋଇ ପ୍ରସ୍ଥାନ କଲେ ।

## ମୋର ପ୍ରାଣସଙ୍କଟ

ପ୍ରାୟ ମାସକ ପରେ ସ୍ଥାନୀୟ କୁଚକ୍ରୀ ବ୍ରାହ୍ମଣଦଳ ଗ୍ରାମର ଅନ୍ୟାନ୍ୟ ଲୋକଙ୍କୁ ଡ଼ାକାଇ କହିଲେ, "ଦେଖ, ତୁମେମାନେ ଆମର ଏକ ଉପକାର କରିପାରିବ ? ଚାଲ ସମସ୍ତେ ଏକାଠି ହୋଇ ସେହି ବ୍ରହ୍ମଚାରୀକୁ ଖଣ୍ଡ ଖଣ୍ଡ କରି କାଟି ନଈରେ ଭସାଇଦେବା ।" ଏପରି ଜଘନ୍ୟ ପ୍ରସ୍ତାବ ଯେଉଁମାନଙ୍କୁ ସୁହାଇଲା, ସେମାନେ ଅସ୍ତ୍ର ଶସ୍ତ୍ର ଆଣିବାକୁ ନିଜ ନିଜ ଘରକୁ ଗଲେ । ଏତିକବେଳେ ଗୋଟିଏ ମାହାତ ସ୍ତ୍ରୀ ଲୋକ ମୋ ନିକଟକୁ ଆସି କାନ୍ଦିବାକୁ ଲାଗିଲା । ମୁଁ ପଚାରିଲି, "ତୁମର ପୁଣି କ'ଣ ହୋଇଛି ?" "ଆପଣଙ୍କ ଉପରକୁ ଭୟଙ୍କର ବିପଦ ମାଡ଼ି ଆସୁଛି । ଦଳେ ଲୋକ ଆପଣଙ୍କୁ ପ୍ରାଣରେ ମାରିଦେବାକୁ ଚକ୍ରାନ୍ତ କରୁଛନ୍ତି । ଅତି ଶୀଘ୍ର କେଉଁ ଆଡ଼କୁ ପଳାଇଯାଇ ଜୀବନ ରକ୍ଷା କରନ୍ତୁ । ସେଥିପାଇଁ ମୁଁ ଖୁବ୍ ଆତଙ୍କିତ"— ସେ କହିଲା । ମୁଁ ତା କଥା ଶୁଣି ସାରିବା ସଙ୍ଗେ ସଙ୍ଗେ କହିଲେ, 'ଦେଖ, ତୁ ମୋତେ ଏ ସମ୍ବାଦ ଦେବାକୁ ଆସିଛୁ ବୋଲି ସେମାନେ ଜାଣିପାରିଲେ ବିପଦରେ ପଡ଼ିବୁ । ତେଣୁ ଶୀଘ୍ର ଏଠାରୁ ଚାଲିଯା ।' ସ୍ତ୍ରୀ ଲୋକଟି ସେଠାରୁ ଚାଲିଯିବା ପରେ ମୋର ସେ ସାଧୁଙ୍କର କଥା ମନେ ପଡ଼ିଲା । ସାଧୁଙ୍କର ଭବିଷ୍ୟତ ବାଣୀ ଚିନ୍ତା କରୁ କରୁ ମୋର ମନ ସ୍ଥିର ହୋଇ ଆସିଲା । କ୍ରମଶଃ ମନରୁ ଭୟ ଦୂର ହୋଇଯାଇ ଏକରକମ ଦୃଢ଼ତା ଓ ନିର୍ବିକାର ଭାବର ଉଦୟ ହେଲା । ଘରେ ମାଇଁ ବସି ମୁଡି ଖାଉଥିଲେ । ଏ ସମୟରେ ଲୋକମାନେ ହାତରେ ନାନା ପ୍ରକାର ଶସ୍ତ୍ର ଧରି ଆସି ପହଞ୍ଚିଗଲେ ଓ ଆମ ଘର ଚାରିପଟେ ଘେରିଗଲେ । ପ୍ରାୟ ୧୫।୨୦ ଜଣ ସଶସ୍ତ୍ର ହୋଇ ଘରର ଦୁଆର ମୁହଁକୁ ପଶିଆସି "ଧର ଧର" "ମାର ମାର" ଚିତ୍କାର କରିବାକୁ

ଲାଗିଲେ । ଏହା ଦେଖି ମୁଁ ପଚାରିଲି, "ତୁମେ କ'ଣ ଚାହୁଁଛ ଓ ଏ ସବୁ କଣ କହୁଛ ।" ସେମାନେ ମୋତେ ଆଦେଶ କଲେ, "ତୁମେ ଏ ପାଖକୁ ଆସିଲ ଆସ ତ ।" ଏଥି ପୂର୍ବରୁ ମୁଁ ନିର୍ଭୀକ ହୋଇସାରିଥିଲି ଏବଂ ବିନା ବିଚାରରେ ସେମାନଙ୍କ ପାଖକୁ ଯାଇ ପହଞ୍ଚିଗଲି । ସେମାନେ ମୋତେ ଚାରି ପଟୁ ଘେରିଯାଇ କହିବାକୁ ଲାଗିଲେ, 'କାଟ କାଟ" । ମୁଁ ସହଜ ଭାବରେ କହିଲି, ଏଥିପାଇଁ ଏତେ ଚିତ୍କାର ! ବେଶ୍ ତ କାଟ —ନିଶ୍ଚିନ୍ତ ହୋଇ ମୋତେ କାଟି ପକାଅ । ଜଣେ ତାଙ୍କ ମଧ୍ୟରୁ କହିଲା, ଆଗେ ମୁଁ ପାଦ ଦୁଇଟା କାଟି ଦିଏ । ଆଉ ଜଣେ କହୁଥାଏ, ଆରେ, ହାତ ଦୁଇଟା ଆଗ କାଟିପକାଉନୁ !

## ଯମଙ୍କ ପ୍ରଭାବ

ଏକଥା ଶୁଣି ମୁଁ ହାତ ବଢ଼ାଇଦେଲି—ତୁମର ଯା ଇଚ୍ଛା କରିଯାଅ । ଶେଷକୁ ଜଣେ କହିଲା, ଏକାଥରେ ଗଳାଟିକୁ ଧରି କାଟିଦିଅ । ଏକଥା ସରୁ ନ ସରୁ ମୁଁ ମୋ ମୁଣ୍ଡ ପୋଢ ଦେଖାଇଦେଲି—ଠାକୁରଙ୍କର ଏ ଅସୀମ କୃପା ସେ ସମସ୍ତ ଲୋକ ଶସ୍ତ୍ର ଫୋପାଡ଼ିଦେଇ ଭୂମି ଉପରେ ପ୍ରଣତ ହୋଇଗଲେ ଓ କହିବାକୁ ଲାଗିଲେ ଯେ, "ବାବା ! ଆମେମାନେ ଭୟାନକ ପାପୀ— ଆମେ ମୂଢ଼ମତି ପାଷାଣ୍ଡଙ୍କ ଭଳି ବ୍ୟବହାର କରି ଆପଣଙ୍କୁ ନିର୍ଯାତିତ କରିଛୁ— ଅନୁଗ୍ରହ କରି ଆମମାନଙ୍କୁ କ୍ଷମା କରନ୍ତୁ । ଆମର ଅନ୍ୟ ଗତି ନାହିଁ ।" କ୍ଷଣକ ଭିତରେ ଏହି ଅପ୍ରତ୍ୟାଶିତ ପରିବର୍ତ୍ତନ ଦେଖି ମୁଁ ସମସ୍ତଙ୍କୁ ଉଠାଇ କୋଳାଇ ଧରିଲି ଓ କହିଲି, ଦେଖ, ଏଥିରେ ତୁମମାନଙ୍କର କୌଣସି ଦୋଷ ନାହିଁ । ଏହା ମୋପାଇଁ ଭଗବାନଙ୍କର ଏକ କଠୋର ପରୀକ୍ଷା । ମୁଁ ଏ ସମ୍ବନ୍ଧରେ ଆଗରୁ ସୂଚନା ପାଇଥିଲି । ମୋଠାରୁ ଆଶ୍ୱାସନା ପାଇ ସମସ୍ତେ ନିଜ ଘରକୁ ଚାଲିଗଲେ । ପରେ ମାଈଁ ଆସି ପଚାରିଲେ, ତୁମମାନଙ୍କର କ'ଣ ଚାଲିଥିଲା ? ମୁଁ କହିଲି ଗ୍ରାମବାସୀମାନେ ମୋତେ ମାରିବାକୁ ଆସିଥିଲେ । ଏହା ଶୁଣି ସେ ଖୁବ୍ ହସିଲେ ।

ଏହିପରି ଭାବେ ଅହିଂସା, ସତ୍ୟ ଆଦି ଯମ ପଞ୍ଚକର ଅବ୍ୟର୍ଥ ପ୍ରଭାବ ମୁଁ ସେଦିନ ଅଙ୍ଗେ ଲିଭାଇଥିଲି ।

---

# ଏକାଦଶ ଅଧ୍ୟାୟ

## ଟିକିଏ ଆଲୁଅ

### ପୁନର୍ବାର ସଂଶୟର ଆଭାସ

ଦିନ ଗଡ଼ି ଚାଲୁଥାଏ—ମନ କିନ୍ତୁ ତଥାପି ଉଡ଼ି ବୁଲୁଥାଏ । ମଝିରେ ମଝିରେ ପ୍ରବଳ ଉଦ୍‌ବେଗ ଆସି ଉପସ୍ଥିତ ହେଉଥାଏ । ସଂସାରକୁ ଯେଉଁ କାରଣରୁ ଆସିଲି, ସଂସାର ଯାହା ପାଇବାକୁ ଛାଡ଼ିଲି, ଆଜି ସୁଦ୍ଧା କୌଣସିଟିର ଯଥାଯଥ ପରିଚୟ ମିଳିଲା ନାହିଁ । ଦୁଇ ଚାରିଦିନ ମନରେ ସ୍ଥିରତା ଆସିଲା—ଭାବିଲି ଏଇ ଅବସ୍ଥା ବୋଧେ ସ୍ଥାୟୀ ହେବ ଆଉ ଅଶାନ୍ତ ରହିବ ନାହିଁ—କିନ୍ତୁ ହାୟ, ମୁଁ ନିଜର ଗଢାବନ୍ଧା ବିଚାର ଓ ସିଦ୍ଧାନ୍ତରେ ସନ୍ଦିହାନ ହୋଇ ଉଠିଲି । ପରବର୍ତ୍ତୀ କାଳରେ ବୁଝିପାରିଲି ଯେ ମାଈଙ୍କ ମଧ୍ୟରେ ଯେଉଁ ମାତୃଶକ୍ତିର ଲୀଳା ଅନୁଭୂତ ହେଲା ତାହା ଆଧ୍ୟାତ୍ମ୍ୟ ଧାରଣା ପାଇଁ ଏକ କେନ୍ଦ୍ର ଅବଶ୍ୟ ପ୍ରଦାନ କଲା । ମୋର ଆଭ୍ୟନ୍ତରୀଣ ଶକ୍ତିର ଜାଗରଣ ସଙ୍ଗେ ସଙ୍ଗେ ମନ ଉଚ୍ଚତର ଭୂମି ଏବଂ ଊର୍ଦ୍ଧ୍ୱସ୍ଥିତ ଲୋକମାନଙ୍କୁ ସଞ୍ଚାରିତ ହେବାକୁ ଲାଗିଲା । କିନ୍ତୁ ଏହା କୂଟସ୍ଥ ହୋଇ ରହିପାରିଲା ନାହିଁ । ନିମ୍ନ-ଲୋକର ଆକର୍ଷଣରୁ ଏହା ସଂପୂର୍ଣ୍ଣ ରୂପେ ମୁକ୍ତ ହୋଇ ସ୍ୱାଧୀନ ବା ସ୍ୱୟଂନିଷ୍ଠ ହୋଇପାରିଲା ନାହିଁ । ମାଈଁ ତତ୍ତ୍ୱସିଦ୍ଧା ତ ନ ହେବା ସ୍ୱାଭାବିକ, ସେ କୃପାସିଦ୍ଧା ଥିଲେ । ତାଙ୍କର ଶରୀର ଓ ପରିସ୍ଥିତି ମହାଶକ୍ତିଙ୍କର ଲୀଳା ପାଇଁ ଏକ ଯୋଗ୍ୟ ମାଧ୍ୟମ ହୋଇଯାଇଥିଲା । ଫଳରେ ତାଙ୍କର ସୂକ୍ଷ୍ମ ଦୃଷ୍ଟି ଖୋଲିଥିଲା ଏବଂ ତାଙ୍କୁ ଆଶ୍ରୟ କରି ନାନା ଅଲୌକିକ ବିଭୂତି ପ୍ରକାଶିତ ହେଉଥିଲା । ଶକ୍ତି ଉପରେ ତାଙ୍କର ସଂଯମ ଆସିଥିଲା —ସେ ଇଚ୍ଛା କରି ଶକ୍ତିର କ୍ରିୟାକୁ ପ୍ରବୃଦ୍ଧ ବା ସଂବୃତ କରିପାରୁ-

ଥିଲେ ଓ ମୋର ମାନସିକ ବୃତ୍ତିମାନଙ୍କୁ ପ୍ରଭାବିତ କରିପାରୁଥିଲେ । କିନ୍ତୁ ଏହି ଲୀଳାର ତାତ୍ତ୍ୱିକ ରହସ୍ୟ ସେ ମୋତେ ବୁଝାଇପାରୁଥିଲେ । ସେ ନିଜେ ଇଚ୍ଛା କରି କୌଣସି ସାଧନ ଭଜନ କରିନଥିଲେ । କୃପାସିଦ୍ଧା ହୋଇ ଥିବାରୁ ସାଧନ ଭଜନ କରିବାରେ ତାଙ୍କର ପ୍ରୟୋଜନ ନଥିଲା । ମା'ଙ୍କୁ ପାଇବାକୁ—ତାଙ୍କର କୃପାଲାଭ କରି ତଦୀୟ ଲୀଳା ରହସ୍ୟ ଅବଧାରଣା କରିବା ପାଇଁ ସାଧନା କରାଯାଏ । ମାତୃ ସ୍ୱରୂପରେ ପ୍ରତିଷ୍ଠିତ ହୋଇ ସାରିଲେ ଆଉ ସାଧନାର ଆବଶ୍ୟକତା କେଉଁଠି ? ସେ ସ୍ୱୟଂ ମାତୃସ୍ୱରୂପା, ତାଙ୍କଠାରୁ ପ୍ରତ୍ୟକ୍ଷ ଭାବେ ତତ୍ତ୍ୱଲାଭ କରାଯାଇନପାରେ । କିନ୍ତୁ ଯେ ସିଦ୍ଧ ପୁରୁଷ ଅର୍ଥାତ୍ ଯାହାର ଅନ୍ତଃପୁରରେ ମାତୃଶକ୍ତି ଉଦ୍‌ବୋଧିତା ଏବଂ ଶକ୍ତି କୃତସ୍ଥା ବୋଲି ଯାହାଙ୍କର ସାଧନାଲବ୍ଧ ଅନୁଭୂତି ଅଛି ତାଙ୍କଠାରୁ ଏହି ତତ୍ତ୍ୱ ଲାଭକରିବାକୁ ହୁଏ । ମାଈଁ ତେଣୁ ମୋତେ ଦିନେ କହିଲେ ଖୋକା, ତୁମେ ପାଣ୍ଡୁଇ ଗ୍ରାମରେ ଥିବା ବାବା ନନ୍ଦକ୍ଷେପାଙ୍କ ଆଶ୍ରମଠାକୁ ଯାଅ । ନନ୍ଦ କ୍ଷେପା ଜଣେ ଉଚ୍ଚସ୍ତରର ସିଦ୍ଧ ସାଧୁ । ସେ ଅନାୟାସରେ ତୁମ ଚିତ୍ତର ସ୍ଥିରତା ପାଇଁ ଉପଦେଶ ଦେଇପାରିବେ ।

## ଅସହାୟ ଭାବ

ତାଙ୍କର ଏପରି ପରାମର୍ଶ ଶୁଣି କରି ମୋର କରଣୀୟ ହଠାତ୍ ନିର୍ଣ୍ଣୟ କରିପାରିଲି ନାହିଁ । ଗତ କେତେବର୍ଷ ଧରି ମାତୃଶକ୍ତିର କୃପା ଲାଭ ପାଇଁ ନିରବଚ୍ଛିନ୍ନ ଭାବେ ଚାଲିଥିବା ସାଧନା ଓ ସଂଘର୍ଷ କଥା ମୋର ମନକୁ ଆସିଲା । ଗୋଟିଏ ଆଶ୍ରମରୁ ଆଉ ଏକ ଆଶ୍ରମ, ଜଣେ ସାଧୁଙ୍କ ପାଖରୁ ଆଉ ଜଣକ ପାଖକୁ ଯାଇ କେତେ ସ୍ଥାନରେ ଯେ ବୁଲିବାକୁ ହେବ ତାର କୌଣସି ଇୟତ୍ତା ନାହିଁ ମାଈଁଙ୍କ ପାଖରେ ରହି କେତେକ ବିଶେଷ ଅନୁଭୂତି ଅବଶ୍ୟ ଲାଭ ହେଲା । ତାଙ୍କର ପାଖରେ ଅଧିକ କାଳ ବାସ କଲେ କଣ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ସମ୍ଭବ ନୁହେଁ ? ମନ, ଚିତ୍ତ ଏପରି ଅସ୍ଥିର ହୋଇ ଉଠୁଛି କାହିଁକି ? ପୁଣି ସ୍ଥାନୀୟ ଲୋକଙ୍କର ମତିଗତି ଅତି ବିଚିତ୍ର --ସେମାନେ ଆଜି ବନ୍ଧୁ ଭାବେ ବ୍ୟବହାର କରୁଛନ୍ତି ତ କାଲି କେଉଁ କୌଣସି

ଗୁଜବ ଉଠାଇ ଦେଇ ପ୍ରଚାର କରିବା ଫଳରେ ଦୁର୍ଜ୍ଜାନ୍ତ ଭାବ ଧାରଣ କରି ଶତ୍ରୁତା ଆଚରଣ କରୁଛନ୍ତି । ଏପରି ଅବସ୍ଥାରେ ମାଈଙ୍କ ପାଖରେ ଆଉ ବେଶି ଦିନ ରହି ପାରିବା ସମ୍ଭବପର ହେଲାନି । ହଠାତ୍ ସେଥିରୁ ରାତା-ରାତି ବାହାରି ପଡ଼ି ପାଣ୍ଡୁର ଗ୍ରାମସ୍ଥ ନନ୍ଦକ୍ଷେପାଙ୍କ ଆଶ୍ରମରେ ପହଞ୍ଚିଗଲି ।

## ନନ୍ଦକ୍ଷେପାଙ୍କ ସହିତ ସାକ୍ଷାତ୍

ଆଶ୍ରମ ବାରନ୍ଦାରେ ଜଣେ ବୃଦ୍ଧ ବ୍ୟକ୍ତି ଉପବିଷ୍ଟ । ମୁଁ ତାଙ୍କୁ ପଚାରିଲି, "ଏ କଣ ନନ୍ଦକ୍ଷେପାଙ୍କ ଘର ?" 'ହଁ' ସେ କହିଲେ । 'କ୍ଷେପା ଘରେ ଅଛନ୍ତି ?' 'ହଁ ଅଛନ୍ତି, ବସ ।' 'ସେ କେଉଁଠି ଅଛନ୍ତି--ଆପଣ ମୋତେ ଦେଖାଇ ଦେଇ ପାରିବେ ?' ସେ ପୁଣି କହିଲେ, 'ହଁ ବସ ।' ଏପରି ଦୁଇ ତିନ ଥର ଏକାପରି ଉତ୍ତର ଶୁଣିବା ପରେ ମୋର ଖୁବ୍ ରାଗ ହେଲା । ମୋର ଏପରି ଉଗ୍ରଭାବ ସ୍ୱଭାବଗତ ଥିଲା । ଗୋଟିଏ କଥାକୁ ଦୁଇ ତିନ ଥର କହିବା ପରେ ମୋର ଖୁବ୍ ରାଗ ହୋଇଯାଉଥିଲା । ମୁଁ ଉତ୍ତ୍ୟକ୍ତ ଚିତ୍କାର କହିଲି, 'ବେଟା, ଏକା ଗୁଳିଗୁଡ଼ାଙ୍କେ ତୋର ମୁଣ୍ଡ ଛୁଣ୍ଡାଇ ଦେବି । କଣ ଥଟ୍ଟା ଲଗିଛି ?' ମୋଠାରୁ ଏତକ ଶୁଣି ସେ ହସିବାକୁ ଲାଗିଲେ । ମୁଁ ତାଙ୍କୁ ବିସ୍ମିତ ହୋଇ ଗୁହିଁ ରହିଲି ଏବଂ ଭାବିଲି, ଆରେ, ଏ ତ ମୋଠୁ ବେଶୀ ପାଗଳ ଦେଖୁଛି । ତାପରେ ମୁଁ ଘର ଭିତରକୁ ପଶିଯାଇ ଦେଖିଲି ଯେ ଜଣେ ବୁଢ଼ୀ ଶୋଇଛନ୍ତି । ସେ ମୋତେ ଦେଖି କହିଲେ, 'ବାବା, ଆଜି କ୍ଷେପାଙ୍କ ପାଇଁ ଗୁରିଟି ପଇସା ଦେବ ।' 'ମୋ ପାଖରେ ତ ପଇସା ନାହିଁ'—ମୁଁ କହିଲି । କିନ୍ତୁ ମୋ କଥାରେ ବିଶ୍ୱାସ ନ ହେବାରୁ ପଇସା ପାଇବା ପାଇଁ ସେ ମୋର ଲୁଗାପଟା ଟଣାଓଟରା କରିବାକୁ ଲାଗିପଡ଼ିଲେ । ମୁଁ ପୁଣି ବିରକ୍ତ ହୋଇ କହିଲି, ବେଟୀ, ଆଜି ତୁମର ସାଧୁଗିରି ଛଡ଼ାଇ ଦେଉଛି ରହ । ଏଥିରକ ବାହାରେ ବସିଥିବା ସେହି ବୃଦ୍ଧ ବ୍ୟକ୍ତି କହିଲେ ଛି ! ମାଈ, ତୁ ତାଙ୍କଠାରୁ ଖାଲି ପଇସା ମାଗିଲୁ କିଛି ଭଲ ଜିନିଷ ମାଗିଲୁ ନାହିଁ ? ସେ ସ୍ୱାମୀ ନିଗମାନନ୍ଦଙ୍କ ଶିଷ୍ୟ । ତାଙ୍କଠାରୁ ଖୁବ୍ ଭଲ ଜିନିଷ ମାଗିନେବା ଦରକାର । ଏହା ଶୁଣି ମୋର ହଠାତ୍ ମନେ ହେଲା,

ମୁଁ ଯେ ନିଗମାନନ୍ଦ ଠାକୁରଙ୍କ ଶିଷ୍ୟ ଏକଥା ଏ ବୃଦ୍ଧ ବ୍ୟକ୍ତି ଜାଣିଲେ କିପରି ?

ଏଇ ତେବେ କ'ଣ ସାଧୁ ନନ୍ଦକ୍ଷେପା ! ଏପରି ବିଚାର କରି ମୁଁ ତାଙ୍କୁ ସଭ୍ରମରେ ପ୍ରଣାମ କରିବାକୁ ଯାଉଛି, ସେ ମୋ ହାତକୁ ଧରିପକାଇ ମୋତେ ନେଇ ତାଙ୍କ କୋଳରେ ବସାଇଲେ । ମୁଁ ତାଙ୍କୁ କହିଲି, ତୁମେମାନେ ପରମାନନ୍ଦରେ ବାସ କରିବ ଆଉ ମୁଁ ଦିନରାତି ଏପରି ଅଶାନ୍ତି ମଧ୍ୟରେ ରହିଥିବି ? ସେ ସଙ୍ଗେ ସଙ୍ଗେ କହିଲେ ଯେ, ତୁ ପାହାଡ଼ର ଗୁହାରେ ଯାଇ ରହିଲେ ଶାନ୍ତି ପାଇବୁ । ମୁଁ ପଚାରିଲି, କେଉଁ ପାହାଡ଼— କିପରି ଯିବାକୁ ହେବ ? "ସଂଗ୍ରାମ ଥାନାର କେଣ୍ଡୁଆ ଗ୍ରାମ ନିକଟରେ ବଡ଼ାହୁଣ୍ଡି ପାହାଡ଼ ଅଛି । ମୁଁ ସେହିଠାରେ ରହି ସିଦ୍ଧି ଲାଭ କରିଥିଲି ।" ମୁଁ ପୁଣି ପଚାରିଲି, "ସେଠାରେ କେତେଦିନ ରହିବାକୁ ହେବ ?" "ଛଅଦିନ ରହିଲେ ଯଥେଷ୍ଟ" ସେ କହିଲେ । "ଦେଖନ୍ତୁ, ଛଅଦିନ କାହିଁକି, ସାତଦିନ ରହିବାକୁ ମୁଁ ପ୍ରସ୍ତୁତ, କିନ୍ତୁ ମୋର ଶାନ୍ତି ଲାଭ ନ ହେଲେ ଆସି ତୁମକୁ ମାଡ଼ ଦେଇ ସିଧା କରିଦେବି !" ମୋ କଥା ଶୁଣି ସେ ହସିବାକୁ ଲାଗିଲେ । ମୁଁ ସଙ୍ଗେ ସଙ୍ଗେ ପ୍ରଣାମ କରି ସେଠାରୁ ବିଦାୟ ନେଇ । ବାହାରିଗଲି ମକେଣ୍ଡୁଆ ଗ୍ରାମର ଜମିଦାରଙ୍କ ପାଖରେ ପହଞ୍ଚି ମୋର ପାହାଡ଼ରେ ରହିବା ଅଭିପ୍ରାୟ ଜଣାଇଲି ଓ ପଚାରିଲି, ଆପଣଙ୍କର ଏଥିରେ କିଛି ଆପତ୍ତି ଅଛି କି ? ସେ କହିଲେ, "ମୋର ସେଥିରେ ଆଦୌ ଆପତ୍ତି ନାହିଁ । ତେବେ ଆପଣ ଆମ ଏଠାରେ ନ ରହି ପାହାଡ଼ ଗୁହାରେ କାହିଁକି ରହିବେ ? ସେଠାରେ କେହି ତିଷ୍ଠି ପାରିନାହିଁ ।" ମୁଁ କହିଲି— ତୁମ ଘରେ ମୁଁ ରହିବା ପାଇଁ ଆସିନି । ସେ କହିଲେ—"ମୋ ପାହାଡ଼ରେ ତ କିଛି ଖାଦ୍ୟ ହେଉନାହିଁ ତୁମେ ସେଠାରେ ରହିବା ହାରି···।" ମୁଁ ତାଙ୍କର ପରାମର୍ଶରେ କର୍ଣ୍ଣପାତ ନ କରି ପାହାଡ଼ ଉପରକୁ ଚାଲିଗଲି ଓ ଅନେକ ଅନୁସନ୍ଧାନ ପରେ ନନ୍ଦକ୍ଷେପାଙ୍କ କଥିତ ଗୁହାଟି ଦେଖିବାକୁ ପାଇଲି । ଦେଖିବାକ୍ଷଣି ମନରେ ଅନାବିଳ ଶାନ୍ତିର ଉଦୟ ହେଲା । ସହଜେ ସକାଳୁ

ଖିଆ ହୋଇନଥାଏ, ଖସ୍ୱରେ ପାହାଡ଼ ବୁଲିସାର ଅଣ୍ଡା ଜାଗା ମିଳିଗଲା; ଗୁହାରେ ପ୍ରବେଶ କରି ବିଶ୍ରାମ କରୁ କରୁ ନିଦ୍ରାଭିଭୂତ ହୋଇ ପଡ଼ିଲି ।

## ବଡ଼ାହୁଟୁ ପାହାଡ ଗୁହାଭିତରେ ।

ଦିନ ଗୋଟାକଠାରୁ ରାତି ୮ଟା ପର୍ଯ୍ୟନ୍ତ ବୋଧହୁଏ ଅଚେତ ହୋଇ ରହିଥିବି । ନିଦ ଭାଙ୍ଗିଯିବାରୁ ଦେଖିଲି ଚାରିପଟେ ଘନ ଅନ୍ଧକାର ଘେରି ରହିଛି । ବର୍ତ୍ତମାନ କରେ କ'ଣ ? କୁଆଡେ ଚାଲିଯିବାର ଉପାୟ ନାହିଁ । କ୍ରମେ ମନରେ ଭୟର ସଞ୍ଚାର ହେଲା । ଜମିଦାରର କଥା ମନେ ପଡି ଭୂତଭୟ ହେଲା, କାରଣ କେହି ସେଠାରେ ତିଷ୍ଠି ରହିପାରନ୍ତି ନାହିଁ । ଗୁହା ଭିତରେ ରହିବାକୁ ମନ ହେଉନଥାଏ । ବାହାରକୁ ଚାଲିଯାଇ ମଧ୍ୟ ନିସ୍ତାର ନାହିଁ । ମୁଁ ଭୟରେ ଛଟପଟ ହେବାକୁ ଲାଗିଲି । ମନେ ହେଲା ଯେପରି ଅଳ୍ପ ସମୟ ମଧ୍ୟରେ ମରଣର ସମ୍ମୁଖୀନ ହେବାକୁ ହେବ । (ଏଠାରେ ସ୍ମରଣୀୟ ଯେ ଅଜ୍ଞାତରେ ମାଉଁଙ୍କ ଘରେ ମାତୃଶକ୍ତି ଦର୍ଶନର ପ୍ରତୀକ୍ଷା କଲାବେଳେ ମୁଁ ଆଦୌ ଭୟଗ୍ରସ୍ତ ହୋଇ ନଥିଲି) ଏତିକିବେଳେ କିଏ ଯେପରି ଚେତାଇ ଦେଲା, ଆରେ, ତୋର ତ ଗୁରୁ ଅଛନ୍ତି ! ଏପରି କେଉଁ ସ୍ଥାନ ଅଛି, ଯେଉଁଠି ସେ ନାହାନ୍ତି ? ସଙ୍ଗେ ସଙ୍ଗେ ଅଳ୍ପ ଅଳ୍ପ ମାତ୍ରାରେ ସାହସ ସଞ୍ଚିତ ହେବାକୁ ଲାଗିଲା । ପ୍ରବଳ ଆବେଗର ସହ ଠାକୁରଙ୍କୁ ଡାକିବାକୁ ଆରମ୍ଭ କରିଦେଲି । ଡାକିବା ଯେତିକି ଗାଢ଼ ହେଲା ମାନସିକ ବଳ ଓ ଶାନ୍ତି ସେତିକି ବଢ଼ିବାରେ ଲାଗିଲା । ଭୟ ଓ ଅସ୍ୱସ୍ତି ଦୂର ହୋଇଗଲା । ଏକ ଖିଆଲରେ ପ୍ରାର୍ଥନା କଲି, "ଠାକୁର, ଏତେ ବଡ ଭୟରୁ ତ ମୋତେ ବଞ୍ଚାଇଲ, ଏହି ଅନ୍ଧକାରରେ ମୋର ଭୀଷଣ କଷ୍ଟ ହେଉଛି, ଟିକିଏ ଆଲୁଅ ପାଆନ୍ତିକି ?" ବଡ ଆଶ୍ଚର୍ଯ୍ୟର ବିଷୟ, ଏହି ଚିନ୍ତା କରିବା ସଙ୍ଗେ ସଙ୍ଗେ ପଥର ସନ୍ଧିରୁ ଯେପରି କିରଣ ଭଳି ଆଲୋକ ବାହାରି ଗୁହା ଭିତରଟି ଆଲୋକିତ କରିଦେଲା । ସେହି ଆଲୁଅରେ ମୁଁ ପାହାଡ଼ର ସକଳ ଅଂଶ ଦେଖିବାକୁ ପାଇଲି । କିଛି ସମୟ ପରେ ଦଳେ ପିଲାଙ୍କ କଣ୍ଠରୁ 'ହରିବୋଲ' କୀର୍ତ୍ତନ ଶୁଣିଲି । ଖାବଲ ପାଖରେ ଗାଁ

ନ ଥିଲେ ପିଲଙ୍କ ପାଟି ଶୁଣାଯିବ କୁଆଡ଼ୁ ? ମୁଁ ତେବେ ଏତେ ଡ଼ରୁଥିଲି କାହିଁକି ?

## ଋଷ୍ୟଶୃଙ୍ଗ ମୁନି

ପରେ ପରେ ଲକ୍ଷ୍ୟକଲି ଦୂରରୁ ଆଠଜଣ ଅଳ୍ପ ବୟସ୍କ ବାଳକ କୀର୍ତ୍ତନ କରି କରି ଆସୁଛନ୍ତି । କ୍ରମେ ସେମାନେ ଗୁମ୍ଫା ପାଖକୁ ଆସି କୀର୍ତ୍ତନ କରିବାରେ ଲାଗିଲେ । ତାପରେ ମୋ ଆଡ଼କୁ ଜଣେ ସାଧୁ ଆସୁଥିବା ଦେଖିଲି । ଭାବିଲି, ତେବେ ଏଠାରେ ସାଧୁ ମଧ୍ୟ ଅଛନ୍ତି ! ଖୁବ୍ ଭଲକଥା ! କିନ୍ତୁ ଏ କଣ, ସାଧୁ ଗୁମ୍ଫା ଭିତରେ ପଶି ମୋ ବୁକୁ ଉପରେ ବସୁଛନ୍ତି କାହିଁକି ? ତାଙ୍କର ଆଖି ଓ ମୁଖ କ୍ରୋଧରେ ଆରକ୍ତ ହୋଇଥିବା ଦେଖିଲି । ମନେହେଲା, କାପାଳିକ ନିଶ୍ଚୟ ! ଏବେ ମୁଁ କରେ କଣ ? ମୋତେ ସେ ମାରିବାକୁ ଉଦ୍ୟତ ହେଉଛନ୍ତି କାହିଁକି ? ସାଧୁ ନା ଗୋଟାଏ ଦୈତ୍ୟ ? କିଛି ସମୟ ଆଗରୁ ଅନ୍ଧାର ମଧ୍ୟରେ ମରଣର ଆସ୍ୱାଦ ପାଉଥିଲି; ଏବେ ଆଲୋକ ମଧ୍ୟରେ ସମାଧି ହେବ ନିଶ୍ଚୟ ! କିନ୍ତୁ ଦେହରେ ପ୍ରାଣଥିବା ଯାଏଁ ଏହାଙ୍କୁ ପ୍ରତିରୋଧ ନ କରି ଛାଡ଼ିବି ନାହିଁ । ଏପରି ବିଚାର କରି ତାଙ୍କ ଦାଢ଼ିକୁ ଖୁବ୍ ଜୋରରେ ଟାଣି ଧରିଲି । ଏଥର ସେ କହିଲେ, "ଭାଇ, ଛାଡ଼ିଦିଅ, ଛାଡ଼ିଦିଅ" । ତାପରେ ମୁଁ ଚିମୁଟାଟି ଧରି ତାଙ୍କୁ ପିଟିବାକୁ ଉଦ୍ୟତ ହେବାରୁ ସେ ପୁଣି କହିଲେ, "ଶାନ୍ତ ହୁଅ, ତୁମକୁ ମୁଁ କେବଳ ପରୀକ୍ଷା କରୁଥିଲି । ତୁମର ଇଷ୍ଟ ସିଦ୍ଧି ପାଇଁ ଆମର ଏହି ମିଳନ !" ଏପରି କହି ସେ ବ୍ରହ୍ମଜ୍ଞାନ ପ୍ରସଙ୍ଗ ଆଲୋଚନା କରିବାକୁ ଲାଗିଲେ । ଏତେ ସୁନ୍ଦର ବିଶ୍ଳେଷଣ, ଏଭଳି ଶକ୍ତିଶାଳୀ ଥିଲା ତାଙ୍କର ବ୍ୟକ୍ତିତ୍ୱ ଯେ ମୁଁ ବିଶେଷ ଭାବେ ପ୍ରଭାବିତ ହୋଇ ପଡ଼ିଲି । ତାଙ୍କର ବିବୃତ ତତ୍ତ୍ୱ ସମୂହ ମୋର ସଙ୍ଗେ ସଙ୍ଗେ ଉପଲବ୍ଧି ହେବାକୁ ଲାଗିଲା ଅର୍ଥାତ୍ ସେ ଯାହା ବୁଝାଉଥାନ୍ତି ସେ ସମସ୍ତ ମୂର୍ତ୍ତିମନ୍ତ ଭାବେ ପ୍ରତିଭାତ ହେବାକୁ ଲାଗିଲା । ମନରେ ଯେଉଁ ଗଭୀର ଆନନ୍ଦର ସ୍ଫୁରଣ ହେଲା ତାହା ଅବର୍ଣ୍ଣନୀୟ । ରାତି ପ୍ରାୟ ଦଶଟା ପର୍ଯ୍ୟନ୍ତ ଆଲୋଚନା ଚାଲିବା ପରେ ସେ କହିଲେ, "ବର୍ତ୍ତମାନ ମୋତେ ଯିବାକୁ ହେବ, କାରଣ ତୁମପାଇଁ ଜମିଦାର ଖାଇବାସାମଗ୍ରୀ ପଠାଇଛନ୍ତି ।"

(ଇତିମଧ୍ୟରେ ଜମିଦାରଙ୍କର ମୋ କଥା ମନେ ପଡ଼ିଛି । ମୁଁ ସକାଳୁ ଅଭୁକ୍ତ ଥିବା ଖିଆଲ କରି କେତୋଟି ଲୋକଙ୍କୁ ଦିଲାସେ କ୍ଷୀରସହ ମୋ ପାଖକୁ ପଠାଇଛନ୍ତି) । ମୁଁ ପଚାରିଲି, "ଆପଣ ତେବେ ଚାଲିଯିବେ କାହିଁକି ? ଲୋକେ ଆସିଲେ କଣ ହେବ ?" ସେ କହିଲେ "ମୋତେ ତୁମେ, ଏ ସାଧାରଣ ଚକ୍ଷୁ ପାଇବ ନାହିଁ । ମୋର ଦେହଟି ସ୍ଥୂଳ ନୁହେଁ, ସୂକ୍ଷ୍ମ । ଅନ୍ୟମାନଙ୍କ ଉପସ୍ଥିତିରେ ଆମର ଆଳାପ ଚାଲିବ କିପରି ?" ଏହା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି—ପଚାରିଲି, "ଆପଣଙ୍କ ପରିଚୟ ପାଇପାରେ କି ?" ସେ କହିଲେ ଯେ, ସେ ହେଉଛନ୍ତି 'ଋଷ୍ୟଶୃଙ୍ଗ ମୁନି' । ଏହି ଗୁମ୍ଫାଟି ତାଙ୍କର ତପସ୍ୟା ସ୍ଥଳୀ । ସେ ଏଇଠି ଆଆନ୍ତି ଏବଂ ପୁଣି ଅରେ ଆସି ଆବିର୍ଭୂତ ହେବେ । ଏହା କହି ସେ ଅନ୍ତର୍ହିତ ହେଲେ । ତାଙ୍କ ପଛେ ପଛେ ଆଠଜଣ ବାଳକ ମଧ୍ୟ ଉଭେଇ ଗଲେ । ଘୋର ଅନ୍ଧକାର ଦେଖାଦେଲା । ଅଳ୍ପ ସମୟ ପରେ ଜମିଦାର ପ୍ରେରିତ ଲୋକଗୁଡ଼ିକ ଆସି ପହଞ୍ଚିଲେ । ମୁଁ ସେମାନଙ୍କୁ କହିଲି ତୁମେ ଏଣିକି ତୁମ ଇଚ୍ଛାନୁଯାୟୀ ଏଠାକୁ ଆସି ମୋର ତପସ୍ୟା ଭଙ୍ଗ କରିବ ନାହିଁ । ମୋର ଦରକାର ବେଳେ ମୁଁ ନିଜେ ଗ୍ରାମକୁ ଯାଇ ଭୋଜନ କରି ଆସିବି ।

•

## ଆଧ୍ୟାତ୍ମିକ ଉଲ୍ଲାସ

ସେତେବେଳେକୁ ଦିବ୍ୟ ଆନନ୍ଦ ଧାମରେ ବାସ କରୁଥିବାରୁ ମୋର କ୍ଷୁଧା ତୃଷାର ଲେଶ ମାତ୍ର ନ ଥିଲା । ମନେ ହେଉଥିଲା, ଯେପରି ମୋର ଅସ୍ତିତ୍ୱ ଦେହ ଭିତରେ ନୁହେଁ, ବାହାରେ ! ସେ କି ଅପୂର୍ବ ଆନନ୍ଦ ! ସେତେବେଳେ କୌଣସି ବିଚାର ନାହିଁ ବିକାର ନାହିଁ, ଅଭାବ ନାହିଁ, ଅଶାନ୍ତି ନାହିଁ । କେବଳ ସଚ୍ଚିଦ୍ ଆନନ୍ଦମୟ ପରିପୂର୍ଣ୍ଣତା ସମସ୍ତ ଦେଶରେ ଓ କାଳରେ ବିରାଜମାନ । ଏଇ ଭାବରେ ରାତିଟି ବିତିଗଲା । ଉଷା କାଳରେ ପାହାଡ଼ର ପାଦଦେଶରେ ବହୁଥିବା କଂସାବତୀ ନଦୀକୁ ଯାଇ ସ୍ନାନ କରି ଆସିଲି । ସାରାଦିନ ସେହି ଗୁମ୍ଫା ମଧ୍ୟରେ ରହିଲି । ସନ୍ଧ୍ୟା ହେଲେ ସାଧୁ ଆସିବେ, ଏଇ ପ୍ରତୀକ୍ଷାରେ ଦିନଟି କଟିଗଲା ।

# ସାପଙ୍କ ସ୍ପର୍ଶ

ସନ୍ଧ୍ୟା ପାର ହୋଇ ରାତି ମାଡ଼ି ଆସିଲା । ସାଧୁଙ୍କର ଆସିବା ସମୟ ଉପଗତ ହେବାରୁ ମନରେ ନୂତନ ଆନନ୍ଦସ୍ରୋତ ଛୁଟି ଚାଲିଲା । ମନେ ମନେ ତାଙ୍କୁ ସ୍ମରଣ କରିବାକୁ ଲାଗିଲି । କାହିଁ, ସେ କେଉଁଠି ? ଆଜି ତ ଆଉ ଆସୁନାହାନ୍ତି । ରାତି ପ୍ରାୟ ନଅ ବା ଦଶଟା ବେଳେ ଅନୁଭବ କଲି, ଗୁମ୍ଫା ଭିତରକୁ ଦୁଇଟି ସାପ ଯେପରି ପଶିଆସୁଛନ୍ତି । ପଥର ଉପରେ ଖସ ଖସ ଶବ୍ଦ ଶୁଣାଗଲା । ଏଥରକ ସାପ ଦୁଇଟି ଭିତରକୁ ପଶିଲେ । ତାପରେ ମନେ ହେଲା ଭଏ କ'ଣ ମୋତେ ଖାଇବେ । ଏତେ ବଡ଼ ଦେହଟାକୁ ଖାଇପାରିବେ ନାହିଁ । ଖାଇଦେଲେ ମଧ୍ୟ ଦେହଟା ତାଙ୍କ ପେଟ ଭିତରେ ଯାଇ ରହିବ—ମୁଁ ତ ଦେହ ବାହାରେ ଅଛି, ମୋ ଦେହଟା ଗୁମ୍ଫା ଭିତରେ ଥାଉ କିମ୍ବା ତାଙ୍କ ପେଟ ଭିତରେ ଥାଉ, ମୋର ଯାଏ ଆସେ କେତେ ? ପୁଣି ଭାବିଲି ଦେହ ସାଙ୍ଗରେ ମୋର ସମ୍ପର୍କଟି ସମ୍ପୂର୍ଣ୍ଣ ରୂପେ ଛିନ୍ନ ହୋଇନଥିବାରୁ ମୁଁ ଏ ବିଷୟରେ ଚିନ୍ତା କରିପାରୁଛି । କିନ୍ତୁ ସାପ ପେଟକୁ ଦେହଟା ଗଲେ ତ ତାର ରୂପ ଓ ଆକାର ପୂର୍ବପରି ରହିବ ନାହିଁ । ତେବେ କ'ଣ କଲେ ଏ ଦେହକୁ ରକ୍ଷା କରି ହେବ ? ହଠାତ୍ ବିଚାର ଜାଗିଲା, ଗୁମ୍ଫାରେ ତ ଅନେକ ପଥର ଅଛି: ସାପ କିନ୍ତୁ ପଥରକୁ ଖାଉନ । ମୋ ଦେହଟା ଯେବେ ପଥର ପରି ହୋଇଯାନ୍ତା ତେବେ ସାପ ଏହାକୁ ଖାଆନ୍ତା କୁଆଡ଼ୁ ? ମୁଁ ତେବେ ନିଜ ଦେହକୁ ପଥର ଭଳି କରିଦେବି । ଦେଖାଯାଉ ସାପ କିପରି ଖାଉଛି ? ତାପରେ ମୁଁ ପଦ୍ମାସନ ପକାଇ ନିଷ୍ପନ୍ଦ ହୋଇ ବସିଗଲି । ସାପ ଦୁଇଟି ଆସି ମୋ ଦେହ ଉପରକୁ ଉଠିଗଲେ । ମୁଁ ସେତେବେଳକୁ ଶ୍ୱାସ ବନ୍ଦ କରିଦେଇଥାଏ । କିଛି ସମୟ ପରେ ସାପ ଦୁଇଟି ଦେହରୁ ଖସି ଯାଇ ଗୁମ୍ଫା ଭିତରକୁ ଚାଲିଗଲେ । ଅନ୍ଧକାରଟା ପୁଣି ଅସହ୍ୟକର ବୋଧ ହେଲା । ଆଲୋକ ପାଇଁ ମୁଁ ଠାକୁରଙ୍କୁ ଅନେକ ପ୍ରାର୍ଥନା ଜଣାଇଲି କିନ୍ତୁ ଆଲୁଅ ଆଉ ଜଳିଲା ନାହିଁ । ଏହିପରି ପୁଣି ଗୋଟିଏ ରାତି କଟିଗଲା ।

## ବାଘଙ୍କ ସାହଚର୍ଯ୍ୟ

ପର ଦିନ ସକାଳୁ ସ୍ନାନ କରି ଆସିଲି ଓ ଦିନଟି ସାଗୁ ପୂର୍ବପରି କଟିଗଲା । ପୁଣି ରାତି ଆସି ପହଞ୍ଚିଲା । ପୁଣି ଠାକୁରଙ୍କୁ ମନରେ ସ୍ମରଣ କଲି କିନ୍ତୁ ଆଜି ମଧ୍ୟ ଆଳୁଅର ସନ୍ଧାନ ମିଳିଲାନାହିଁ । ତା ପରିବର୍ତ୍ତେ ଗୁମ୍ଫା ପାଖରେ ଦୁଇଟି ଭୟଙ୍କର ବାଘ ଆସି ପହଞ୍ଚିଲେ । ବାଘ ଦୁଇଟା ଦେଖି ମନେହେଲା, ଭାଲ ସାପ କବଳରୁ ରକ୍ଷା ମିଳିଲା ସତ୍ୟ ଆଜି କିନ୍ତୁ ବାଘ ହାବୁଡ଼ରୁ ପ୍ରାଣ ରହିପାରିବ ନାହିଁ । ତେବେ ମନରେ ଖୁବ୍ ଭୟ ଯେ ଜାଗୁଛି ତାହା ନୁହେଁ । ଅଳ୍ପ ସମୟ ପରେ ଗୋଟିଏ ବାଘ ଭିତରକୁ କୁଦାମାରି ପଶିଲା । ମୁଁ ଜୋରରେ ଗୋଟିଏ ଧମକ ଦେଲି । ଗୁମ୍ଫା ଭିତରେ ମୋର ପାଟିର ଆବାଜ ବନ୍ଧୁକ ପରି ଶୁଭୁଥାଏ । ସେଥିରେ ବାଘ ଅଳ୍ପ ପଛେଇଗଲା । ଆଉ କିଛି ସମୟ ପରେ ଅନ୍ୟ ବାଘଟି ଭିତରକୁ କୁଦାମାରିଲା । ମୁଁ ପୁଣି ଏକ ଧମକ ଦେଲି । ସେ ମଧ୍ୟ ପୃଷ୍ଠଭଙ୍ଗ ଦେଲା । ତାପରେ ମୋ ନିଜ ଉପରେ ଖୁବ୍ ରାଗ ହେଲା—ଭାବିଲି ଆଉ ଧମକ ଦେଇ ଲାଭ ନାହିଁ । ଖାଇବା କଥା ଯଦି ବାଘ ମୋତେ ଖାଇଯାଉ ନଚେତ୍ ଏମାନେ ସେହିପରି ବସି ରହନ୍ତୁ । ଏପରି ଭାବୁଥିବା ପରେ ପରେ ଦେଖିଲି ବାଘ ଦୁଇଟି ଆଉ ହଲଚଲ ନ ହୋଇ ବସି ରହିଲେ । ମୁଁ ମଧ୍ୟ ବସି ରହିଥାଏ । ସେହିପରି ଭାବେ ସକାଳ ହେବାକୁ ଲାଗିଲା । ତାପରେ ଭାବିଲି, ଆରେ, ଲୋକେ ଦେଖିବାକୁ ପାଇଲେ ଏମାନଙ୍କର ଅନିଷ୍ଟ ହୋଇପାରେ । ତେଣୁ ଠାକୁରଙ୍କୁ ମନରେ ସ୍ମରଣ କରି ଜଣାଇଲି ବାଘ ଦୁଇଟି ଏଥର ଚାଲିଯିବା ଉଚିତ ! ଏହା କହିବା ପରେ ପରେ ସେମାନେ ସେଠାରୁ ଉଠି ଚାଲିଗଲେ । ମୁଁ ମଧ୍ୟ ତଳକୁ ଯାଇ ନଦୀରେ ସ୍ନାନ କରି ଆସିଲି । ବେଶ ଆନନ୍ଦ ଅନୁଭୂତ ହେଉଥାଏ । ଏହିପରି ଭାବେ ଚତୁର୍ଥ ଦିନ କଟିଗଲା ।

## ତରୁଣୀଙ୍କ ସାନ୍ନିଧ୍ୟ

ପୁଣି ରାତି ଆସିଲା । ଆଲୁଅ କିନ୍ତୁ ଆଉ ଜଳୁନି । ରାତି ୧୧।୧୨ ବେଳକୁ ମନେହେଲା ଯେପରି କେତେ ଜଣ ସ୍ତ୍ରୀଲୋକ ଆସୁଛନ୍ତି ।

ସେମାନଙ୍କ ଗଳାର ଶବ୍ଦ ବାରିବାକୁ ଲାଗିଲି । ଭାବିଲି ଏମାନେ ବୋଧେ ଭୁଲ ରାସ୍ତାରେ ଯାଉଛନ୍ତି । ଦେଖିଲି ହେଉ ଗୁହା ନିକଟକୁ ସେମାନେ ଆସିଲେ । ମୁଁ ପଚାରିଲି, ତୁମେମାନେ କେଉଁଠାରୁ ଆସୁଛ ? ସେମାନେ କହିଲେ ଅମେମାନେ ଏଇଠି ରହୁ । ସାଧୁ ଦର୍ଶନ କରିବାକୁ ଆସିଲୁ । ମୁଁ କହିଲି, ତୁମମାନଙ୍କର ତ ରାତିରେ ଆସିବା ଠିକ୍ ହୋଇନାହିଁ, ଦିନବେଳା ଆସିପାରି ଥାଆନ୍ତ ! 'ଦିନବେଳେ ଆମେମାନେ ସମୟ ପାଇବୁ କେଉଁଠୁ ?' ଏହାକହି ସେମାନେ ଗୁହା ଭିତରକୁ ପଶି ଆସିଲେ । ମୁଁ ଅନୁମାନ କଲି ଯେ, ସେମାନଙ୍କର ଅଭିପ୍ରାୟ ଭଲ ନୁହେଁ । ତେଣୁ ମୁଁ ଜୋରରେ ଧମକ ଦେଇ କହିଲି 'ବାହାରକୁ ଯାଅ ।' ମୋ କଥା ସେମାନେ ଜମା ମାନିବାକୁ ପ୍ରସ୍ତୁତ ନୁହନ୍ତି । କଣ ଆଉ କରିବି ! ନର୍ଦିତ ସ୍ୱପୂର୍ବକ ମାରି ବାହାରକୁ ବାହାର କରିଦେଲି । ସେମାନେ ବାହାରେ ଥାଇ କହିଲେ ଯେ, ଆମେମାନେ ଏଇ ପାଖରେ ହିଁ ରହୁଛୁ, ଆପଣଙ୍କ ଦରକାର ହେବା ମାତ୍ରେ ଆସିଯିବୁ । ଏହା କହି ସେମାନେ ଚାଲିଗଲେ । ପରଦିନ ସକାଳେ ସ୍ନାନ କରି ଆସିଲି ଓ ଦିନଟି ବିତାଇ ରାତି ଅପେକ୍ଷାରେ ରହିଲି । ପୁଣି ଖୁବ୍ ଆତୁର ଭାବରେ ଠାକୁରଙ୍କୁ ପ୍ରାର୍ଥନା କରିବାକୁ ଲାଗିଲି ।

## ମୁକ୍ତିଙ୍କ ପୁନରାବିର୍ଭାବ

ମୋର ସୌଭାଗ୍ୟ ସେଦିନ ଦୟାମୟଙ୍କର ଦୟା ହେଲା । ପ୍ରଥମ ରାତିପରି ଦିବ୍ୟାଲୋକ ଝଲସି ଉଠିଲା । ଦେଖିଲି ପୂର୍ବରାତି ପରି ସେଇ ବାଳକ ଦଳ କୀର୍ତ୍ତନ କରି କରି ଆସିଲେ । ସେମାନଙ୍କୁ ଦେଖି ମୋର ଅପୂର୍ବ ନିବାସି ଆନନ୍ଦ ହେଲା । ପୁଣି ତାଙ୍କ ପଛରେ ସେହି ସାଧୁ ମୂର୍ତ୍ତି ଆସୁ-ଛନ୍ତି । ଏଥର ମୁଁ ବସିଲି ଓ ସେ ଆସି ମୋ ପାଖରେ ବସିଲେ । ମୁଁ ପଚାରିଲି, "ଆପଣ ଏତେ ଦିନ ହେବ କେଉଁଠି ଥିଲେ, ସେଇ ଦିନଭ ପରେ ଆଉ ତ ଆସିଲେ ନାହିଁ, ?" ଏହା ଶୁଣି ସେ ଗୋଟିକ ପରେ ଗୋଟିଏ କଥା ଆରମ୍ଭ କରିଦେଲେ ଓ ବିବିଧ ତତ୍ତ୍ୱପୂର୍ଣ୍ଣ ଯୋଗ ଉପଦେଶ ଦେଲେ— ତାଙ୍କର ଅପୂର୍ବ ବ୍ୟାଖ୍ୟାନ ଶୁଣି ମୁଁ ଆତ୍ମହରା ହୋଇଗଲି । ସେ କ

ଅନୁପମ ଆନନ୍ଦ ! ଗ୍ରନ୍ଥ ହାତ୍ସୁ ଗୃହକୁ ଚଢ଼ିଯିବାରୁ ସେ କହିବାକୁ ଲାଗିଲେ, ଦେଖ, ସଂସାରରେ ତୁମ ପାଇଁ ଅନେକ କର୍ମ ରହିଛି । ତୁମେ ତୁମର ଏଇ ଶରୀରକୁ ରକ୍ଷା କରିବା ଆବଶ୍ୟକ । ଶରୀର ବ୍ୟତୀତ କାର୍ଯ୍ୟ କରିବା ସମ୍ଭବ ନୁହେଁ । ଅତଏବ ତୁମକୁ ଶରୀର ରଖିବାକୁ ହେବ । ସ୍ଥୂଳ ଖାଦ୍ୟ ନ ଦେଲେ ଦେହ ରହିବ ନାହିଁ, ତେଣୁ ତୁମକୁ ନିୟମିତ ଆହାରାଦି ଗ୍ରହଣ କରିବାକୁ ହେବ । ମୁଁ କହିଲି ଯେ, ଖାଇବା ବିନା ମୁଁ ବେଶ୍ ରହିପାରୁଛି । ମୋର ତ କୌଣସି କଷ୍ଟ ହେଉନାହିଁ । ତେବେ ଆଉ ଖାଇବାର ପ୍ରୟୋଜନ କଣ ? ସେ କହିଲେ, ଦେଖ, ଆମମାନଙ୍କର ସୂକ୍ଷ୍ମ ଶରୀରଦ୍ୱାରା ସ୍ଥୂଳ ଜଗତର କୌଣସି କାର୍ଯ୍ୟ କରାଯାଇପାରୁନାହିଁ । ସ୍ଥୂଳ ଜଗତରେ ଦେହର ଆବଶ୍ୟକତା ଅଛି । ତେଣୁ ତୁମକୁ ଭିକ୍ଷାକରି ଖାଇବାକୁ ପଡ଼ିବ । ମୁଁ କହିଲି ଯେ, "ମୁଁ ଭିକ୍ଷା କରିପାରିବ ନାହିଁ ।" "ମୁଁ ଯୋଗାଇଦେବି" ବୋଲି କହି ସେ ସେଠାରୁ ଚାଲି ଗଲେ । ତାଙ୍କ ପଛରେ ବାଳକ ଦଳ ମଧ୍ୟ ଅନ୍ତର୍ହିତ ହେଲେ ।

## ବାଳକ ଭୋଜନ

ସେତେବେଳକୁ ବ୍ରାହ୍ମମୁହୂର୍ତ୍ତ ହୋଇ ସାରିଥିଲା । କିଛି ସମୟ ପରେ ମୁଁ ସ୍ନାନ କରି ଆସି ଦେଖିଲି ଯେ, ପ୍ରାୟ ପାଞ୍ଚ ସେର ଚାଉଳ, ପାଞ୍ଚପା ଡାଲି ଓ ଏକ ପାଆ ହେବ ଘିଅ ଥୁଆହୋଇଛି । ସେ ସବୁ ଦେଖି ମୁଁ ଗୁମ୍ଫା ଭିତରକୁ ନ ଯାଇ ବାହାରେ ପାହାଡ଼ ଉପରେ ବସିଲି, ମୋତେ ଦେଖି ଦଳେ ଦଳେ ଲୋକ ଆସିବାକୁ ଲାଗିଲେ ଓ ପ୍ରଣାମ କଲେ । ସେ ଗ୍ରାମର ଜମିଦାର ମଧ୍ୟ ଆସି ପହଂଚିଲେ ଓ ମୋର କିପରି ସେବା କରାଯିବ ପ୍ରଶ୍ନ କଲେ । ମୁଁ କହିଲି, "ତୁମ ଗ୍ରାମର ଜଣକ ଘରେ ଭିକ୍ଷା କରି ଆଣ ଓ ଗ୍ରାମର ସମସ୍ତ ବାଳକଙ୍କୁ ମୋ ତରଫରୁ ନିମନ୍ତ୍ରଣ କର । ବାଳକ ଭୋଜନ ପରେ ମୁଁ ଆହାର କରିବ ।" ଏହା ଶୁଣି ସେମାନେ ଗୋଟିଏ ଘରୁ ଭିକ୍ଷା କରି ସେତିକି ଅରୁଆ ଚାଉଳ ଆଣିଲେ ଓ ଦୁଇକୋଡ଼ି ମାଟି ହାଣ୍ଡି ମଗାଇଲେ । ମୁଁ ସେଇ ଚାଉଳ ଓ ଡାଲି ଏକାଠି କରି ଭୋଜ୍ୟ ପ୍ରସ୍ତୁତ କଲି । ବାଳକ

ପ୍ରାୟ ଏକ ସତ୍ତ ଓ ବୟସ୍କ କୋଡ଼ିଏ ଯାଏଁ ହେଲେ । ଖାଇବାକୁ ପତ୍ର ବା ପାତ୍ର ନଥିଲା । ପିଲାଏ କହିଲେ ଆମେ ଏହି ପଥରକୁ ପରିଷ୍କାର କରି-ଦେଉଛୁ । ଏହା ଉପରେ ଏକାଠି ବସି ଖାଇବୁ । ଗୋଟିଏ ହାଣ୍ଡି ଖେଚେଡ଼ି ସେମାନଙ୍କୁ ଖାଇବାକୁ ଦେଲି । ବଡ଼ମାନଙ୍କୁ ପଚାରିଲି, ତୁମ୍ଭେମାନେ ମୋର ବାବା ହେବ ନା ମୁଁ ତୁମର ବାବା ହେବ ? ସେମାନେ କହିଲେ, "ଆପଣ ଆମର ବାବା !" ମୁଁ କହିଲି, "ତେବେ ତୁମେ ଆଗ ଖାଇବ ।" ଏହା କହି ସେମାନଙ୍କୁ ଖାଇବାକୁ ଦେଲି । ଅବଶିଷ୍ଟ ଅନ୍ନରୁ କିଛି ଶିବା ଭୋଗ ଦେଇ ବଳକା ମୁଁ ଭୋଜନ କଲି । ଏତେ ଲୋକଙ୍କ ପାଇଁ ପ୍ରସ୍ତୁତ ହୋଇଥିବା ଖାଦ୍ୟ ସାମଗ୍ରୀ ଯଥେଷ୍ଟ ବୋଲି ମନେହେଲା । ସମସ୍ତେ ଭୋଜନ କରି ସନ୍ତୁଷ୍ଟ ହେଲେ ।

## ଭିକ୍ଷାଚରଣ

ପିଲାଏ କହିଲେ, "ଆମେମାନେ ଆପଣଙ୍କ ପାଇଁ ସବୁଦିନେ ଭିକ୍ଷା କରି ଆଣିଦେବୁ । ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ ।" ଏହା କହି ସେଦିନ ସମସ୍ତେ ଫେରିଗଲେ । ମୁଁ ନିଶ୍ଚିନ୍ତ ହୋଇ ଗୁମ୍ଫାରେ ରହିଲି । ପରଦିନ ପିଲାଏ ଭିକ୍ଷାକରି ଆଣିଲେ । ଭୋଜନ ପ୍ରସ୍ତୁତ କରି ସମସ୍ତଙ୍କୁ ଖାଇବାକୁ ଦେଲି । ପ୍ରତିଦିନ ଯାହା ଭିକ୍ଷା ମିଳେ ସମସ୍ତ ଖରଚ ହୋଇ-ଯାଏ । ସେତେବେଳେ ଗୋଟିଏ ଆଶ୍ଚର୍ଯ୍ୟଜନକ କଥା ଲକ୍ଷ୍ୟ କରାଗଲା । ସେଠାରେ ଚାଉଳ ରନ୍ଧା ହୋଇଥାଏ । କିନ୍ତୁ ଯେତେ ଜଣ ଆସନ୍ତି ସମସ୍ତଙ୍କର ଖାଇବାକୁ ହୋଇଯାଏ । କେବେହେଲେ ଅଭାବ ହୁଏ ନାହିଁ । ଏହିପରି ଭାବେ ପ୍ରାୟ ତିନମାସ ବିତିଗଲା । ଦିନେ ଭାବିଲି ଯେ, ପ୍ରତିଦିନ ମୁଁ ଏହି ପିଲଙ୍କୁ ଭିକ୍ଷା କାମରେ ନିଯୁକ୍ତ କଲେ ତାଙ୍କର ପଢ଼ାଶୁଣା ସମସ୍ତ ନଷ୍ଟ ହୋଇଯିବ । ଅତଏବ ତେଣିକି ସମସ୍ତଙ୍କୁ କହିଲି ଯେ, ତୁମେ ନିଜ ଘରେ ମୁଠି ଚାଉଳ ରଖ । ମୁଁ ନିଜେ ଯାଇ ଆଦାୟ କରି ଆଣିବି । ସେହିଦିନଠାରୁ ସମସ୍ତେ ମୁଠି ଚାଉଳ ରଖିଲେ । ଏହି ସମୟରେ ଦେଉଳ ଗ୍ରାମର ଗୋଟିଏ ହାଡ଼ିର ପୁଅ ଆସି ମୋ ପାଖରେ ରହିଲା ଓ ମୋ ପାଇଁ ମୁଷ୍ଟି ସଂଗ୍ରହ

କଟେବାକୁ ଲଗିଲ । ପ୍ରାୟ ଏକମାସ ବିତିଗଲ ପରେ ମୁଁ ଲକ୍ଷ୍ୟକଲି, ମୋ ମନରେ ସେଇ ପିଲଟି ପାଇଁ ଉଦ୍‌ବେଗ ଜାଗୁଛି । ଦିନେ ହଠାତ ସେ ଠିକ ସମୟରେ ଫେରିଲ ନାହିଁ—ମୁଁ ଏଣେ ଖୋଜିବାକୁ ଲଗିଲି ଯେ, ତା'ର କଣ ହେଲ । କାହିଁକି ଏତେବେଳଯାଏଁ ଆସିଲ ନାହିଁ । ମନର ଆସକ୍ତିକୁ କାଟିଦେବା ପାଇଁ ଥରେ ତାକୁ କହିଲି ଯେ, ତୁ ଆଉ ଏଠାରେ ରହିପାରିବୁ ନାହିଁ । କିନ୍ତୁ ସେ ସେଠାରୁ ଛାଡ଼ି ଯିବାକୁ ଆଦୌ ପ୍ରସ୍ତୁତ ନୁହେଁ । ଥରେ ମୁଁ ତାକୁ ସେଠାରେ ଏକା ଛାଡ଼ିଦେଇ ପୁରୁଲିଆ ଚାଲିଗଲି । ସେଇ ଗୋଟିକ ଘଟଣାରେ ସେ ସେଠି ଉପସ୍ଥିତ ହୋଇପଡ଼ିଲ ଓ ମୁଁ ଫେରିବାକୁ କହିଲି ଯେ, ତାକୁ ଖୁବ୍ ଡ଼ର ମାଡ଼ୁଛି, ତେଣୁ ସେ ସେଠି ରହିବାକୁ ଚାହେଁ ନା । ଏହା କହି ତା ପରଦିନ ସେ ଚାଲିଗଲ । ତା ପରେ କିଛିଦିନ ମୁଁ ଅସ୍ୱସ୍ତିରେ ଘେଳି ହୋଇ ଦିନ କାଟିବାକୁ ଲଗିଲି ।



# ଦ୍ୱାଦଶ ଅଧ୍ୟାୟ

## ଗୁହ୍ୟାଂ

### ସେବକଙ୍କ ସାନ୍ନିଧ୍ୟ

ମଝିରେ ମଝିରେ ସେ ଗ୍ରାମର ହ—ନାମରେ ଗୋଟିଏ କୁମ୍ଭାର ଜାତିର ଯୁବକ ଓ ଯଦୁ ହାଡ଼ି ନାମକ ଆଉ ଜଣେ ଲୋକ ମଧ୍ୟ ଯିବା ଆସିବା କରିବାକୁ ଲାଗିଲେ । ଯଦୁକୁ ମୁଁ ସଖା ବୋଲି ଡାକିଲି । ସେମାନେ ଦିନକୁ ଥରେ ଲେଖା ଆସନ୍ତି । ମୁଁ ସେତେବେଳେ ତମାଖୁ ଖାଉଥାଏ । ସେମାନେ ଶାଳ ପତ୍ରର ଚଟା (ମୋଡ଼ା) କରି ଆଣି ଦିଅନ୍ତି । ଯଦୁ ହାଡ଼ିର ଭରମ (ଭାଳେଣୀ ଲାଗିବା ଅବସ୍ଥା) ହେଲେ ସେ କଟାରୁ ଭିତରେ କେତୋଟି ମନ୍ତ୍ରି ଝଡ଼ୁ କରୁଥାଏ । ସେ ତାହାଙ୍କ ଘରେ ଖାଏନା । ସେମାନେ ସ୍ୱାମୀ ସ୍ତ୍ରୀ ଗ୍ରାମ ବାହାରେ ଘର କରି ରହି ଭଜନ କରନ୍ତି । ଥରେ ରାତିରେ ମୋର ଦେହ ହାତରେ ଖୁବ୍ ପୀଡ଼ା ହେଲା । ମୁଁ ମନେ ମନେ ଭାବିଲି, ଯଦି ସଖା ପାଖରେ ଥାଆନ୍ତା ତାହାହେଲେ ଦେହକୁ ଚିପାଚିପି କରିଦିଅନ୍ତା । ସେତେବେଳକୁ ରାତି ପ୍ରାୟ ଦୁଇଟା । ଆଶ୍ଚର୍ଯ୍ୟର କଥା, ହଠାତ୍ ସେତେବେଳେ ସଖା ଆସି ହାଜର ହୋଇଗଲା । ମୁଁ ପଚାରିଲି, "ଏତେ ରାତିରେ ଏଠାକୁ କିପରି ଆସିଲ ?" "ଆପଣ ମୋତେ ଡାକିଲେ—ମୁଁ ଶୁଣିବାକୁ ପାଇଲି, ତେଣୁ ଆସିଲି"—ସେ କହିଲା । ଏହା କହି ମୋର ଦେହ ହାତ ଚିପାଚିପି କରିଦେଲା । ଫଳରେ ମୋର ଦେହର ପୀଡ଼ା ଉପଶମ ହେଲା । ପରେ ସେ ନିଜ ଘରକୁ ଫେରିଗଲା । କେତେଥର ସଖାର ସ୍ତ୍ରୀ ମୋ ପାଇଁ ଦୁଧ ଗରମ

କରି ରଖେ । ସକାଳେ ମୁଁ କୁଆଡ଼େ ଯିବି ସେ ଜାଣିପାରେ । ଯେଉଁଦିନ ଯା ଗ୍ରାମକୁ ଯିବାକୁ ଥିବେ ସେ ଆଗରୁ ସେକଥା ଜାଣିପାରି ଗୋଟିଏ ଡ଼ାଳ ଭଲଭାବେ ପରିଷ୍କାର କରି ସେଥିରେ କ୍ଷୀର ଦୁହିଁ ସେଥିକ ଗୁହାଳ ଘରେ ରଖିଦେଇ ଥାଏ । ମୁଁ ଗଲେ ମୋତେ ପିଇବାକୁ ଦିଏ ।

## ସଞ୍ଚୟ କାମନାରୁ ସର୍ବନାଶ

ଥରେ ଭାବିଲି, ଗ୍ରାମ ସାରା ଏକାଦିନକେ ଭିକ୍ଷା କରି ଆଣି ରଖିଲେ ଅନେକ ଦିନ ଚାଲିଯିବ । ଏହିପରି ମନସ୍ଥ କରି ଗ୍ରାମକୁ ଭିକ୍ଷା କରିବାକୁ ଗଲି । ଠାକୁରଙ୍କର କି ବିଚିତ୍ର ଲୀଳା ! ଗ୍ରାମ ଗୋଟିକ ବୁଲି ଆସିଲି କେହି ଜଣେ ହେଲେ ଭିକ୍ଷା ଦେଲେନାହିଁ । ତାପରେ ବୁଝିପାରିଲି, ମୋ ଭିତରେ ଲୋଭ ଜାଗିଥିବାରୁ ଭିକ୍ଷା ମିଳିଲା ନାହିଁ । ଆଜିଠାରୁ ଗୋଟିକରୁ ଅଧିକ ଘରେ ଭିକ୍ଷା କରିବି ନାହିଁ । ସେଦିନଠାରୁ ଗୋଟିଏ ଘରେ ଯାହା ଭିକ୍ଷା ମିଳେ ସେଥିରେ ମୋର ଠିକ୍ ଚଳିଯାଏ । କୌଣସି ଦିନ ଅସୁବିଧା ହୋଇ ନାହିଁ । ସେହି ପାହାଡ଼ରେ ଅନେକ ଜାମ ଗଛ ଥିଲା । ଜାମ ପଚି ବର୍ଷା ଓ ଶୀତ ଖାଇ ଖୁବ୍ ଆରାମରେ ରହୁଥିଲି । ପୁଣି ସେତେବେଳେ ମଝେ ମଝେ ଉପବାସ କରୁଥିଲି । ନିୟମ କରି ପ୍ରଥମ ଦିନ ସେରେ ଦୁଧ, ଦ୍ୱିତୀୟ ଦିନ ତିନିପାଆ, ତୃତୀୟ ଦିନ ଅଧସେର ଓ ଚତୁର୍ଥ ଦିନ ପାଏ ଏହି କ୍ରମରେ ଭୋଜନ ପରିମାଣ ହ୍ରାସକରି ପଞ୍ଚମ ଦିନ ଛିଅ ଓ ଚାନ୍ଦ ଅଳ୍ପ ଅଳ୍ପ କରି ଖାଏ । ଦଶ ବାର ଦିନ ଏହିପରି ରହି ଯୋଗର କ୍ରିୟା କରୁଥିଲେ ।

## ସେବାପରାଧର ପରିଣାମ

ଅରକର ଘଟଣା । ହି—, ଯୋଗେନ୍ଦ୍ର ଶରତ, ସଖା ଓ ମୁଁ ଆମେ ସୃଟେଜଣ ସାଧୁ ଦର୍ଶନ କରିବାକୁ ଗଲୁ । ଦେଖିଲୁ, ସାଧୁଙ୍କ ପାଖରେ ଜଣେ ମହାତ୍ମା ଅଛନ୍ତି । ସେମାନେ ବସି ଭୋଜନ କରୁଛନ୍ତି । ଆମେମାନେ ଯାଇ ବସିଲୁ । ପରେ ସାଧୁ ମୋତେ ପ୍ରଶ୍ନ କଲେ, "ସାଧୁଜୀଙ୍କର କେଉଁଠି ରହିବା-

ହୁଏ ?" ମୁଁ ସରଳ ଭାବରେ ଉତ୍ତର ଦେଲି—"ମୁଁ ଗୁହାରେ ରହେ । ଆସ୍ରମରେ ମୋର ଗୁରୁଦେବଙ୍କର ପ୍ରତିଷ୍ଠିତ ସାରସ୍ୱତ ମଠ ଅଛି ।" ସେ ତାପରେ ମୋତେ କିଛି ନ କହି ହ—କୁ କହିଲେ, ତୁ କୁମ୍ଭାର ହୋଇ ବ୍ରାହ୍ମଣଙ୍କ ସଙ୍ଗେ ଏକା ଆସନରେ କିପରି ବସିଲୁ ? ହ—ସାଧୁଙ୍କ ସଙ୍ଗେ ତର୍କ କରିବାକୁ ଲାଗିଲା । ଫଳରେ ସାଧୁ ତାକୁ ଅଭିଶାପ ଦେଲେ, "ତୋର କୁଷ୍ଠ ବ୍ୟାଧି ହେବ ।" ଏହା ଶୁଣି ହ—କହିଲା ଯଦି ତାହାହିଁ ହୁଏ ମୁଁ ସେଥିରୁ କିପରି ମୁକ୍ତ ହେବି ସେଇ ଉପାୟ ଦୟାକରି କହନ୍ତୁ । ସାଧୁ ମୋତେ ଦେଖାଇ କହିଲେ, ତା'ପରେ ତୁ ଏହି ସାଧୁଙ୍କର ସେବା କଲେ ଶାପମୁକ୍ତ ହେବୁ ।" ତା'ପରେ ଆମେ ସମସ୍ତେ ଫେରି ଆସିଲୁ । ସମସ୍ତେ ଆଲୋଚନା କଲୁ ଯେ, ବାସ୍ତବିକ ସାଧୁବାକ୍ୟ ଲଂଘିବାର କୌଣସି ଉପାୟ ନାହିଁ । ତାହା ଅନ୍ୟଥା ହୁଏନା । ଦଶ ପନ୍ଦର ଦିନ ମଧ୍ୟରେ ହ—ଠାରେ ବ୍ୟାଧି ଦେଖା-ଦେଲା । ସମସ୍ତେ ବୁଝିପାରିଲେ ଯେ, ସାଧୁଙ୍କର ଅଭିଶାପ ଫଳିଲା । ହ—ର ଆତ୍ମୀୟମାନେ ଧନଶାଳୀ ଥିଲେ । ନାନା ରକମ ଚିକିତ୍ସା କରାଗଲା କିନ୍ତୁ ସମସ୍ତ ବିଫଳ ହେଲା । ଉପରନ୍ତୁ ବ୍ୟାଧି ବଢ଼ିବାକୁ ଲାଗିଲା । ତେଣିକି ମୋ ପାଖକୁ ଯିବା ଆସିବା ବନ୍ଦ କରିଦେଲି - ବରଂ ମୁଁ ତା ପାଖକୁ ଯାଇ ତାର ସଙ୍ଗ କରିବାକୁ ଚେଷ୍ଟିତ ହେଲି । ଦିନେ ତାକୁ ମୁଁ କହିଲି, ହ—, ମୁଁ ବ୍ରତ ରକ୍ଷା କରିବି, ତୁ ମୋର ସେବା କରିପାରିବୁ ? "ସେବା କରିପାରିବି ନାହିଁ ।" ବୋଲି କହି ସେ ମୋ ପ୍ରସ୍ତାବରେ ଅସମ୍ମତ ହେଲା କିନ୍ତୁ ମୁଁ କହିଲି, ଶାଳ ପତ୍ରର ମୋଡ଼ା କରି ମୋ ପାଇଁ ଯୋଗାଇ ଦେଲେ ଚଳିବ; ଆଉ କିଛି କରିବାକୁ ହେବ ନାହିଁ । 'ଆଜ୍ଞା' ତାହା ହେଲେ ମୁଁ ରାଜି; ହ—କହିଲା । ବ୍ରତ ପାଇଁ ଘିଅ, ଚିନି ଓ ଦୁଧ ଇତ୍ୟାଦିର ଯୋଗାଡ଼ ମୁଁ କଲି । ପରଦିନ ଠାରୁ କ୍ରମଶଃ ପୂର୍ଣ୍ଣ ଦୁଗ୍‌ଧାହାର, ଅର୍ଦ୍ଧାହାର ଇତ୍ୟାଦି ଆରମ୍ଭ ହେଲା । ମୋତେ ନ ଜଣାଇ ସେ ମୋ ସାଙ୍ଗରେ ଉପବାସ ରହିଲା । ଷଷ୍ଠଦିନ ମୁଁ କହିଲି ଯେ, ମୋର କାର୍ଯ୍ୟ ସିଦ୍ଧ ହୋଇଛି, ମୁଁ କାଲି ଭାତ ଖାଇବି । ସେ କହିଲା, ନା ମହାରାଜ, ଆଉ ଗୋଟିଏ ଦିନ ନଖାଇ ରହିଲେ ଭଲ ହୁଅନ୍ତା । ତାର ପ୍ରସ୍ତାବ ଅନୁଯାୟୀ ପରଦିନ ମୁଁ ଅନ୍ନ ଗ୍ରହଣ ନ କରି ସମାଧିସ୍ଥ ହୋଇ ରହିଲି । ଦିନ ସାରା ମୋର ବାହ୍ୟ ଜ୍ଞାନ ନ ଥିଲା ।

ସନ୍ଧ୍ୟା ବେଳକୁ ଧୀରେ ଧୀରେ ଚେତନା ଫେରି ଆସିଲା । ଦେଖିଲି ହ—ମୋ ପାଖରେ ବସି ରହିଛନ୍ତି । ମୋର ସଙ୍କାହୀନତା ଦେଖି ସେ ଭୟରେ ଅସ୍ଥିର ହୋଇଥିବା ଜାଣିପାରିଲି । ମୋର ସମାଧି ଭଙ୍ଗ ହେବାରୁ ସେ କହିଲି, "ରାତିରେ ଆପଣଙ୍କ ପାଖରେ କେହି ଜଣେ ଲୋକ ରହିବା ନିତାନ୍ତ ଦରକାର ।" ମୁଁ କହିଲି, "ଆଉ ଲୋକ ପ୍ରୟୋଜନ କ'ଣ ? ମୁଁ ତ ଏବେ ସମାଧିରୁ ଫେରି ଆସିଲିଣି ।" ଏହା କହି ଗୋଟିଏ ବିଶେଷ ଦ୍ରବ୍ୟ ଔଷଧ ରୂପେ ବ୍ୟବହାର କରିବାକୁ ଉପଦେଶ ଦେଇ ତାକୁ ବିଦାୟ ଦେଲି । ସେ ରାତିକ ମୋ ପାଇଁ ଯେ କେତେ ବେଶୀ ଆନନ୍ଦମୟ ହୋଇଥିଲା ସେକଥା ମୁଁ ଭାଷାରେ ବର୍ଣ୍ଣନା କରିପାରୁନାହିଁ । ପରଦିନ ପୁଣି ହ—ଆସି ପହଞ୍ଚିଲା । ତାର କଲ୍ୟାଣ ପାଇଁ ମୁଁ ତାକୁ ମୋର ସେବା କରିବାକୁ କହିଲି । ସେ କହିଲା, "ମୁଁ ଆପଣଙ୍କର ସେବା କରିପାରିବି ନାହିଁ । ମୁଁ ଏଠାରୁ ଅନ୍ୟତ୍ର ଚାଲିଯିବି ।" ଏହା କହି ସେ ସେଠାରୁ ଚାଲିଗଲା । ତାର ଏପରି ବ୍ୟବହାରରେ ସେତେବେଳେ କିଛିଦିନ ପାଇଁ ମୁଁ ପାଗଳଙ୍କ ଭଳି ହେଲି । ଖାଇବାର ଠିକ୍ ନାହିଁ, ବସିଛି ତ ଅନେକ ବେଳ ଏକାଭଳି ବସି ରହିଛି । ତିନିଚାରିଦିନ ପରେ ପୁଣି ଫେରିଆସି କହିଲା, "ରୋଗ ନିରାକରଣ ପାଇଁ ଶିବଙ୍କ ପାଖରେ ଶରଣ ପଶିବାକୁ ଭଜୁଡ଼ିହ (ଧାନବାଦ) ଯାଇଥିଲି । ଶୋଇଥିବା ବେଳେ ସ୍ୱପ୍ନ ଯୋଗେ ମହାଦେବ ଆବିର୍ଭୂତ ହୋଇ କହିଲେ, 'ସାକ୍ଷାତ ଶିବଙ୍କ ସେବା ଛାଡ଼ି ତୁ ଏଠାକୁ ଆସିଛୁ । ଫେରିଯାଇ ଜାଗ୍ରତ ଶିବରୂପୀ ସାଧୁ ସେବା କଲେ ତୁ ରୋଗମୁକ୍ତ ହେବୁ ।' ଏ ଆଦେଶ ପାଇ ମୁଁ ଆପଣଙ୍କ ପଦ ତଳକୁ ଫେରି ଆସିଛି—ମୋର ଅଭିମାନ ଦୂର ହୋଇଛି । ଆପଣ ଦୟାକରି ଅଧମର ସେବା ଗ୍ରହଣ କଲେ ମୁଁ ପାପ ଭିତରୁ ମୁକ୍ତ ହୁଅନ୍ତି ।" ସେହି ମୁହୂର୍ତ୍ତଠାରୁ ସେ ମନପ୍ରାଣରେ ବେଶ୍ ସେବା କରିବାକୁ ଲାଗିଲା ଏବଂ କ୍ରମଶଃ ରୋଗମୁକ୍ତ ହୋଇଗଲା ।

## ନନ୍ଦକ୍ଷେପାଙ୍କ ତିରୋଭାବ

ଗୁହାରେ ଅବସ୍ଥାନ କରିବାର ପ୍ରାୟ ଏକ ବର୍ଷ ମଧ୍ୟରେ ଥରେ ମୁଁ ପାଣ୍ଡୁର ଗ୍ରାମର ହାଟରୁ ଲୁଗା କିଣିବାକୁ ଯାଇଥିଲି । ନନ୍ଦ କ୍ଷେପା ବାବାଙ୍କ

ଦର୍ଶନ ପାଇଁ ଆଗ୍ରହ ହେଲି । ତାଙ୍କ ଆଶ୍ରମରେ ପହଞ୍ଚି ଜାଣିଲି ଯେ, ବାବାଙ୍କ ଅନ୍ତିମ ସମୟ ଉପସ୍ଥିତ । ତାଙ୍କ ସମକ୍ଷରେ ପହଞ୍ଚି ଏକ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଲି । ସେ ମଧ୍ୟ ମୋତେ ଅନୁରୂପ ଭାବେ ଚାହିଁଥାନ୍ତି । ଏହି ଦୃଷ୍ଟି ବିନିମୟ ମଧ୍ୟରେ ତାଙ୍କର ସଞ୍ଚିତ ଶକ୍ତି ମୋ ଭିତରେ ପ୍ରବେଶ କଲାଭଳି ମନେହେଲା; ତାଙ୍କ ଭୈରବୀ ମା ଆସି ମୋତେ କହିଲେ, "ମହାପୁରୁଷଙ୍କୁ ଏପରି ଅନିମେଷ ଦୃଷ୍ଟିରେ ଚାହିଁଲେ ଆଖି ଫାଟିଯିବ ।" ଏହା ପରେ ଆମ ଦୃଷ୍ଟି ସଂଯୋଗ ଭଙ୍ଗ ହେଲା । ବାବା କିନ୍ତୁ କହିଲେ, "ମାଇ, ତୋର ତ ଚତୁର୍ଥାବସ୍ଥା ହେଲାଣି, ତୁ ଜାଣୀ ଦେବୁ, କିନ୍ତୁ, ବ୍ରହ୍ମଜ୍ଞଙ୍କର ଚକ୍ଷୁ ଫାଟି ଯିବ ।" ତାପରେ ସେ ମୋତେ ଆଶୀର୍ବାଦ କରି କହିଲେ, ବାବା, ତୁମର ଜ୍ଞାନଚକ୍ଷୁ ଉନ୍ମୀଳିତ ହେଉ ।" ନନ୍ଦକ୍ଷେପା ବାବାଙ୍କ ସଙ୍ଗେ ଏଇ ମୋର ଶେଷ ସ୍ଥୂଳ ସାକ୍ଷାତ୍ । ତାପରେ ମୁଁ ଗୁହାକୁ ଫେରିଲି । ପ୍ରାୟ ପନ୍ଦର ଦିନ ପରେ ଖବର ମିଳିଲା ଯେ, ବାବାଙ୍କର ତିରୋଭାବ ଘଟିଛି । ନନ୍ଦକ୍ଷେପା ମୋ ଆଖିକୁ ଅଶୀଉପର ଭଳି ଦିଶୁଥିଲେ, କିନ୍ତୁ ସ୍ଥାନୀୟ ଅଶୀ ବର୍ଷ ବୟସ୍କ ବୃଦ୍ଧ ଲୋକେ କହିବା ଶୁଣାଗଲା ଯେ, ସେମାନେ ତାଙ୍କୁ ପିଲାଦିନୁ ସେହିଭଳି ଅବସ୍ଥାରେ ଦେଖି ଆସୁଛନ୍ତି । ତେବେ କଣ ସେ ମୋର ସାଧକ ଜୀବନର ପରିପୂର୍ଣ୍ଣତା ସମ୍ପାଦନ କରିବାକୁ ଏତେଦିନ ପ୍ରତୀକ୍ଷା କରି ରହିଥିଲେ ! ଏହା ମୋ ପାଇଁ ଏକ ରହସ୍ୟ ହୋଇ ରହିଲା ।

## ନାମକୀର୍ତ୍ତନର ମହିମା

ଥରେ କେତେଜଣ ବୈଷ୍ଣବ ଆସି ମୋତେ କହିଲେ, "ଆପଣ ଅଷ୍ଟ ପ୍ରହରର ଆୟୋଜନ କରନ୍ତୁ, ଆମେମାନେ ଆସି ନାମ କୀର୍ତ୍ତନ କରିବୁ । ଆପଣଙ୍କୁ କୌଣସି ଉଦ୍‌ବେଗ କରିବାକୁ ହେବ ନାହିଁ । ଆମେ ଟଙ୍କା ପଇସା ଆଦାୟ କରି ସକଳ କାର୍ଯ୍ୟ ପରିଚାଳନା କରିବୁ । ଆପଣ କେବଳ ନିମନ୍ତ୍ରଣ ପତ୍ର ପଠାଇ ଲୋକଙ୍କର ଯିବା ଆସିବା ପ୍ରତି ଲକ୍ଷ୍ୟ ରଖିବେ ।" ସଂଜ୍ଞାତ ଥିବାରୁ ମୋର ଖୁବ୍ ବେଶୀ ପ୍ରବୃତ୍ତି ନ ଥିଲେ ମଧ୍ୟ ବୈଷ୍ଣବ-ମାନଙ୍କର ଆଗ୍ରହ ଭାଙ୍ଗି ନପାରି ସବୁ ଆଡ଼କୁ ନିମନ୍ତ୍ରଣ ପଠାଇଲି । ଗୁରୁ

ଆଉ୍ର ଦଳେ ଦଳେ ଲୋକ ନାମ ଶୁଣିବାକୁ ଆସି ପହଞ୍ଚିଲେ । କେହ୍ର ଗୁହ୍ଳ, କେହ୍ର ଚୂଡ଼ା କେହ୍ର ବା ଟଙ୍କା ପଇସା—ନିଜ ନିଜ ଶକ୍ତି ଅନୁସାରେ ସାଙ୍ଗରେ ଧରି ଆସି ପ୍ରଣାମ କଲେ । ପରଦିନ ଅପରାହ୍ଣରେ ଦେଖିଲି ଯେ, ଅନେକ ଟଙ୍କା ପଇସା ଓ ଖାଦ୍ୟ ଦ୍ରବ୍ୟ ଆସି ଜମିରହିଲାଣି । ତେଣୁ ଅଷ୍ଟ ପ୍ରହର ବଦଳି ଚବିଶ ପ୍ରହର ନାମ କୀର୍ତ୍ତନର ସଂକଳ୍ପ କରାଗଲା । ଶେଷଦିନ ଅପରାହ୍ଣରେ ପ୍ରବଳ ଝଡ଼ ବୃଷ୍ଟି ହେବାରୁ ଲୋକେ ସେଠି ଆଉ ରହିପାରିଲେ ନାହିଁ । ଗ୍ରାମରେ ସମସ୍ତେ ଗୁଲିଗଲେ । ଆମେ ମାତ୍ର କେତେଜଣ ଗୁମ୍ଫାରେ ରହିଲୁ । ବାହାରେ ରହିଲେ କେବଳ ଜଣେ ମାତ୍ର ବୈଷ୍ଣବ—ଝଡ଼ ବୃଷ୍ଟି ମଧ୍ୟରେ ବସି ସେ ତଥାପି ନାମ କରୁଥାନ୍ତି । ତାଙ୍କର ନାମ-ପ୍ରେମ ଓ ନିଷ୍ଠା ଦେଖି ମୁଁ ଅବାକ୍ ହେଲି । ଆଶ୍ଚର୍ଯ୍ୟର କଥା, ସେହି ବୈଷ୍ଣବଙ୍କର ମୁଖ-ନିଃସୃତ ନାମର ସ୍ୱର କମ୍ପନ ପରବର୍ତ୍ତୀ ଏକ ମାସ ଧରି ମୁଁ ସେଠାରେ ଶୁଣିବାକୁ ପାଇଲି । ତା ପରଦିନ ଜମା ହୋଇଥିବା ଖାଦ୍ୟ ଦ୍ରବ୍ୟ ରନ୍ଧା ହେବାରୁ ସମସ୍ତେ ପ୍ରସାଦ ପାଇଲେ—ଯେତିକ ଆୟ ସେତିକ ବ୍ୟୟ ହୋଇଗଲା ।

## ବିଘ୍ନକାରିଣୀ ଭୈରବୀ

ଆଉ ଥରକର ଘଟଣା । ମୁଁ ପୁଣି ବ୍ରତାଚରଣ କରିବାକୁ ପ୍ରସ୍ତୁତ ହେଉଥାଏ । ଦୁଧ, ଘିଅ ଓ ଚିନି ସଂଗ୍ରହ କରି ଦୁଗ୍ଧାହାର କ୍ରମଶଃ ହ୍ରାସ କରିବାରେ ଲାଗିଲି । ତୃତୀୟ ଦିନ ଅପରାହ୍ଣରେ ମୋ ପାଇଁ ଯେଉଁ ବ୍ୟକ୍ତି ଦୁଧ ଯୋଗାଇବାକୁ ଆସିଲା ତାଠୁ ଶୁଣିଲି ଯେ, ଜଣେ କେହି ମା ଆସିଛନ୍ତି, ସେ କୁଆଡେ ସାକ୍ଷାତ୍ ଆଦ୍ୟାଶକ୍ତି ଓ ତାଙ୍କର ମହିମା ଅଲୌକିକ । ତୁଟି ଆସି ମୋ ପାଖରେ ଏ ସମ୍ବାଦ ପହଞ୍ଚାଇ ସାରି ପୁଣି ଯାଇ ସାଙ୍ଗରେ ଗୋଟିଏ ସ୍ତ୍ରୀ ଲୋକ ଆଣି ଆସିଲା । ଦେଖିଲି, ସ୍ତ୍ରୀ ଲୋକଟି ଉଲଗ୍ନ ଅବସ୍ଥାରେ ଆମମାନଙ୍କ ପାଖରେ ଆସି ପହଞ୍ଚିଲେ । ସେ ମୋତେ କହିଲେ, "ଦାଦା, ଆପଣ ଅନାହାରରେ କାହିଁକି କଷ୍ଟ କରୁଛନ୍ତି । ବ୍ରତଭଙ୍ଗ କରି ଅନ୍ନ ଭୋଜନ କରନ୍ତୁ । ମୁଁ ଆପଣଙ୍କୁ ଗୁରବେଦ ଶିଖାଇଦେବି ।" ଦୁଧ

ଯୋଚାଉଥିବା ଲୋକଟି ଗାଁକୁ ଯାଇ ସମସ୍ତଙ୍କୁ ଏହି ଭୈରବୀ ମାଁଙ୍କ କଥା ଜଣାଇଲା । ଏ କଥା ଶୁଣି କୌତୁହଳ ବଶବର୍ତ୍ତୀ ହୋଇ ଲୋକେ ଦେଖିବାକୁ ଆସିଲେ କିନ୍ତୁ ସେ ସ୍ତ୍ରୀ ଲୋକଟି ବାହାର ଲୋକ ଦେଖିବା ମାତ୍ରେ ସଙ୍ଗେ ପାଗଳୀ ଭଳି ପ୍ରଳାପ କଲେ ଓ ଅସଂଲଗ୍ନ ଆଚରଣ କଲେ । ପାଗଳୀକୁ ଦେଖି ଲୋକମାନେ ଫେରି ଚାଲିଗଲା ପରେ ସେ ପୁଣି ଭଲକଥା କହୁଥିଲେ ଓ ସାଧୁଭଳି ବ୍ୟବହାର କରୁଥିଲେ । ଲୋକ ଦେଖିବା କ୍ଷଣି କିନ୍ତୁ ପାଗଳାମି ପ୍ରକାଶ କରୁଥିଲେ । ମୋତେ ପୁଣି ସେ କହିଲେ, "ବାବା, ଆପଣ ଉପବାସ କାହିଁକି ରହିଛନ୍ତି, ମୁଁ ଆପଣଙ୍କୁ ଭାତ ଖୁଆଇବାକୁ ଆସିଛି ।" ରାତି ବେଳା ଭାତ ରାନ୍ଧି ମୁଁ ତାଙ୍କୁ ଖାଇବାକୁ ଦେଲି କିନ୍ତୁ କୌଣସିମତେ ତାଙ୍କୁ ଖୁଆଇ ପାରିଲି ନାହିଁ । ସେ କିନ୍ତୁ ନିର୍ବନ୍ଧାତିଶଯ୍ୟଦ୍ୱାରା ମୋତେ ଭାତ ଖୁଆଇ ଦେଲେ । ରାତିରେ ନାନା ଧର୍ମ କଥା ଆଲୋଚନା ହେବାକୁ ଲାଗିଲା । ପର ଦିନ ସକାଳେ ଅନେକ ଲୋକ ଆସି ପହଞ୍ଚିବାରୁ ସେ ପୂର୍ବଭଳି ପାଗ-ଳାମି ଆରମ୍ଭ କରିଦେଲେ । ତାଙ୍କର ଏପରି ବ୍ୟବହାରରେ କ୍ରମେ ମୁଁ ବିରକ୍ତ ହୋଇ ଉଠିଲି ଓ ତାଙ୍କୁ କହିଲି, ଚୁପ କରି ରହିବ ତ ରୁହ—ନ ହେଲେ ଏଠା ଛାଡ଼ି ଚାଲିଯିବାକୁ ପଡ଼ିବ । ସେ କି ଚୁପ କରି ରହିପାରେ ? ମୁଁ ତାଙ୍କୁ ଗୋଟିଏ ଠେଙ୍ଗା ଧରି ଘଉଡ଼ାଇବାକୁ ଉଦ୍ୟମ କରିବାରୁ ସେ କହିଲେ, "ମୁଁ ଚାଲିଯାଉଛି ।" ଏପରି କହି ସେ ପ୍ରସ୍ଥାନ କଲେ । କିଛି ଦୂରକୁ ଚାଲିଯିବା ପରେ ତାଙ୍କର ଆଉ ଦେଖା ମିଳିଲା ନାହିଁ । ଚତୁର୍ଦ୍ଦିଗ ବୁଲି ମୁଁ ନାନା ସ୍ଥାନରେ ଅନୁସନ୍ଧାନ କଲି କିନ୍ତୁ କେଉଁଠି ପାଇଲି ନାହିଁ । ଏ ଘଟଣାରେ ଉପସ୍ଥିତ ସମସ୍ତେ ଖୁବ୍ ବିସ୍ମିତ ହେଲେ । ସେଥିରକ ପାଇଁ ମୋର ବ୍ରତ ଭଙ୍ଗ ହେଲା ।

## ପଶ୍ଚିମା ସାଧୁ

ଗୁମ୍ଫାରେ ଥିଲା ସମୟରେ ଦିନେ ରାତି ଅଧରେ ଜଣେ ପଶ୍ଚିମା ସାଧୁ ଆସି ପହଞ୍ଚିଲେ ଓ ସେହି ଗୁମ୍ଫାରେ ରହିବା ପାଇଁ ଜିଦ୍ ଲଗାଇଲେ—

ଯଦିଓ ଗୁମ୍ଫାରେ ଦୁଇ ଜଣ ବାସ କରିବା ସୁବିଧାଜନକ ନୁହେଁ । ମୋତେ କହିଲେ, "ତୋର କେବଳ କ'ଣ ଏକୁଟିଆ ଏ ଗୁମ୍ଫା, ମୋର ଅଧିକାର ନାହିଁ ?" ମୁଁ ଅତିଥି ନାରାୟଣ ଭାବି ତାଙ୍କୁ ଆଦରର ସହ ଗୁମ୍ଫାରେ ସ୍ଥାନ ଦେଲି । ଭିକ୍ଷା କରି ଆଣିଥିବା ଚାଉଳରେ ପେଜେଇ କରି ଖାଇ ସାରିଥାଏ, ତେଣୁ ଅତିଥି ନାରାୟଣଙ୍କର ଆଉ ସେବା ହୋଇପାରିଲା ନାହିଁ । ଗୁମ୍ଫାରେ ଲମ୍ବ ହୋଇ ଦୁଇ ଜଣଙ୍କର ଶୋଇବା ପାଇଁ ଜାଗା ଥାଏ । ମୁଁ ତାଙ୍କୁ ପଚାରିଲି—ତୁମେ ଭିତର ପାଖେ ନା ବାହାର ପାଖେ ଶୋଇବ ? ସେ ସାଧୁ ଭବିଷ୍ୟତ ବିଚାର କରି ବାହାର ପାଖରେ ଶୋଇବାକୁ କହିଲେ । କାରଣ, ଅକସ୍ମାତ୍ କୌଣସି ବିପଦ ଆସି ପହଞ୍ଚିଲେ ବାହାର ପାଖେ ଥିଲେ ହଠାତ୍ ଖସି ପଳାଇଯିବାର ସୁବିଧା ହେବ । କିନ୍ତୁ ଭିତରେ ଥିଲେ ଆଉ ପଳାଇବାର ଉପାୟ ନାହିଁ । ମୁଁ ଭିତରେ ଶୋଇ ଅତିଥିଙ୍କୁ ବାହାର ପାଖରେ ଶୋଇବାକୁ ଦେଲି । ଆମେ ଶୋଇଥିବା ଅବସ୍ଥାରେ ଅନୁମାନ କରି ଜାଣିଲି ଯେ ଗୋଟିଏ ପାହାଡ଼ିଆ ମୂଷାକୁ ଗୋଖର ସାପ ଗୋଡ଼ାଉଛି । ପ୍ରାଣ ବିକଳରେ ମୂଷାଟି ଆମ ଶୋଇଥିବା ଗୁମ୍ଫାରେ ପଶିଗଲା । ପ୍ରଥମେ ସାଧୁଙ୍କର ଗୋଡ ଓ ପରେ ମୋର ଗୋଡରେ କୁଦାମାରି ଉପର ପାଖରେ ଥିବା ଗୋଟିଏ ଗାତ ଦେଇ ବାହାରକୁ ଚାଲିଗଲା । କାରଣ, ପାହାଡ଼ିଆ ମୂଷା ସର୍ବଦା ବିଚରଣ କରି କେଉଁଠି କ'ଣ ଅଛି ସବୁ ଆଗରୁ ଦେଖିଛି । ସାପ ମଧ୍ୟ ଛାଡ଼ିନାହିଁ । ସେ ମୂଷାକୁ ଲକ୍ଷ୍ୟକରି ଦଉଡ଼ୁଛି । ପ୍ରଥମେ ସେଇ ସାଧୁଙ୍କର ଓ ପରେ ମୋର ଗୋଡ ଉପରେ ଦେଇ ସର ସର ହୋଇ ମୂଷା ପଳାଇଥିବା ଗାତ ଦେଇ ବାହାରକୁ ଚାଲିଗଲା । ମୂଷା ଓ ସାପ ଚାଲିଗଲା ପରେ ସାଧୁ ବାବାଙ୍କୁ ଆଉ କି ନିଦ ହୁଏ ! ମୋତେ ଠେଲି ପେଲି ଉଠେଇବା ପାଇଁ ଚେଷ୍ଟା କଲେ । ମୁଁ କିନ୍ତୁ ନିଶ୍ଚିନ୍ତ ହୋଇ ଶୋଇ ରହିଥାଏ । ଗୋଟିଏ ମୂଷା ପଛରେ ଗୋଟିଏ ସାପ ଚାଲିଗଲା । ମୋର ସେଥିରେ କ'ଣ ଯାଏ ଆସେ ? କିନ୍ତୁ ସାଧୁ ବାବାଙ୍କୁ ଆଉ ନିଦ ନ ହୁଏ । ସେ ଶୋଇବାକୁ ଚେଷ୍ଟା କରନ୍ତି, ଭୟରେ ଗୋଡ ଥରିବାରୁ ଆଉ ନିଦ ହୁଏନି । ମୁଁ ଶୋଇ ଶୋଇ ସବୁ ଅନୁଭବ କରୁଥାଏ । ମୁଁ କିନ୍ତୁ ମନଙ୍କ ଭଳି ପଡ଼ି ରହିଥାଏ । ସାଧୁଙ୍କୁ ନିଦ ନ ହେବାରୁ ଶେଷରେ ସେ ପ୍ରାଣାୟାମ

ଆରମ୍ଭ କରିଦେଲେ । ଦେଖିଲି, ଜଣେ ଭଲ ସାଧୁ । ପ୍ରାୟ ୧୫ ମିନିଟ୍ କୁମ୍ଭକ କରି ରହିପାରୁଛନ୍ତି । କିନ୍ତୁ ନିଃଶ୍ୱାସ ଗ୍ରହଣ କରିଦେଲେ ପୁଣି ସେଇ ଭଳି ଆରମ୍ଭ ହୋଇଯାଏ । ଏହାପରେ କୁମ୍ଭକ ତିନି ଥର ସାଗ୍ରହ ବଢ଼ାଇଲେ । ସନ୍ଧ୍ୟାକୁ ସକାଳୁ ମୋ ଉପରେ ଖୁବ୍ ଚଢ଼ାଉ କଲେ । କହିଲେ, "ତୁ ଗୋଟାଏ ଚୋର, ଧରାପଡ଼ିଯିବା ଭୟରେ ଏଠାରେ ଛଦ୍ମବେଶ ଧରି ଲୁଚିଛୁ । ତୋର ସାଧନ ଭଜନ କିଛି ନାହିଁ ! ଆଜି ତୋତେ ମାଡ଼ ଦେଇ ସିଧା କରିଦେବି । " ମୁଁ କହିଲି, "କାଲି ରାତିରେ ଯାହା ହେଲା ମୁଁ ସବୁ ଜାଣେ । ସାପ ଓ ମୂଷାଙ୍କଦ୍ୱାରା ମୁଁ ବିଚଳିତ ହୁଅନ୍ତି କାହିଁକି ? ସେ ତ ଏଠାରେ ନିତି ଦିନିଆ ଘଟଣା !"

ସାଧୁ ତାପରେ କହିଲେ, "ଦେଖ ମୁଁ ପନ୍ଦର ମିନିଟ୍ କାଳ କୁମ୍ଭକ କରି ଧ୍ୟାନସ୍ଥ ହୋଇ ରହୁଛି, ତୁ ଖାଲି ଖାଇପିଇ ଶୋଉଛୁ, ସାଧନ ଭଜନର ନାଁ ଗନ୍ଧ ନାହିଁ !'

ମୁଁ ପଚାରିଲି, "ଦିନର ଅବଶିଷ୍ଟ ତେଇଶି ଘଣ୍ଟା ପଞ୍ଚଚାଳିଶ ମିନିଟ୍ ଆପଣ କ'ଣ କରନ୍ତି ଦୟାକରି କହିବେ କି ?"

ସାଧୁ କହିଲେ, 'ତୁ କ'ଣ ଏତିକି କରିପାରିବୁ ?' ମୁଁ କହିଲି, "ସାଧୁ ବାବା, ମୁଁ ଶୋଇପଡ଼ୁଛି, ଆପଣ ମୋ ନାକରୁ ନିଃଶ୍ୱାସ ଚଳାଚଳ ପରୀକ୍ଷା କରି ଦେଖିପାରନ୍ତି ।" ପରୀକ୍ଷା କରିବା ଉଦ୍ଦେଶ୍ୟରେ ମୁଁ ଶୋଇବାର ଦୁଇଘଣ୍ଟା ଧରି ସାଧୁ ମୋ ନାକ ପାଖରେ ହାତ ରଖିଲେ । ନିଃଶ୍ୱାସର ସନ୍ଧାନ ନ ପାଇ ଅବାକ୍ ହେଲେ । ମୋ ଗୋଡ଼ ତଳେ ପଡ଼ି କହିଲେ, "ବାବା, ଆପଣଙ୍କୁ ମୁଁ ଭୁଲ ବୁଝିଥିଲି । ଅନେକ ତିରସ୍କାର କରିଛି, ମୋତେ କ୍ଷମା କରନ୍ତୁ ଓ ଏହି ଯୋଗର କୌଶଳ ମୋତେ ଶିଖାଇଦିଅନ୍ତୁ !" ପରବର୍ତ୍ତୀ ତିନିଦିନ ମୋ ପାଖରେ ରହି ଯୋଗ ଶିକ୍ଷା କଲା ପରେ ସାଧୁ ସେଠାରୁ ପ୍ରସ୍ଥାନ କଲେ ।

## ସନ୍ନ୍ୟାସୀ ସାଧୁ

ଗୁମ୍ଫାବାସ ଫଳରେ ଦିନକୁ ଦିନ ମୋର ମାନସିକ ଅବସ୍ଥା ଉନ୍ନତ ହେଉଥାଏ, ଆନ୍ତରିକ ଶାନ୍ତି ଓ ସ୍ଥୈର୍ଯ୍ୟ କ୍ରମେ ବୃଦ୍ଧି ପାଇବାରେ ଲାଗି-ଥାଏ । ପୂର୍ବପରି କୌଣସି ବାଦ ବିସମ୍ବାଦ ନାହିଁ । ବୈଷୟିକ ସୁଖ ବା ଦୁଃଖର ଅବକାଶ ନାହିଁ, ସବୁବେଳେ ଯେପରି ନିର୍ବିକାର ଓ ଆତ୍ମ ସମାହିତ ଭାବ । ସେଥର ଆଉ ଜଣେ ସାଧୁ ଗୁମ୍ଫାରେ ଆସି ପହଞ୍ଚିଥାନ୍ତି । ରାତିରେ ଭାତ ରନ୍ଧାଯିବା କଥା । ସାଧୁ କହିଲେ, "ଦେଖ, ଆଜି ମାଛ ଭାତ ଖାଇଲେ ଭଲ ହୁଅନ୍ତା । ଚାଲ ଦୁହେଁ ଯାଇ ମାଛ ଧରି ଆଣିବା ।" ଭାଦ୍ର ମାସ ହୋଇଥାଏ । ଧାନ ଜମିରେ ବେନ୍ଧା ପକାଇ ମାଛ ଧରାଯାଉଥାଏ । ମାଛ ଯାଚ୍ଞା ଆଣିବାକୁ ସାଧୁ ପ୍ରସ୍ତାବ କଲେ । ମୁଁ କହିଲି, "ଚାଲ, ମୁଁ ତୁମ ସଙ୍ଗେ ଯାଉଛି, କିନ୍ତୁ ମାଛ ଯାଚିବା ନାହିଁ ।" ଆମେ ବିଲ ପଡ଼ିଆ ଚାରିଆଡ଼େ ବୁଲି ଆସିଲୁ କିନ୍ତୁ କୌଣସି-ଠାରେ ମାଛ ମିଳିଲା ନାହିଁ । ରାତି ହେବାକୁ ଗଲା । ଗୋଟିଏ ମାହାତ ଘରୁ ଚାଉଳ ଭିକ୍ଷା କରି ଭାତ ରନ୍ଧାଗଲା । ଖାଇ ପିଇ ଶୋଇଲୁ । ପରଦିନ ସକାଳେ ସ୍ନାନ କରି ସାରି କିଛି ଜଳଖିଆ ଖାଇଲୁ । ସାଧୁ କହିଲେ ଯେ, ସେ ବିଦାୟ ନେବାକୁ ଚାହାନ୍ତି । କାରଣ ସେଦିନ ଅପରାହ୍ଣ ଚାରିଟା ବେଳେ ପୁରୁଲିଆର ବରାବଜାରଠାରେ ତାଙ୍କର କୌଣସି ସଭାରେ ଭାଷଣ ଦେବା କଥା ରହିଛି । ସେଠାରୁ ବରାବଜାର ପ୍ରାୟ ଛବିଶି ମାଇଲ ରାସ୍ତା । ସେତେ-ବେଳକୁ ବେଳ ପ୍ରାୟ ଦଶଟା ହେବଣି । ତାଙ୍କ ସଙ୍ଗେ କିଛି ଦୂର ଯାଇ ତାଙ୍କୁ ବିଦାୟ ଦେଲି । ଅଳ୍ପକ୍ଷଣ ପରେ ଲେଉଟି ଦେଖେ ତ ସେ ଆଉ କେଉଁଆଡ଼େ ନାହାନ୍ତି । ଖୁବ୍ ବିସ୍ମିତ ହେଲି । ସେତେବେଳେ ଏହିପରି ଅନେକ ବିଚିତ୍ର ଘଟଣା ଘଟୁଥିଲା । ସାଧୁ ସନ୍ନ୍ୟାସୀ ଓ ଦେବତାମାନେ କୃପା କରି ଗୁମ୍ଫାରେ ଆବିର୍ଭୂତ ହେଉଥିଲେ । ସୂକ୍ଷ୍ମ ପ୍ରେତାତ୍ମାଙ୍କ ସଙ୍ଗେ ମଧ୍ୟ ବେଳେ ବେଳେ ଭେଟ ହୋଇଯାଉଥିଲା ।

## ଭୂତଙ୍କ ପାଲଟରେ

ଅପରାହ୍ଣରେ ଥରେ ଗ୍ରାମକୁ ଯାଇଥିଲି । ଫେରିଲାବେଳକୁ ରାତି ହୋଇଯାଇଥିଲା । ଜହ୍ନ ରାତି, ଆସି ଗୁମ୍ଫା ଭିତରେ ଶୋଇଲି । ସାମାନ୍ୟ

ଚନ୍ଦ୍ରାର ଖୁବ ଥିଲା । ଏତିକିବେଳେ ବାହାରେ ଲୋକମାନଙ୍କର ଗଣ୍ଡଗୋଳ ଭଳି ଶବ୍ଦ ଶୁଣିବାକୁ ପାଇଲି । ଉଠିପଡି ବାହାରକୁ ଆସିଲି । ଦେଖିଲି ଅନେକ ଲୋକ । ବୈଶାଖ ମାସ, ମନେହେଲା, ଲୋକ ବୋଧହୁଏ ବଗନୁ-ଗମନ କରୁଛନ୍ତି, କିନ୍ତୁ ରାସ୍ତା ଭୁଲିଯାଇ ପାହାଡ଼ ଆଡକୁ ମାଡ଼ି ଆସୁଛନ୍ତି । ମୁଁ ସେମାନଙ୍କୁ କହିଲି, ଯେବେ ରାସ୍ତା ଭୁଲିଥାଅ, ମୋ ପାଖକୁ ଆସ ମୁଁ ତୁମକୁ ଠିକ୍ ରାସ୍ତା ବତାଇଦେବି । ଏହା ଶୁଣି ସେମାନେ ସମସ୍ତେ ଧାଡ଼ି ବାନ୍ଧି ଗୁହା ଆଡ଼କୁ ଆସିବା ଦେଖାଗଲା । ଚନ୍ଦ୍ରାଲୋକରେ ମୋ ଆଖି ଯେତେ ଦୂର ପହଞ୍ଚିପାରିଲା ଚାହିଁ ଦେଖିଲି ଯେ, ତାଙ୍କ ଧାଡ଼ି ସେ ଯାଏ ଲମ୍ବିଛି । ମୋ ପାଖ ଦେଇ ସେମାନେ ଗୁହା ଭିତରେ ପଶିବାକୁ ଲାଗିଲେ । 'ତୁମେ ସବୁ କୁଆଡ଼େ ଯିବାକୁ ଚାହୁଁଛ ? ଦଳେ କାଲି ନା କଣ ! ମୋ କଥା ଶୁଣାଯାଉନି ?' ମୋର ପ୍ରଶ୍ନର କୌଣସି ଜବାବ ମିଳିଲା ନାହିଁ । ହଠାତ୍ ଠାକୁରଙ୍କ ବର୍ଣ୍ଣିତ ଭୂତ ବିଷୟକ ଗଳ୍ପ ମୋର ମନେପଡ଼ିଗଲା । ମୁଁ ଭାବିଲି, ତେବେ ଏମାନେ କଣ ମନୁଷ୍ୟ ନୁହନ୍ତି ? ଅଶରୀରୀ ଭୂତ ପ୍ରେତ ନିଶ୍ଚୟ । ମୋର ରହିବା ସ୍ଥାନକୁ ଏମାନେ ଦଖଲ କରିବାକୁ ବସୁଛନ୍ତି ବୋଧହୁଏ । ଏହା ଚିନ୍ତାକରି ମୁଁ ସେମାନଙ୍କ ସଙ୍ଗେ ଗୁହା ଭିତରେ ପଶିଲି ଓ ସେମାନଙ୍କୁ ଖୁବ୍ ମାଡ଼ ମାରିଲି । ମାରି ମାରି ସେମାନଙ୍କୁ ଘର ଭିତରୁ ନିକାଲିଦେଲି । ତାଙ୍କ ସଙ୍ଗେ ଏପରି ଧସ୍ତାଧସ୍ତି ହୋଇ ମୋତେ ଖୁବ୍ ପରିଶ୍ରାନ୍ତ ଲାଗିଲା । ଦେହ ଘର୍ମାକ୍ତ ହୋଇଗଲା । ତେଣୁ ନଦୀରେ ସ୍ନାନ କରି ଫେରିଲି । ସେତେ-ବେଳକୁ ପ୍ରାୟ ମଧ୍ୟରାତ୍ରି ହେବ ।

## ଚେତ୍ରାମ୍ମାର ସାହାଯ୍ୟ

ଥରେ ଗୁହାରେ ଚୋରି ଉପଦ୍ରବ ହେଲା । ରାତିରେ ଚୋର ପଶି ମୋର ଲୋଟା, ଛତା ଓ ସେରେ ଚାଉଳ ଚୋରି କରି ନେଇଗଲା । ମୁଁ ଗ୍ରାମକୁ ଯାଇ ଜମିଦାରଙ୍କୁ ଜଣାଇଲି ଯେ, ତୁମ ଗ୍ରାମରୁ କେହି ଚୋର ମୋ ଆଶ୍ରମକୁ ଯାଇ ଚୋରି କରିଛି, ତୁମେ ଏହାର ପ୍ରତିକାର କର । ଜମିଦାର କେତେକ ଗ୍ରାମବାସୀଙ୍କୁ ଡ଼ାକି ଧମକାଇଲେ, କିନ୍ତୁ କିଛି ଫଳ ହେଲାନାହିଁ ।

ପୁଣି ଥରେ ପ୍ରେତର ପଶି ବାହାରେ ଥିବା ମୋର ବୋଷେଇ ଘର ଚୂଲି ଭାଗି ପଞ୍ଚ ପୋତା ଧନ ପାଇବା ଲୋଭରେ ଖୋଳିପକାଇଲି । ଏଥରକ ମୁଁ ଖୁବ୍ ରାଗିଯାଇ ଗ୍ରାମକୁ ଗଲି ଓ ଗ୍ରାମବାସୀଙ୍କୁ ଡ଼କାଇ ଏହାର ପ୍ରତିକାର ଲୋଡ଼ିଲି । ମୁଁ କହିଲି, "ପ୍ରେତ ଯାଇଥିବା କନକ ପଦ ମୋତେ ଫେରାଇ ଦିଅ ନଚେତ୍ ମୁଁ ପ୍ରେତକୁ କେବେ ଧରିବି ।" ଲୋକେ କହିଲେ, ଆପଣ ଯଦି ପ୍ରେତକୁ ଧରି ପାରିବେ ତେବେ ଖୁବ୍ ଭଲ ହୁଅନ୍ତା ।" ମୁଁ ସେଠାରୁ ଫେରି ଗୁହା ଭିତରେ ଉପବାସୀ ହୋଇ ଶୋଇ ରହିଲି । ମନରେ ସଙ୍କଳ୍ପ କଲି, ପ୍ରେତ ଧରା ନ ପଡ଼ିବା ଯାଏ ଜଳ ସ୍ପର୍ଶ କରିବି ନାହିଁ । ଶୋଇବା ଅବସ୍ଥାରେ ଦେଖିଲି ଜଣେ ସ୍ତ୍ରୀ ଲୋକ ଆସି ମୋତେ କହୁଛି, 'ବାବା, ଆପଣ ଛଟି ଉନ୍ଦାବଟା କରନ୍ତୁ, ମୁଁ ପ୍ରେତକୁ ଧରାଇଦେବି ।' ମୁଁ ପଚାରିଲି, 'ତୁମେ କିଏ, କେଉଁଠି ରୁହ ? ମୁଁ ତ ତୁମକୁ ଆଗରୁ କେଉଁଠି ଦେଖିଲି ଭଳି ଲାଗୁନି ।' ସେ କହିଲା, "ମୋର ଘର ଏହି ଗ୍ରାମରେ । ମୋର ଶ୍ୱଶୁରଙ୍କ ସାତ ପୁଅ, ସାତ ବୋହୂ । ସମସ୍ତେ କଲେରାରେ ଆକ୍ରାନ୍ତ ହୋଇ ପ୍ରାଣ ହରାଇଲେ । ଏକା ମୁଁ ରହିଲି । ପରେ ମୋର ମଧ୍ୟ ମୃତ୍ୟୁ ହେଲା । ଏହି ସ୍ଥାନ ପ୍ରତି ମୋର ଅଧିକ ଆସକ୍ତି ହେତୁ ଆଉ କେଉଁଆଡ଼େ ନ ଯାଇ ରହିଛି । ଆପଣ ଚାହିଁଲେ ପ୍ରେତକୁ ମୁଁ ପ୍ରାଣରେ ମାରିଦେଇ ପାରେ ।" ମୁଁ କହିଲି, 'ଦେଖ, ପ୍ରେତ କଲେରାରେ ଆକ୍ରାନ୍ତ ହେଉ, କିନ୍ତୁ ତାର ପ୍ରାଣ ନ ଯାଉ । ମୁଁ ତା ପାଖରେ ପହଞ୍ଚିବା ପରେ ସେ ଯେପରି ରୋଗମୁକ୍ତ ହୋଇଯାଏ ।' ପ୍ରେତାତ୍ମା ମୋ କଥାରେ ସ୍ୱୀକୃତା ହୋଇ କହିଲା, 'ତେବେ ଆପଣ ଗ୍ରାମକୁ ଯାଇ ଖବର ନିଅନ୍ତୁ ।' ଏହା କହି ସେ ଉଭେଇ ଗଲା । ସଙ୍ଗେ ସଙ୍ଗେ ମୁଁ ଗ୍ରାମକୁ ଯାଇ ଜାଣିଲି ଯେ ଜଣକର ଝାଡ଼ାବାନ୍ତି ଆରମ୍ଭ ହୋଇଛି । ଡ଼ାକ୍ତର ଡ଼କାଯାଇଛନ୍ତି । ଡ଼ାକ୍ତର ଆସିବା ଦେଖି ମୁଁ ତାଙ୍କୁ ପଚାରିଲି, ଆପ କେଉଁଠାକୁ ଯାଉଛନ୍ତି ? ଡାକ୍ତର କହିଲେ, 'ଜଣେ କଲେରା ରୋଗୀ ଦେଖିବାକୁ ଯାଉଛି । ତାପରେ ମୁଁ ଗୁହାକୁ ଫେରି ଆସି ଭାତ ରାନ୍ଧି ଖାଇଲି ଓ ରାତିଟି ବିତାଇ ପରଦିନ ପୁଣି ଗ୍ରାମକୁ ଗଲି । ଦେଖିଲି ରୋଗୀ ଘରୁ ଡ଼ାକ୍ତର ଫେରୁଛନ୍ତି । ମୁଁ ପଚାରିଲି, 'ଆପଣଙ୍କ ରୋଗୀ କିପରି ଅଛି ?' ସେ କହିଲେ, 'ତାର ଆଶା ଖୁବ୍ କମ୍ ।' ଡ଼ାକ୍ତରଙ୍କୁ ମୁଁ କହିଲି, ଦେଖନ୍ତୁ, ଏ ଲୋକଟି ଗୁହାରୁ ମୋର କନକପଦ

ରୋଗୀକର ଆଣିଛୁ । ଏକଥା ଶୁଣି ସଙ୍ଗେ ସଙ୍ଗେ ଡ଼ାକ୍ତର ବାବୁ ଘର ଭିତରକୁ ଗଲେ ଓ ରୋଗୀର ମା'କୁ ପଚାରିଲେ, 'ତୁମ ପୁଅ ସାଧୁଙ୍କ କଳପ ରୋଗ ଭଲ ଆଣିଛୁ ?' ପୁଅର ଅବସ୍ଥା ସାଙ୍ଘାତିକ ହେବାକୁ ବସିଥିବାରୁ ମା ମୁହଁରୁ ସତ କଥାଟି ବାହାରିଗଲା, 'ହଁ ବାପ, ଆଣିଛୁ ।' ତା ପରେ ମା'ଟି ମୋ ପାଖକୁ ଆସି ପାଦ ଧରି କାନ୍ଦିବାକୁ ଲାଗିଲା । ଗ୍ରାମର ଲୋକେ ଆସି ପହଞ୍ଚିଗଲେ । ମୁଁ ଭିତରକୁ ଯାଇ ସେ ରୋଗୀଟି ପାଖରେ ଛିଡ଼ା ହେଲି ଓ ସେହି ପ୍ରେତାତ୍ମାକୁ ସ୍ମରଣ କଲି । ଡ଼ାକ୍ତରଙ୍କୁ କହିଲି, 'ଆପଣ ଏଥର ନାଡ଼ୀ ପରୀକ୍ଷା କରନ୍ତୁ ।' ଡାକ୍ତର ନାଡ଼ି ଚିପି କହିଲେ, 'ଆରେ, ଏଥରକ ତ ନାଡ଼ୀ ଫୁଟିଲାଣି ।' ଅଧ ଘଣ୍ଟାକମଧ୍ୟରେ ଝାଡ଼ାବାନ୍ତି କମିଯାଇ ରୋଗୀର ଅବସ୍ଥା ଭଲଆଡ଼କୁ ଗଲା । ମୋର ଲୋଟା ଓ ଛତା ନେଇ ମୁଁ ଗୁହାକୁ ଫେରିଲି ।

## ଗୁହାର ଜୀର୍ଣ୍ଣ ସଂସ୍କାର

ଥରେ ଦୁର୍ଗାପୂଜା ଅବସରରେ ଝଡ଼କୁସୁମା ଅଶ୍ରମ ଆସିଥିଲି । ଦଶ ପନ୍ଦର ଦିନ ରହିବା ପରେ ଶ୍ରୀଯୁକ୍ତ କୃଷ୍ଣ ଗୋପାଳ ମୁଖାର୍ଜୀ*ଙ୍କ ସଙ୍ଗେ ସାକ୍ଷାତ ହେଲା । ସାଙ୍ଗ ହୋଇ ଆମେ ପୁରୁଲିଆ ଗଲୁ । ଅନେକ ସମୟ ଧରି ତନ୍ତ୍ର ଯୋଗ ଇତ୍ୟାଦି ସମ୍ପର୍କରେ ଆଲୋଚନା ହେଲା । ସେ ମୋର ସ୍ଥୈର୍ଯ୍ୟ ତଥା ଯୋଗାନୁଭୂତି ପରୀକ୍ଷା କରିବା ପାଇଁ ଦିନ ଦିନ ଧରି ମୋ ସଙ୍ଗେ ଆଲୋଚନା କଲେ । ମୋ କୃଚ୍ଛ୍ର ସାଧନା ଓ ଶୁଷ୍କ ରସହୀନ ଆହାର ପ୍ରଣାଳୀ ତାଙ୍କର ମନୋମତ ହେଲା ନାହିଁ । ସେ ପରାମର୍ଶ ଦେଲେ ଯେ, ମୁଁ ଯେପରି ଖାଦ୍ୟାଖାଦ୍ୟ ବିଚାର ନ ରଖି ମାଛ, ମାଂସ, ଦୁଧ ଇତ୍ୟାଦି ସମସ୍ତ ନିରୁଦ୍‌ବିଗ୍ନ ଭାବେ ଖାଏ; କାରଣ ସାଧନାର ପରିପକ୍ୱ ଅବସ୍ଥାରେ ଆହାର ସଂଯମ ନିଷ୍ପ୍ରୟୋଜନ । ମୁଁ କହିଲି, 'ସବୁପ୍ରକାର ଖାଦ୍ୟ ମୁଁ ଖାଇପାରେ, କିନ୍ତୁ ଟଙ୍କା ଆସିବ କୁଆଡ଼ୁ ?' 'ମୁଁ ମାସିକ ପାଞ୍ଚ ଟଙ୍କା କରି ଯୋଗାଇବି—

---

* ଶ୍ରୀ ଶ୍ରୀ ଠାକୁରଙ୍କ ଅନ୍ୟତମ ପ୍ରବୀଣ ଗୃହସ୍ଥ ଶିଷ୍ୟ; ଓଡ଼ିଶା ସରକାରଙ୍କ ଅଧୀନସ୍ଥ ତତ୍କାଳୀନ ପୂର୍ତ୍ତ ବିଭାଗୀୟ ଏସ୍, ଡ଼ି, ଓ. ।

ସେ କହିଲେ । 'ତୁମେ ପାରିବ ନାହିଁ' କହି ମୁଁ ତାଙ୍କଠାରୁ ବିଦାୟ ନେଲି । ତା ପରଠାରୁ ସେ ମାସିକ ପାଞ୍ଚଟଙ୍କା କରି ପଠାଇବାକୁ ଲାଗିଲେ । ପ୍ରଥମ ମାସ ଟଙ୍କାରେ ଦିଅ କିଣି ବ୍ୟବହାର କଲି । ସେ ବେଶିଦିନ ଯୋଗାଇ ପାରିବେ ନାହିଁ ଜାଣିପାରି ପରବର୍ତ୍ତୀ ପ୍ରାୟ ୪ ମାସର ଟଙ୍କା ଜମା ରଖିଲି । ବାସ୍ତବିକ ୫ ମାସ ପରେ ଆଉ ଟଙ୍କା ଆସିଲା ନାହିଁ । ସଞ୍ଚିତ ଟଙ୍କା ବ୍ୟୟ କରି ଗୁମ୍ଫାଟିର ସଂସ୍କାର କରାଇଦେଲି । ଛାତରେ ପଥର ଯୋଡ଼ରୁ ପାଣି ଗଳୁଥିଲା । ସିମେଣ୍ଟ ଦେଇ ବନ୍ଦ କରାଗଲା । ଗୁମ୍ଫାମୁଖରେ କବାଟ ଲଗାଗଲା ।

## ଯୋଗଦା ଆଶ୍ରମର ଶିକ୍ଷକଙ୍କ ସଙ୍ଗେ

ଦିନେ ସେଠାରୁ ପୁରୁଲିଆ ଯିବାକୁ ମନ ବଳାଇଲି । ଚାଲିବାଟ ଧରି ପ୍ରାୟ ବାର ମାଇଲ ଅତିକ୍ରମ କଲାପରେ ଲକ୍ଷ୍ମଣପୁର ଗ୍ରାମ । କିଛିଦୂର ଆଗରୁ ରାସ୍ତାରେ ସାଇନ୍‌ବୋର୍ଡ଼ ଲାଗିଥିବା ଦେଖିଲି; ଲେଖାଅଛି, 'ଯୋଗଦା ସତ୍ସଙ୍ଗ ଆଶ୍ରମ' । ଆଶ୍ରମ ବୁଲି ଦେଖିବାକୁ ଭିତରକୁ ଗଲି । ଗୋଟିଏ ଛାତ୍ରାବାସ ଅଛି, ଛାତ୍ରମାନେ ଅଛନ୍ତି । ଅପରାହ୍ଣ ସାଢ଼େ ଚାରିଟା ହେବ । ପ୍ରଧାନ ଶିକ୍ଷକ ମହାଶୟ ମୋତେ ଦେଖି ମୋର ବାସସ୍ଥାନ ଓ ପରିଚୟ ଇତ୍ୟାଦି ପଚାରିଲେ । ମୁଁ କହିଲି, 'ମୁଁ କିଏ, କେଉଁଠି ରହେ ଇତ୍ୟାଦି ତୁମେ ଜାଣି କଣ କରିବ ?' କିଛି ସମୟ ନୀରବ ରହି ସେ ପୁଣି ପଚାରିଲେ, "ଆପଣ କାହା ଶିଷ୍ୟ ଦୟାକରି ଜଣାଇବେ କି ?" ମୁଁ କହିଲି, "ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ପରମହଂସ ମୋର ଗୁରୁଦେବ ।" ଏହା ଜାଣି ତାଙ୍କର ଅଧିକ ପରିମାଣ ଆଗ୍ରହ ଜନ୍ମିଲା । ସେ ଖଣ୍ଡିଏ ଯୋଗୀଗୁରୁ ପୁସ୍ତକ ଆଣି ମୋତେ ଦେଖାଇଲେ ଓ କହିଲେ ଏଥିରେ ହଂସ ଜଗାଇବାର ଯେଉଁ ମନ୍ତ୍ର ଅଛି ତାହା ମୋର ଗୁରୁଙ୍କ ମନ୍ତ୍ରଠାରୁ ପୃଥକ୍ । ଫଳରେ ମୋ ମନରେ ସଂଶୟ ଜାଗୁଛି ଯେ, କାହା କଥାରେ ବିଶ୍ୱାସ କରାଯିବ—ମୋ ଗୁରୁଙ୍କ ଉପଦେଶ ନା ମହାପୁରୁଷଙ୍କ ଲିଖିତ ତଥ୍ୟ ବିଶ୍ୱାସଯୋଗ୍ୟ ? ମୁଁ ଗତ ତିନି ଦିନ ଧରି ଅନଶନ କରି ରହିଛି । ଯଦି ମୋ ପ୍ରଶ୍ନର ମୀମାଂସା ହୁଏ, ତେବେ

ଭୋଜନ କରିବ, ନଚେତ୍ ପ୍ରାଣ ତ୍ୟାଗ କରିବ । ଆଜି ଯେତେବେଳେ ସେ (ଭଗବାନ) ଆପଣଙ୍କୁ ଏଠାକୁ ପଠାଇଛନ୍ତି ଆପଣ ମୋର ସଂଶୟ ଅବଶ୍ୟ ଦୂର କରିଦେବେ । ମୁଁ କହିଲି, 'ମୁଁ ମୂର୍ଖ ଆଉ ତୁମେ ପଣ୍ଡିତ । ମୁଁ କଣ ତୁମ ପ୍ରଶ୍ନର ଉତ୍ତର ଦେଇପାରିବି ?' ସେ କହିଲେ, 'ମୁଁ ପିଲାଙ୍କ ଶିକ୍ଷକ ଆଉ ଆପଣ ମୋର ମାଷ୍ଟର । ଦୟାକରି ମୋର ପ୍ରଶ୍ନର ମୀମାଂସା କରି-ଦିଅନ୍ତୁ ।' ତା' ପରେ ସେ ପ୍ରଶ୍ନ କରିବାକୁ ଆରମ୍ଭ କଲେ । ମୁଁ ଉତ୍ତର ଦେଇ ଚାଲିଲି । ଏହି ଭାବରେ ସାତ ଦିନ କଟିଗଲା । ତାଙ୍କର ସମସ୍ତ ମୀମାଂସା ହୋଇ ସାରିବା ପରେ ସେ ମୋତେ ବିଦାୟ ଦେଲେ । ମୁଁ ସେଠାରୁ ମୋର ଜନ୍ମସ୍ଥାନ ଲଟୁଝୁଡ଼ା ଆସିଲି ।

## ମୂର୍ଚ୍ଛା ରୋଗର ପ୍ରତିକାର

ଭାଇଙ୍କ ଘରକୁ ଯାଇ ଦେଖିଲି ଯେ ମଝିଆ ଭାଇନା ନଗେନ୍ଦ୍ର ନାଥଙ୍କର ପୁଅଟିଏ ମରିଯାଇଛି ଓ ପୁତ୍ରଶୋକରେ ତାଙ୍କର ମୂର୍ଚ୍ଛା (ଫିଟ୍ସ) ରୋଗ ହୋଇଛି । ଡ଼ାକ୍ତର ଆସି ଚିକିତ୍ସା କରୁଛନ୍ତି । ଫିଟ୍ସ୍ ଆସିଲା ବେଳେ ସାତ ଆଠଜଣଙ୍କୁ ତାଙ୍କରେ ରହିବାକୁ ପଡେ । ମୁଁ ପହଞ୍ଚିଲା ପରେ ଦେଖିଲି ଦାଦା ଶୋଇ ରହିଛନ୍ତି । ପାଖରେ କେତେଜଣ ଲୋକ ବସିଛନ୍ତି । ମୋତେ ଦେଖି ସମସ୍ତେ ଆନନ୍ଦିତ ହେଲେ । ସେମାନଙ୍କ ପାଖରେ ବସି ମୁଁ ନାନା ରକମ ଗଳ୍ପ ଜମାଇଦେଲି । ବେଳା ଦଶଟା ପରେ ହେବାରୁ ବାହାର ଲୋକେ ଚାଲିଗଲେ । ଖାଲି ଦୁଇ ଭାଉଜ ପାଖରେ ଆଆନ୍ତି । ଏତିକବେଳେ ଦାଦାଙ୍କର ଫିଟ୍ସର ଉପକ୍ରମ ହେଲା । ଭାଉଜ ଚିତ୍କାର କରି ଲୋକମାନଙ୍କୁ ଡାକିବାକୁ ଲାଗିଲେ । ମୁଁ ପଚାରିଲି, "ସମସ୍ତଙ୍କୁ କାହିଁକି ଡ଼ାକ ପକାଉଛ ?" ସେ କହିଲେ, "ଏଇ ସଙ୍ଗେ ସଙ୍ଗେ ଦାଦା ଅଚୈତନ୍ୟ ହୋଇ ଯିବେ ଯେ !" ଦାଦାଙ୍କୁ ମୁଁ ପଚାରିଲି, ଆପଣଙ୍କୁ କପରି ଲାଗୁଛି ? ସେ କହିଲେ, "ମୋର ଚୈତନ୍ୟ ଲୋପ ହେବାକୁ ଯାଉଛି ।" "ଆପଣ ଥରେ ଖୁବ୍ ଜୋରରେ ହସି ପାରିବେ ?" ମୁଁ ପ୍ରଶ୍ନ କଲି । ସେ କହିଲେ, "ପ୍ରସଙ୍ଗ ନଥାଇ ମୁଁ କପରି ହସିବି ?" ତା ପରେ ମୁଁ ହାସ୍ୟରସାତ୍ମକ ଗଳ୍ପର ଅବତାରଣା କରି ଖୁବ୍

ହସିବାକୁ ଲଗିଲି । ମୋ ସାଙ୍ଗରେ ସେ ମଧ୍ୟ କ୍ରମେ ଅଳ୍ପରୁ ଅଧିକ ମାତ୍ରାରେ ହସିବାକୁ ଆରମ୍ଭ କରିଦେଲେ । ଦୁଇଜଣଙ୍କର ହସିବାର ଆଉ ଯେପରି ବିରାମ ନାହିଁ । ଅନେକ ସମୟ ପରେ ଆମର ହାସ୍ୟରୋଳ ବନ୍ଦହେଲା । ତାପରେ ମୁଁ କହିଲି, ଏଇଥର ଚାଲ, ଟାଧୋଇ ଯିବା । ଆଉ ତୁମର ମୂର୍ଚ୍ଛା ଆସିବ ନାହିଁ । ଆଜଠାରୁ ତୁମେ ରୋଗମୁକ୍ତ ହେଲ । ସେ ମୋ କଥାରେ ବିଶ୍ୱାସ କରି ଶେଜ ଛାଡ଼ି ଉଠିଲେ । ଦୁଇଜଣ ଏକ ସଙ୍ଗେ ସ୍ନାନ ସାରି ଖିଆପିଆ କଲୁ । ନାନାପ୍ରକାର ଆଳାପ ଆଲୋଚନା ହେଲା । ସେ ଦିନକ ତାଙ୍କରି ଘରେ ରହିଲି । ପରଦିନ ସକାଳେ ପୁରୁଲିଆ ଶ୍ରୀବିପଦ ଚକ୍ରବର୍ତ୍ତୀଙ୍କ ଘରକୁ ଗଲି ଓ ସେଠାରେ କିଛିଦିନ ଅବସ୍ଥାନ କଲି ।

## ଅବିଶ୍ୱାସର ପରିଣାମ

ସେଠାରୁ ଗୁହାକୁ ଫେରି ଆସିବା ରାସ୍ତାରେ ଦେଖିଲି ଗୋଟିଏ ବଗିଚା ଓ ନିକଟରେ ଗୋଟିଏ ପତାକା ଉଡ଼ୁଛି ।

ମନେ ହେଲା କୌଣସି ଆଶ୍ରମ ହେବ । ଭାବିଲି ରାତିକ ସେଇଠି କଟାଇଦେବି । ଭିତରକୁ ଯାଇ ଦେଖିଲି ଯେ ଗୋଟିଏ ଘରେ ଜଣେ ଲୋକ ବସିଛି । ମୋତେ ଦେଖି ସେ କହିଲା, "ବାବା, କୂଅରେ ବାଲଟି ଦଉଡ଼ି ଝୁଲୁଛି । ପାଣି କାଢ଼ି ଗୋଡ଼ ହାତ ଧୁଅନ୍ତୁ ।" ମୁଁ କହିଲି, "ବେଟା, ମୁଁ ପାଣି କାଢ଼ି ଗୋଡ଼ହାତ ଧୋଇବି, ଆଉ ତୁ ବସି ବସି ଚାହିଁଥିବୁ ?" ସେ କହିଲା "ବାବା, ମୁଁ କୁଷ୍ଠରୋଗୀ, କିପରି ଆପଣଙ୍କ ସେବା କରିବି ?" ମୁଁ ଉତ୍ତର ଦେଲି, କାହିଁକି ? ତୁ ପାଣି କାଢ଼ି ମୋର ପାଦ ଧୂଆଇ ଦେଇପାରୁ । ସେ ତାପରେ କୂଅରୁ ପାଣି ଉଠାଇ ମୋର ପାଦ ଧୂଆଇ ଦେଲା ଓ ମୋ ପାଇଁ ରୋଟେଇର ଯୋଗାଡ଼ କରିଦେଲା । ମୁଁ ରୁଟି ତିଆରି କରି ଖାଇଲି । ଖାଇ ସାରିବା ପରେ ସେ ମୋତେ ତା ଘରକୁ ଡ଼ାକିନେଲା । ମୁଁ ସେଠାରେ ରାତିଟି ବିତାଇଲି । ପରଦିନ ସକାଳୁ ସେ ମୋର ପାଦଧରି କାନ୍ଦିବାକୁ ଲଗିଲା ଓ ଅନୁନୟ କରି କହିଲା, ମହାତ୍ମନ୍, ଆପଣ ମୋତେ

ଦସ୍ୟାକର ରୋଗମୁକ୍ତ କରିଦିଅନ୍ତୁ । ମୁଁ କହିଲି, 'ଯଦି ତୋର ଭକ୍ତି ଓ ବିଶ୍ୱାସ ତିନିଦିନ ଅକ୍ଷୁଣ୍ଣ ରହେ ତେବେ ତୁ ଭଲ ହୋଇଯିବୁ, ନଚେତ୍ ମରିଯିବୁ ।' ଏହା କହି ତାକୁ ଗୋଇଠା ମାଡ଼ ଦେଲି । ତାର ରୋଗଜୀବାଣୁ ଆହରଣ କରି ନେଇ ପ୍ରସ୍ଥାନ କଲି । ସେଠାରୁ ପ୍ରାୟ ପାଞ୍ଚ ମାଇଲ ଦୂରରେ ଗୁମ୍ଫା । ଦୁଇ ମାଇଲ ଆସିବା ପରେ ଆଉ ଚାଲି ପାରିଲି ନାହିଁ । ବହୁ କଷ୍ଟରେ ଫେରିଲି ଓ ରୋଗର ପ୍ରଭାବରେ ଦୁଇଦିନ ପୀଡ଼ା ପାଇଲି । ହଠାତ୍ ମନକୁ ଜାଗିଲା, ସେ ଲୋକର ବିଶ୍ୱାସ ତୁଟିଯାଇଛି । ତେଣୁ ମୁଁ ରୋଗକୁ ପରିତ୍ୟାଗ କରି ଦେଲି । ପରେ ଖବର ମିଳିଲା ଯେ ସେ ଲୋକ ମରିଯାଇଛି ।

## ତ୍ରିପୁରା ଭ୍ରମଣରେ ଅନୁଭୂତି

ବଙ୍ଗାବ୍ଦ ୧୩୪୮ (୧୯୪୧ ସାଲ) ହେବ—ଚିଦାନନ୍ଦ ମହାରାଜ * ଖୋଜ ଖବର ନେଇ ହଠାତ୍ ଦିନେ ଗୁମ୍ଫାଠାରେ ପହଞ୍ଚିଗଲେ । ତାଙ୍କୁ ପାଇ ଖୁବ ଆନନ୍ଦ ହେଲି । ତାଙ୍କୁ ସାଙ୍ଗରେ ନେଇ ମହେଶପୁର ଗଲି ଓ ମାଈଙ୍କ ସଙ୍ଗେ ତାଙ୍କର ପରିଚୟ କରାଇଦେଲି । ମହାରାଜ ଗୁମ୍ଫାରେ ପ୍ରାୟ ତିନିଦିନ ଅବସ୍ଥାନ କଲେ । ମୋତେ କହିଲେ, "ହେଲା, ଏଠାରେ ଏତେ କଷ୍ଟ ସହି ଆଉ କେତେ ଦିନ ରହିବ, ବରଂ ମୋ ସାଙ୍ଗେ ଆସ, ମାଳୁଷ ମୁଣ୍ଡିଆ † ଆଶ୍ରମ ପରିଚାଳନାରେ ସହଯୋଗ କରିବ ।" ମୁଁ ରାଜି ହୋଇ ତାଙ୍କ ସଙ୍ଗେ ଗଲି । କିନ୍ତୁ ଶ୍ରୀ ଶ୍ରୀ ଠାକୁରଙ୍କ ନାମରେ ଆଶ୍ରମ ରହିଥିବାରୁ ତାହା ସାରସ୍ୱତ ମଠାନ୍ତର୍ଭୁକ୍ତ ହୋଇ ରହିଲା । ଅନେକ

---

* ଏତେବେଳକୁ ଶ୍ରୀମତ୍ ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ମହାରାଜ ଆସାମ ବଙ୍ଗୀୟ ସାରସ୍ୱତ ମଠର ମହନ୍ତ ପଦ ପରିତ୍ୟାଗ କରି ସ୍ୱାଧୀନ ଭାବେ ଅବସ୍ଥାନ କରୁଥିଲେ ।

† ମାଳୁଷ ମୁଣ୍ଡିଆ ଗ୍ରାମ ଚକୁଲିଆ ରେଲଓ୍ୱେ ଷ୍ଟେସନ ଠାରୁ ପ୍ରାୟ ପନ୍ଦର କି. ମି ଦୂରବର୍ତ୍ତୀ ।

ଚେଷ୍ଟା ସତ୍ତ୍ୱେ ଚଦାନନ୍ଦ ମହାରାଜଙ୍କ କର୍ତ୍ତୃତ୍ୱାଧୀନ ହୋଇ ପାରନ୍ତି ନାହିଁ ।

ଏହା ପରେ ମହାରାଜ ମୟମନସିଂ (ଅଧୁନା ବାଂଗଲାଦେଶ) ଅଭିମୁଖେ ଶିଷ୍ୟମାନଙ୍କୁ ସାକ୍ଷାତ କରିବାକୁ ଗଲେ । ସେଠାରୁ ସେ ତ୍ରିପୁରା ଯାତ୍ରା କରିବା କଥା ଥିଲା । ସେଠାରେ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରିବା ପରିକଳ୍ପନା ରହିଥାଏ । ମୋତେ ଆଗତୁରା ସେଠାକୁ ପଠାଇଦେଲେ । ପୂର୍ବ ନିର୍ଦ୍ଧାରିତ ସମୟ ଅନୁସାରେ ମହାରାଜ ଆସିନପାରିବାରୁ ମୋତେ ତ୍ରିପୁରା ଇଲାକାରେ ପୂରା ଗୋଟିଏ ମାସ ତାଙ୍କ ଅପେକ୍ଷାରେ ରହିବାକୁ ହେଲା । ସିଲେଟି ଭାଷା ଭଲଭାବେ ବୁଝିପାରୁ ନଥିବାରୁ ଭାରି କଷ୍ଟ ହେଉଥାଏ । ସେଠାରେ ପ୍ରାୟ ପଚିଶ ଷାଠିଏ ଘର ଯାଏଁ କାୟସ୍ଥ ମହାରାଜଙ୍କ ଶିଷ୍ୟ ଥାଆନ୍ତି । ଖୁବ୍ ଠାକୁରପ୍ରାଣ ଓ ଗୁରୁଭକ୍ତ । ଶେଷରେ ମହାରାଜ ଯାଇ ପହଞ୍ଚିଲେ ଆଶ୍ରମ ପ୍ରତିଷ୍ଠାର ସମ୍ଭାବନା କ୍ଷୀଣ ଦେଖାଯିବାରୁ ଆମେ ଦୁହେଁ ଫେରିବାକୁ ବସିଥାଉ । ଶିଷ୍ୟ ଭକ୍ତଗଣ ବିଦାୟକାଳୀନ ପ୍ରଣାମ ନିବେଦନ କରୁଥାନ୍ତି । ସମସ୍ତଙ୍କ ସଙ୍ଗେ ଗ୍ରେଟ ଝିଅଟି ପ୍ରଣାମ କଲା । ମୋ ହାତର ଗୋଟିଏ ଆଙ୍ଗୁଠି ମୁଁ ତା ଆଡ଼କୁ ବଢ଼ାଇଦେଲି । ସେ ସେଇ ଆଙ୍ଗୁଠିଟିକୁ ଧରିଥାଏ । ବିଦାୟ ନେଇ ସାରି ଆମେ ସେଠାରୁ ଫେରିଲୁ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଝିଅଟି ଆମରି ସଙ୍ଗେ ଚାଲିଲା; ତା ନିଜଘରକୁ ଫେରିବା ଚାହିଁଲାନି । ତା ମା ଡାକିଲେ, କିନ୍ତୁ ଚଳିନାହିଁ । ଶେଷରେ ଆମେ ସେ ଗ୍ରାମ ଛାଡ଼ି ଚାଲିଯିବା ବେଳ ହେଲା । ଆମେ ଆମର ବିଛଣା ଲୁଗା ବାନ୍ଧୁଛୁ, ଝିଅଟି ମୋ ପଛରେ ଚୁପ୍ କରି ଛିଡ଼ା ହୋଇଥାଏ । ଅଜ୍ଞାତରେ ମୋର କଠଉ ତାର ପାଦ ଆଙ୍ଗୁଠି ଉପରେ ବସି ଯିବାରୁ ଆଙ୍ଗୁଠିଟି ଜୋରରେ ଦଳି ହୋଇଯାଇ ଅନେକ ରକ୍ତସ୍ରାବ ହେଲା । ମୁଁ ଏହି ଘଟଣାରେ ଖୁବ୍ ବିବ୍ରତ ହୋଇଗଲି । ସଙ୍ଗେ ସଙ୍ଗେ ପିଲାଟିକୁ ଫେରମ୍ଫସ୍ (ବାଇକେମିକ୍ ଔଷଧ) ଖାଇବାକୁ ଦେଲି । ସେ କିନ୍ତୁ ଆଦୌ କାନ୍ଦନି । ତାର କିଛି ହୋଇନାହିଁ ବୋଲି କହିଲା । ଅନ୍ୟ ପକ୍ଷରେ ବିଦାୟ ବେଳାରେ ସ୍ଥାନୀୟ ଭକ୍ତମାନଙ୍କର ସେ ଯେଉଁ କ୍ରନ୍ଦନ ରୋଳ ! ସେ ଦୃଶ୍ୟ ଦେଖି

ଚିଦାନନ୍ଦ ମହାରାଜଙ୍କ ଭଳି ମହାନ୍ ତ୍ୟାଗୀ / ଯତିଙ୍କର ମଧ୍ୟ ମନ ଦ୍ରବୀଭୂତ ହେଲା । ଆମେ ତ୍ରିପୁରା ଗୋଷ୍ଠାକପାଳ ଘୂରି ଦେଖିଲୁ ।

## ଅଠରବାଟୀ ଜମିଦାର ପରିବାରଙ୍କର ଦୀକ୍ଷା

ତ୍ରିପୁରା ସନ୍ନିକଟବର୍ତ୍ତୀ ଶ୍ରୀହଟ୍ଟଜିଲ୍ଲା ଚିଦାନନ୍ଦ ମହାରାଜଙ୍କ ପୂର୍ବାଶ୍ରମର ଜନ୍ମ ଓ ବାସସ୍ଥାନ । ଏହି ଅଞ୍ଚଳର ଅଠରବାଟି ନାମକ ଗ୍ରାମର ଜମିଦାର, ମହାରାଜ ପର୍ଯ୍ୟଟନ କରୁଥିବା ଜାଣିପାରି ଦୀକ୍ଷା ନେବା ଉଦ୍ଦେଶ୍ୟରେ ଆମ ପାଖକୁ ଖବର ପଠାଇଲେ । ଖୁବ୍ ଆଡ଼ମ୍ବର ସହ ଆମକୁ ଜମିଦାରଙ୍କ ବାସଭବନଠାକୁ ସ୍ୱାଗତ କରି ନିଆଗଲା । ତାଙ୍କ ପରିବାରବର୍ଗ ଆମକୁ ପାଇ ଖୁବ୍ ଆନନ୍ଦିତ ହେଲେ । ଉତ୍ସାହର ସହ ସମସ୍ତେ ସାଧୁ ସେବାରେ ଲାଗିପଡ଼ିଲେ । ମୁଁ ସେଥିପାଇଁ ଦାୟିତ୍ୱରେ ରହିଲି । ଘରର ମାଆମାନେ ଭୋଜନ ସାମଗ୍ରୀ ଓ ଶାକସବ୍ଜି ଯୋଗାଇବାରେ ନିଯୁକ୍ତ ରହିଲେ । ଅନେକ ରକମର ଭୋଜ୍ୟ ଦ୍ରବ୍ୟ ପ୍ରସ୍ତୁତ ହେଲା । ସାଧୁସେବା ଶେଷରେ ଆନନ୍ଦର ସହ ସମସ୍ତେ ପ୍ରସାଦ ପାଇଲେ ।

ଦିନେ ଦୁଇଦିନ ପରେ ଜମିଦାରଙ୍କ ବଂଶରେ ଗୋଟିଏ ମୃତକାଶୌଚ ପଡ଼ିଲା । ଦୀକ୍ଷାର ଦିନ ଧାର୍ଯ୍ୟ ହୋଇପାରୁନଥାଏ । ଆମେ ପ୍ରାୟ ପନ୍ଦର ଦିନ ପର୍ଯ୍ୟନ୍ତ ଅପେକ୍ଷା କଲୁ, ଅଶୌଚ ଯୋଗୁଁ ଜମିଦାରଙ୍କର ଦୀକ୍ଷା ପାଇଁ ସ୍ଥାନୀୟ ପଣ୍ଡିତବର୍ଗଙ୍କର ସ୍ୱୀକୃତି ମିଳୁନଥିଲା । କିନ୍ତୁ ଜମିଦାର ଓ ତାଙ୍କର ଆତ୍ମୀୟସ୍ୱଜନ ଦୀକ୍ଷା ନେବା ପାଇଁ ଖୁବ୍ ବ୍ୟଗ୍ର ହୋଇ ଉଠିଥିଲେ; କାରଣ ଆମର ସେଠାରେ ଆଉ ବେଶୀ ଦିନ ଅବସ୍ଥାନ କରିବା ସମ୍ଭବ ହେଉନଥିଲା । ପ୍ରଥମେ ଚିଦାନନ୍ଦ ମହାରାଜ ଅଶୌଚାନ୍ତ ଦୀକ୍ଷାର ପକ୍ଷପାତୀ ଥିଲାଭଳି ଲାଗୁଥିଲା । କିନ୍ତୁ ବ୍ରାହ୍ମଣମାନଙ୍କର ଭ୍ରମ ଭାଙ୍ଗିବା ଉଦ୍ଦେଶ୍ୟରେ ମୁଁ ସେମାନଙ୍କୁ ଉତ୍ସାହିତ କରି ଶାସ୍ତ୍ର ବ୍ୟାଖ୍ୟା ଓ ଅଶୌଚକାଳୀନ ଦୀକ୍ଷାଦାନର ଅବୈଧତା ସମ୍ପର୍କରେ ଆଲୋଚନା କରିବା ପାଇଁ ମହାରାଜାଙ୍କ ପାଖକୁ ପଠାଇ ଦେଲି । ପଣ୍ଡିତମାନେ ଶ୍ଲୋକ ଆବୃତ୍ତିପୂର୍ବକ ଶାସ୍ତ୍ର ପ୍ରମାଣ ବଖାନ କରି

କହିଲେ, ମୃତଜାଶୌଚ ବେଳେ ଦୀକ୍ଷା ଗ୍ରହଣ କରିବା ଶାସ୍ତ୍ରବିରୁଦ୍ଧ ଓ ଲୋକାଚାର ବିରୁଦ୍ଧ ଅଟେ । ସାଧୁ ହୋଇ କଣ ଆପଣ ଅସମୀଚୀନ ବ୍ୟବସ୍ଥାକୁ ସମର୍ଥନ କରିବେ ? ମହାରାଜ ପଣ୍ଡିତମାନଙ୍କ କଥା ଶୁଣି ଗମ୍ଭୀର ସ୍ୱରେ କହିଲେ, "ଦେଖନ୍ତୁ, ଯାହାର ଆଦୌ ଜନ୍ମ ହୋଇନାହିଁ ତା'ର ମୃତଜା-ଶୌଚ ହେବ କପରି ? ଦୀକ୍ଷା ହେଲା ପରେ ଜମିଦାର ଓ ତାଙ୍କ ପରିବାରବର୍ଗ ପ୍ରଥମେ ଜନ୍ମ ଲାଭ କରିବେ ଏବଂ ତାପରେ ଯିନା ତାଙ୍କ ମଧ୍ୟରୁ କେହି ଗତାୟୁ ହେଲେ ଅଶୌଚ ଲାଗିବ, ତା' ପୂର୍ବରୁ ତାଙ୍କର ଅଶୌଚ ସମ୍ଭବ ହେବ କପରି ?" ଏକଥା ଶୁଣି ପଣ୍ଡିତମାନେ ଜଣେ ଆଉ ଜଣକ ମୁହଁକୁ ଚାହିଁଲେ । ତାଙ୍କ ମଧ୍ୟରୁ କେହି କେହି କହିଲେ, ଶାସ୍ତ୍ର ତ ଏପରି ସମସ୍ୟାର ସମାଧାନ କରିନାହିଁ । ଆପଣ ସାଧୁ ପୁରୁଷ, ଆପଣମାନଙ୍କର ବାକ୍ୟହିଁ ଶାସ୍ତ୍ର । ତେଣୁ ଆପଣ ଯାହା ଠିକ୍ ବୁଝୁଛନ୍ତି ସେହିପରି କରନ୍ତୁ । ଆପଣ ଶାସ୍ତ୍ରେତର ବ୍ୟବସ୍ଥା ପ୍ରବର୍ତ୍ତନ କଲେହେଁ ତାହା ଗୃହସ୍ଥ ସମାଜ ଅଲୌକିକ ଭାବରେ ସ୍ୱୀକାର କରିବ ! କାରଣ ଆପଣମାନେ ତ୍ୟାଗୀ, ତପସ୍ୱୀ ଓ ସମାଜର ମଙ୍ଗଳକାମୀ । ଆପଣଙ୍କ ଉପସ୍ଥିତରେ ସାଧାରଣ ଶାସ୍ତ୍ର ବିଧି ଅବାନ୍ତର ମାତ୍ର । ଏହି ଘଟଣାଦ୍ୱାରା ଜମିଦାର ପରିବାରର ବୟୋବୃଦ୍ଧା ମା'ମାନେ ଓ ଅନ୍ୟାନ୍ୟ ବନ୍ଧୁବର୍ଗ ସାଧୁଙ୍କର ମହିମା ଅନୁଭବ କରିପାରିଲେ । ଜମିଦାର ପରିବାରରେ ସର୍ବସମ୍ମତିକ୍ରମେ ଦୀକ୍ଷା ଅନୁଷ୍ଠିତ ହୋଇଗଲା ।

ସେହି ପରିବାରର ଜଣେ ଅଳ୍ପବୟସ୍କା ଯୁବତୀଙ୍କର କୌଣସି ଅଜ୍ଞାତ ରୋଗ ପ୍ରଭାବରୁ ଅସ୍ଥିକଙ୍କାଳସାର ଅବସ୍ଥା ହୋଇଥାଏ । ତାଙ୍କ ପିଲାଦିନର ଇତିବୃତ୍ତିରୁ ରୋଗର କାରଣ ନିରୂପିତ ହେବାରୁ, ଦେଉଟଙ୍କା ବିନମୂଲ୍ୟରେ ତାଙ୍କପାଇଁ ଔଷଧ ପ୍ରସ୍ତୁତ କରିଦେଲେ । ପରବର୍ତ୍ତୀକାଳରେ ସେହି ଔଷଧ ପ୍ରଭାବରୁ ସେ ସମ୍ପୂର୍ଣ୍ଣ ରୋଗମୁକ୍ତା ହୋଇପାରିଥିଲେ ।

ଏହି ଜମିଦାରଙ୍କ ବଟିଗ୍ରାମରେ ଜ୍ୟୋତ୍ସ୍ନା ରାତିରେ ଗୋଟିଏ ଅଶରୀରୀ ଷଣ୍ଢ ଆସି ଉତ୍ପାତ କରୁଥିବା ଅଭିଯୋଗ ମୁଁ ଶୁଣିବାକୁ ପାଇଲି । ଘରର ଲୋକେ କହିଲେ ଯେ, ସେମାନେ ରାତିରେ ଆମ୍ବଗଛର ଡାଳ ଭାଙ୍ଗିଲା

ଭଲ ଶବ୍ଦ ଶୁଣନ୍ତି କିନ୍ତୁ ପ୍ରକୃତରେ କିଛି ଘଟି ନଥାଏ । ମୁଁ ଗୋଟିଏ ଦୁଇଟି ରାତି ଅନୁସନ୍ଧାନ କଲି ଓ ମନ ସମାହିତ କରି ଜାଣିପାରିଲି ଯେ, ଗୋଟିଏ ଅତୃପ୍ତ ମୁସଲମାନ ଆତ୍ମା ସେହି ବଗିଚାରେ ଘୂରି ବୁଲୁଛି । ସେହି ଆତ୍ମାକୁ ଆହ୍ୱାନ କରି ସେଠାରୁ ବିତାଡ଼ିତ କରିଦେବାରୁ ଆଉ ଆଗପରି ଉପଦ୍ରବ ହେଲା ନାହିଁ ଓ ସମସ୍ତେ ଆଶ୍ୱସ୍ତ ହେଲେ । ଅଠରବାଡ଼ିଠାରୁ ଆମେ-ମାନେ ବରିଶାଲ ଆସିଲୁ । ଏଠା ରାମଠାକୁରଙ୍କ ଆଶ୍ରମରେ ଗୋଟିଏ ଧର୍ମ ସଭା ଅନୁଷ୍ଠିତ ହେଲା । ଚିଦାନନ୍ଦ ମହାରାଜ ସେଠାରେ ଭାଷଣ ଦେଲେ । ଏହିପରି ଭାବେ ନାନା ସ୍ଥାନ ଘୂରି ଘୂରି ଶେଷରେ ମାନୁଷମୁଣ୍ଡିଆ ଆଶ୍ରମକୁ ଫେରି ଆସିଲୁ ।

## ପାଲଙ୍କ ଘରେ ଯୋଗସମାଧି

ଏହି ଆଶ୍ରମ ବାସ କାଳରେ ଖାଦ୍ୟ ସଂଯମ କରି ମୁଁ ଆଗଭଳି ସମାଧି ଅଭ୍ୟାସ କଲି । କିନ୍ତୁ ସମାଧିସ୍ଥ ହୋଇପାରିଲି ନାହିଁ । ମାଣିକପଡ଼ାର ପରେ ସରଡ଼ହର ଶ୍ରୀ ସତୀଶ ପାଲଙ୍କ ଘରକୁ ଆସିଲି । ମୋ ପାଇଁ ଗୋଟିଏ ଅଲଗା ବସାଘର ଦିଆଗଲା । ପାଲଙ୍କ ପରିବାରବର୍ଗ ମୋର ସେବା ଶୁଶ୍ରୂଷା କରିବାକୁ ପ୍ରତିଶ୍ରୁତି ଦେବାରୁ ମୁଁ ସେଠାରେ ଉପବାସ ବ୍ରତ ଆରମ୍ଭ କଲି । ଆଗରୁ ସେମାନଙ୍କୁ ସାବଧାନ କରାଇ କହିଲି ଯେ, ସମାଧି ଅବସ୍ଥାରେ ମୋ ଦେହ ମୃତବତ୍ ହୋଇ ପଡ଼ିଲେ ଭ୍ରମବଶତଃ ଦେହାନ୍ତ ହୋଇଯାଇଛି ଭାବି ଯେପରି ମୋତେ ଫୋପାଡ଼ି ଦିଆନଯାଏ ଓ ମୋର ସମାଧିସ୍ଥ ଦେହକୁ ରକ୍ଷା କରାଯାଏ ! ଉପବାସର ପଞ୍ଚମ ରାତିରେ ମୋର ପ୍ରାଣବାୟୁ ଊର୍ଦ୍ଧ୍ୱକୁ ଉଠିଗଲା । କିନ୍ତୁ ପ୍ରାୟ ମଧ୍ୟରାତି ପର୍ଯ୍ୟନ୍ତ ଅଜ୍ଞାଚକ୍ର ପାର ହୋଇପାରିଲା ନାହିଁ ବା ତଳକୁ ଫେରିଲା ନାହିଁ । ଅବଶେଷରେ ଶ୍ରୀଗୁରୁ କୃପାକରି ପଥ ପ୍ରଦର୍ଶନ କରିଦେବାରୁ ଶାନ୍ତିଲାଭ ହେଲା ।

ସମାଧି ବ୍ୟୁତ୍ଥାନର ଦିନେ ଦୁଇଦିନ ପରେ ସତୀଶ ପାଲଙ୍କ କନ୍ୟା ମୋ ସଙ୍ଗେ ଆଳାପ କରୁ କରୁ ଅଜ୍ଞାନ ହୋଇପଡ଼ିଲା । କାରଣ ତା'ର

ହଠାତ୍ ଗ୍ରନ୍ଥିଚ୍ଛେଦ ହୋଇ ଯାଇଥିଲା । ବହୁ ଆଶ୍ୱାସ କରି ମୁଁ ତାଙ୍କୁ ଫେରା-ଇଲି କିନ୍ତୁ ଚେତନା ଲାଭ ହେବା ପରେ ସେ ଖାଲି ହସିବାକୁ ଲାଗିଲା । ପୁଣି ନାନା ଉପାୟ କରି ତାଙ୍କୁ ସେହି ଅପ୍ରାକୃତ ଅବସ୍ଥାରୁ ଫେରାଇ ଆଣିଲି । ସେ କିନ୍ତୁ ଅଭିଯୋଗ କଲା ଯେ ଏକ ବିଚିତ୍ର ଆନନ୍ଦମୟ ପରିବେଶରୁ ତାଙ୍କୁ ଫେରାଇ ଆଣି ମୁଁ ଠିକ୍ କରିନାହିଁ । ମାଣିକପଡ଼ାରେ ଅବସ୍ଥାନ କଲାବେଳେ ପାଲଙ୍କ ପୋଖରୀରେ ପଶି ଶୂନ୍ୟ କୁମ୍ଭକ ସାହାଯ୍ୟରେ ଅନେକ ସମୟ ଧରି ବଦ୍ଧ ପଦ୍ମା-ସନ ପକାଇ ପାଣିତଳେ ବସି ରହୁଥିଲି । ବହୁଲୋକ ଆସି ଦେଖିବାକୁ ରୁଣ୍ଡ ହୁଅନ୍ତି । ଏପରି ଭାବେ ବେଶ୍ କେତେଦିନ ମୋ ଘରପଟେ ଭିଡ଼ ଜମି ରହିଲା । ଦିନରାତି ନାନା ପ୍ରକାର ଧର୍ମାଲୋଚନା ଓ ଆଳାପ ଚାଲିଥାଏ । ଶେଷରେ ପାଲଙ୍କର ଗୋଟିଏ ଗାଈ ଦାନ ରୂପେ ଗ୍ରହଣ କରି ମାଲୁଷମୁଣ୍ଡିଆ ଆଶ୍ରମକୁ ଫେରିଲି । ଆଶ୍ରମିକ ପରିଚାଳନା ସନ୍ତୋଷଜନକ ହେଉ ନଥିବାରୁ ପୁଣି ଗୁହା-ଠାକୁ ଫେରିଗଲି ।

## ମାଈଁଙ୍କ ଜୀବନାବସାନ

ମାଈଁଙ୍କ ଜୀବନାବସାନର ସଙ୍କେତ ବହନ କରି ୧୩୫୬ ସାଲ (୧୯୪୯ ମସିହା) ଉପସ୍ଥିତ ହେଲା । ମାଈଁ କ୍ରମାଗତ ଭାବେ ଜ୍ୱର ରୋଗରେ ଆକ୍ରାନ୍ତ ହେଉଥାଆନ୍ତି । ଏତେବେଳକୁ ତାଙ୍କ ବୟସ ଆନୁମାନିକ ୪୫ ହେବ । ତିନି ପୁଅଙ୍କ ମଧ୍ୟରୁ ବଡ଼ ଦୁହିଙ୍କର ବିବାହ ସରିଥାଏ । ଆଗରୁ ତିନୋଟି କନ୍ୟାଙ୍କର ମୃତ୍ୟୁ ହୋଇଯାଇଥାଏ । ଖବର ପାଇ ମୁଁ ଚିକିତ୍ସାର ବନ୍ଦୋବସ୍ତ କଲି । ସେ ମୋତେ କହିଲେ; "ଏଥରକ ଯିବାକୁ ଦିଅ । ତୁମେ ନ ଛାଡ଼ିଲେ ମୁଁ ଯାଇ ପାରୁନି" "କ୍ଷଣକ ପାଇଁ ମୋ ମନଟା ଦବିଗଲା । ପିଲାଙ୍କ ସଙ୍ଗେ ପରାମର୍ଶ କରି ସ୍ଥିର କଲି ଯେ ଆଉ ବେଶୀଦିନ ତାଙ୍କୁ ବଞ୍ଚାଇ ରଖି କଷ୍ଟ ଦେବା ଅପେକ୍ଷା ଛାଡ଼ି ଦେବାହିଁ ଉଚିତ ହେବ । ବହୁଦିନରୁ ତାଙ୍କ ଅନ୍ତରାତ୍ମା ସ୍ଥୂଳଲୀଳା ତ୍ୟାଗକରି ସ୍ୱରୂପରେ ସମାହିତ ହେବାକୁ ଅପେକ୍ଷା କରି ରହିଛି । ମୋର ସାଧନା ପଥର ଦିଗ୍‌ଦର୍ଶିକା ଭାବେ ସେ ବିଗତ ପ୍ରାୟ ବାରବର୍ଷ ଧରି ବଞ୍ଚି ରହିଅଛନ୍ତି । ଶେଷ ପର୍ଯ୍ୟାୟରେ ତାଙ୍କ ଅଭୂତଲୀଳା ପୟୋଧି ବସ୍ତ୍ରରଙ୍ଗ

ହୋଇଯିବାରୁ ସେ ନିଶ୍ଚଳ ଓ ନିରୁଦ୍‌ବିଗ୍ନ ଭାବେ ଅବସ୍ଥାନ କରୁଛନ୍ତି । ପରେ ପରେ ତାଙ୍କୁ ଆମାଶୟ ଆକ୍ରମଣ କଲା । ଶ୍ରାବଣ ମାସ ହୋଇଥାଏ । ମାଈଁ କହିଲେ, "ମୁଁ ଗ୍ଲଲଗଲେ ତୁମ୍ଭେମାନେ ବେଶ୍ ସ୍ୱାନନ୍ଥା ହେବ । ଆତ୍ମୀୟମାନେ ତ ଶତ୍ରୁ । ଆଜିଠାରୁ ଚନ୍ଦନ କାଠ କିଣାଇ ରଖ !" କାଠ ଯୋଗାଡ଼ କରି ରଖାଗଲା । ତାପରେ ସେ କହିଲେ, "ମୁଁ ଆଜି ଯିବ ।" ଅପରାହ୍ଣରେ ମୃତ୍ୟୁର ପୂର୍ବାଭାସ ଦେଖାଗଲା । ମୁଁ ଚିନ୍ତାକଲି ଯେ, ରାତିରେ ଦାହ କରିବାକୁ ଖୁବ୍ ଅସୁବିଧା ହେବ । ଦଶଟଙ୍କା ପର୍ଯ୍ୟନ୍ତ ବିନିମୟରେ କରସିନ ଦୁଇ ବୋତଲ ମିଳିଲା ନାହିଁ । "ଆଜି ତୁମେ ନ ଯାଇ ରହି ପାରିଲେ ଭଲ ହୁଅନ୍ତା"—ମୁଁ ଜଣାଇଲି । "ଚେଷ୍ଟାକରି ଦେଖାଯାଉ" ସେ ଉତ୍ତର ଦେଲେ । ତାପରେ ମୋତେ ଓ ପିଲଙ୍କୁ ଲକ୍ଷ୍ୟକରି ନାନା ପ୍ରକାର ଉପଦେଶ ଦେଲେ । କହିଲେ "ଦେଖ, ଜୀବନର ଲକ୍ଷ୍ୟଚ୍ୟୁତ ହେବନାହିଁ । ଯେତେଦୂର ସମ୍ଭବ ସତ୍ୟପଥକୁ ଆଶ୍ରୟ କରି ଚଳିବ ।" ରାତି ବାରଟା ବେଳକୁ ତାଙ୍କ କଥା ବନ୍ଦହୋଇଗଲା । ମୁଁ ନାଡ଼ି ଚିପି ଧରିଥାଏ । ବାହାରେ ଅନେକ ଲୋକଙ୍କ କଥାର ଶବ୍ଦ ଶୁଣାଗଲା । ପିଲଙ୍କୁ ପଠାଇ ବୁଝିଲି କେହି ନାହାନ୍ତି । ପ୍ରାୟ ଅଧ ଘଣ୍ଟାକ ପରେ ତାଙ୍କର ଚୈତନ୍ୟ ଫେରିଆସିଲା । କ୍ଷୀଣସ୍ୱରରେ ସେ କହିଲେ, "ଆଜି ନୁହେଁ, କାଲିକି ଯିବି ।" ଆଉ ବେଶୀ ଡେରି ନାହିଁ । ସକାଳେ ରନ୍ଧା ବଢ଼ା କରି ମୋତେ ଖାଇବାକୁ ଦିଅ !" ପରଦିନ ସକାଳେ ଧାନ କିଣିନେବାକୁ ଲୋକ ଆସି ପହଞ୍ଚିଲେ । ମାଈଁ କହିଲେ, "ଧାନ ବିକି କର, ଅସ୍ଥି ବିସର୍ଜନ କରିବାପାଇଁ ଟଙ୍କା ଦରକାର ପଡ଼ିବ, ସାଇତି ରଖ ।" ତିରିଶି ଟଙ୍କା ମୂଲ୍ୟର ଧାନ ବିକି କରାଗଲା । ବେଳା ଦଶଟା ଏଗାରଟା ସୁଦ୍ଧା ଖିଆପିଆ ସରିଲା । ଏଥର ସେ କହିଲେ ପଡ଼ିଶା ତାମୁଲୀ ବୋହୂକୁ ଡ଼ାକିଆଣ । ପିଲାଏ ଖବର ଦେବାରୁ ବୋହୂଟି ଆସି ମାଈଁଙ୍କୁ ପଚାରିଲା, "ମୋତେ ଚିହ୍ନି ପାରୁଛ ! " ଖାଲି ତେତେ ନୁହେଁ, ତୋର ସାତ ପୁରୁଷଙ୍କୁ ସାକ୍ଷାତ୍ ଦେଖୁଛି ।" ସେ ଉତ୍ତର ଦେଲେ । ମୁଁ ତାଙ୍କର ନାଡ଼ି ଚିପି ଧରିଥାଏ । ସେ ଗୀତର ସ୍ୱର ମୂର୍ଚ୍ଛନା ଆରମ୍ଭ କରି ଦେଲେ । ଖୁବ୍ ଜୋରରେ ଗାନ ଚାଲିଲା । ତାଙ୍କୁ ଛୁଇଁବାକୁ ମୁଁ ପିଲଙ୍କୁ ଏବଂ ଅନ୍ୟମାନଙ୍କୁ ବାରଣ କରିଥାଏ, କିନ୍ତୁ, ହଠାତ୍ ସବା ସାନ ପୁଅଟି ଆସି ତାଙ୍କ ବେକକୁ ଜାବୁଡ଼ି ଧରି ମା' ମା' ବୋଲି ଡ଼ାକ ଛାଡ଼ିଲା । ଯୋଗସୂତ୍ର କଟିଯିବାରୁ

ପ୍ରାୟ ଦଶ ମିନଟ୍ ମଧ୍ୟରେ ସେ ଇହଧାମ ତ୍ୟାଗ କଲେ । କିଛିଦିନ ଆଗରୁ ସେ କହୁଥିଲେ, " ଜମି ବନ୍ଧକି କରି ମୋର ଶୁଦ୍ଧକ୍ରିୟା କରିବନାହିଁ । ମୋର ଜଣେ ବନ୍ଧୁ ଆସି ଟଙ୍କା ଯୋଗାଇ ଦେବ ।" ଆମେ ଚିନ୍ତାରେ ପଡ଼ିଯାଇଥିଲୁ । ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ ଦିଆସରିଥାଏ । ହଠାତ୍ ପୂର୍ବଦିନ ଆମର ସେହି ଶୁଭ-କାଂକ୍ଷିଣୀ ଚୂଡ଼ାକୁଟୁଣୀ ସ୍ତ୍ରୀ ଲୋକଟି (ଆଗରୁ ଏହାଙ୍କ ପ୍ରସଙ୍ଗ ଉଲ୍ଲେଖ କରା-ଯାଇଛି) ସଙ୍ଗେ ଦେଖା ହୋଇଗଲା । ସ୍ୱତଃ ପ୍ରବୃତ୍ତ ହୋଇ ଏକ ହଜାର ଟଙ୍କା ଧାର ସ୍ୱରୂପ ଦେବାକୁ ସେ ରାଜି ହୋଇଗଲା । ଜମି ବନ୍ଧକ ଦେବା ରହିଲା ନାହିଁ । ତା ଠାରୁ ପାଇବା ଅର୍ଥ ବ୍ୟୟକରି ବ୍ରାହ୍ମଣ ଭୋଜନ ଓ ଆତ୍ମୀୟସ୍ୱଜନଙ୍କ ଭୋଜନ ଇତ୍ୟାଦି ସୁଷ୍ଠୁଭାବେ ନିର୍ବାହିତ ହେଲା । କରଜ କରା ଯାଇଥିବା ଟଙ୍କା ପ୍ରାୟ ଦୁଇବର୍ଷ ଧରି କିସ୍ତିରେ ପରିଶୋଧ କରାଯାଇଥିଲା ।



# ତ୍ରୟୋଦଶ ଅଧ୍ୟାୟ

## ବଦ୍ରୀନାଥ—ଜଗନ୍ନାଥ

### ହରିଦ୍ୱାର ପଥେ ଅଯୋଧ୍ୟା ଦର୍ଶନ

୧୩୫୭ ସାଲ (୧୯୫୦ ମସିହା ) ଚୈତ୍ରମାସ ବେଳକୁ ହରିଦ୍ୱାରରେ କୁମ୍ଭମେଳା ବସିଥାଏ । ପୁରୁଲିଆସ୍ଥାନବାସୀ ପ୍ରମୁଖ ଗୁରୁଭ୍ରାତା ଶ୍ରୀ ବ୍ରଜ ଗୋପାଳ ମୁଖାର୍ଜୀ ମୋ ପାଇଁ ପାଥେୟ ଯୋଗାଇଦେବାରୁ କୁମ୍ଭମେଳା ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କଲି । ପ୍ରଥମେ ଡୁନ୍ ଏକ୍ସପ୍ରେସ ଯୋଗେ ସକାଳ ଆଠଟା ବେଳେ ଅଯୋଧ୍ୟା ଷ୍ଟେସନରେ ଯାଇ ପହଞ୍ଚିଲି । ରାମନବମୀ ଅବସରରେ ବହୁ ଯାତ୍ରୀଙ୍କର ସମାଗମ ହୋଇଥାଏ । ଅଯୋଧ୍ୟା ଦର୍ଶନର ଅଭିଳାଷ ହେବାରୁ ମୁଁ ମଧ୍ୟ ଓହ୍ଲାଇପଡ଼ିଲି । ସରଜୁ ନଦୀ ବାଲିରେ ଅନେକ ଲୋକ,–ସାଧୁ ଓ ଗୃହସ୍ଥ,–ପଡ଼ି ରହିଥାନ୍ତି । ଚଟ୍ଟାଣଶା କେହି ନାହିଁ । ଜଣେ ମୋର ଭଳି ପାଗଳ ସାଧୁଙ୍କ ସଙ୍ଗେ ସାକ୍ଷାତ୍ ହେଲା । ସାଧୁଟି କବିରପନ୍ଥୀ, ଖୁବ ଭଜନ ଗାନ କରୁଥାନ୍ତି । ମୁଁ ତାଙ୍କୁ ପଚାରିଲି, “ଆପଣ କେଉଁଠି ଖାଇବାକୁ ପାଇଲେ ?” ସେ କହିଲେ “ମୁଁ ଖାଏନା, ତେଣୁ ମୁଁ କିଛି ଜାଣେ ନାହିଁ ।” “ମୋର କିନ୍ତୁ କିଛି ଖାଇବା ଦରକାର ,” ମୁଁ କହିଲି, “ତେବେ ମୋ ସାଙ୍ଗରେ ଆସ ” ଉତ୍ତର ମିଳିଲା । ଆମେ ଦୁହେଁ ଯାଇ ଗୋଟିଏ ମନ୍ଦିର ପାଖରେ ପହଞ୍ଚିଲୁ —ସେଠା ପୂଜାରୀ ମୋତେ ଗୁଡ଼ ଓ ପାଣି ଦେଲେ । ଏହା ଗୋଟିଏ ବେଳା ଖାଇବା ପାଇଁ ନିମନ୍ତ୍ରଣ । ମୋର ସଙ୍ଗୀ ସାଧୁଟି ଅନବରତ ଗୀତ ଗାଇବାରେ ଲାଗିଲେ । ମନ୍ଦିରରେ ବନ୍ଦୀ ହୋଇ ଭୋଗ ଶେଷ ହେବାଯାଏଁ ଅପେକ୍ଷା କଲୁ । ଅପରାହ୍ଣ ଦୁଇଟା ବେଳକୁ ଭୋଜନ ପାଇଁ ଡାକରା ପଡ଼ିଲା । ମୁଁ ଖାଇଲି, କିନ୍ତୁ ସେ

ସାଧୁ ଖାଇବାକୁ ନିଷେଧ କଲେ । ଭୋଜନ ପରେ ମୋତେ ନେଇ ସେ ପୁଣି ଗାଡ଼ିରେ ବସାଇଦେଲେ ।

## ହରିଦ୍ୱାର କୁମ୍ଭମେଳା

ହରିଦ୍ୱାରଠାରେ ପହଞ୍ଚି ପ୍ରଥମେ ଭୋଳାଗିରିଙ୍କ ଆଶ୍ରମକୁ ଗଲି । ସେଠାରେ ଖବର ନେଇ ଜାଣିଲି ଯେ ଗଙ୍ଗାର ଅପର ପାର୍ଶ୍ୱରେ ଆସାମ ବଙ୍ଗୀୟ ସାରସ୍ୱତ ମଠର ଶିବିର ଖୋଲାଯାଇଛି । ସେଠାରେ ଯାଇ ରହିଲି । କୁମ୍ଭମେଳା ବୁଲି ଦେଖି ଦେଖି ସବୁଠୁ ବଡ଼ ସାଧୁ ଖୋଜି ଦେଖିବାକୁ ଇଚ୍ଛା ଜାଗିଲା । ମୋ ଆଖିକୁ କେହି ଜଣେ ହେଲେ,'ପରମହଂସ'ସ୍ତରୀୟ, ସାଧୁ ବୋଲି ମନେହେଉନଥାନ୍ତି । ଜଣେ ନେପାଳୀ ନାଗା ସାଧୁଙ୍କ ସଙ୍ଗେ ସାକ୍ଷାତ ହେଲା । ତାଙ୍କ ସଙ୍ଗେ ଦଶ ପନ୍ଦର ଦିନ ଘୂରି ବୁଲିଲି । ହରିଦ୍ୱାରଠାରୁ ଦକ୍ଷିଣରେ ଦୁଇ ମାଇଲ ଦୂରସ୍ଥ କନଖୋଲ * ଓ ଅନ୍ୟାନ୍ୟ ସ୍ଥାନ ପରିଦର୍ଶନ କଲି । କେତେ ରକମ ସାଧୁଙ୍କୁ ଯେ ଭେଟିଲି ତାର କଳନା ନାହିଁ । ହାତୀ ଉପରେ ଆରୁଢ଼ ଜଣେ ସାଧୁଙ୍କୁ ଦେଖି ତାଙ୍କ ପଛେ ପଛେ ଗଲି, କିନ୍ତୁ ତାଙ୍କ ସଙ୍ଗେ ସାକ୍ଷାତ ପରିଚୟ ହୋଇପାରିଲା ନାହିଁ । ଶେଷରେ ମୋର ସଙ୍ଗୀ ନାଗାସାଧୁ ମୋତେ ତାଙ୍କ ଗୁରୁଙ୍କ ପାଖରେ ନେଇ ପହଞ୍ଚାଇଲେ । ଧୁନି ଘେରିପଟେ ଅନେକ ନାଗା ସାଧୁ ବସିଥାନ୍ତି । 'ଓଁ ନମୋ ନାରାୟଣାୟ' କହି ମୁଁ ତାଙ୍କ ଗୁରୁଙ୍କୁ ଅଭିବାଦନ ଜଣାଇଲି । ସେ ଖୁବ ଶକ୍ତିମାନ ସାଧୁ ବୋଲି ମନେହେଲା । ସେ ମୋତେ ହିନ୍ଦୀ ଭାଷାରେ କହିଲେ, "ଆରେ ପରମହଂସ ନିଗମାନନ୍ଦଜୀକା ଚେଲା !" ମୁଁ ସମ୍ମତି ଜଣାଇବାରୁ ସେ ପୁଣି କହିଲେ, "ପରମହଂସକା ଚେଲା ପରମହଂସହୀ ହୋଗା !" 'ମୁଁ ତ ପରମହଂସ ନୁହେଁ' ମୁଁ ବିନୀତ ଭାବେ ଜଣାଇଲି ।

---

* ପୁରାଣ ବର୍ଣ୍ଣିତ ଦକ୍ଷଯଜ୍ଞ ପାଇଁ ପ୍ରସିଦ୍ଧ । ଏଠାରେ ଯଜ୍ଞସ୍ଥଳ, ସତୀ ଓ ଦକ୍ଷପ୍ରଜାପତିଙ୍କ ମନ୍ଦିର ଅଛି ।

"ଗୋଖର ସାପକା ବଚ୍ଚା ଗୋଖର ସାପହି ହୋଗା, දୁସରା କୁଛ କ୍ୟୁଁ ହୋଗା ? ଯାଓ, ସଚ୍ଚିକୋ ସ୍ୱରୂପସେ ପରମହଂସ ଦେଖତେ ଦେଖତେ ଖୁଦ୍ ପରମହଂସ ବନୋ । "ସେ ଆଶୀର୍ବାଦ କଲେ ।

ତାପରେ ମୋତେ ସୁଜି ଖାଇବାକୁ ଦିଆଗଲା । ମୁଁ ସେଠାରୁ ଆସି ସେଇଁ ଆଡ଼କୁ ଚାହିଁଲି ସମସ୍ତେ ମୋ ଆଖିରେ ପରମହଂସ ଅର୍ଥାତ୍ ନର୍ବିକାର ନିରାଲମ୍ବ ସାଧୁଭଳି ଦେଖାଗଲେ । ପୁଣି ଥରେ ସେହି ନାଗା ଗୁରୁଙ୍କ ସଙ୍ଗେ ସାକ୍ଷାତ୍ ହେବାରୁ ମୋର ଅନୁଭୂତି ଜଣାଇଲି । ସେ କହିଲେ, "ସାବାସ୍ ! ଇତସୀରହି ସାରା ସଂସାରକୋ ପରମହଂସ ରୂପ ଦେଖନା ଚାହିୟେ ; ତଭିତୋ ପରମହଂସ ବନେଗା ।

ତାପରେ ମୁଁ ଓ ମୋର ସଙ୍ଗୀ ସାଧୁ ଦେଢ଼ଶ ବର୍ଷ ବୟସ୍କ ହଂସରାଜ ସାଧଙ୍କୁ ଦେଖିବାକୁ ଗଲୁ । ତାଙ୍କ ଗୁଡ଼ରୁ ଅଣ୍ଟା ଯାଏ ନଟଖାଳ ହୋଇ ଚମତ୍କାର ଦିଶୁଥାଏ । ଆଷ୍ଟର୍ଯ୍ୟର କଥା ସେ ମଧ୍ୟ ମୋତେ ନିଗମାନନ୍ଦଙ୍କ ଶିଷ୍ୟ ବୋଲି ଦେଖିବା ସଙ୍ଗେ ସଙ୍ଗେ କହିଲେ । ପରମହଂସ କେଉଁ ସ୍ତରରେ ରହନ୍ତି ସେକଥା ଜାଣିବା ପାଇଁ ମୁଁ ତାଙ୍କୁ ନାନା ରକମ ପ୍ରଶ୍ନ କଲି । ରାଗିଯାଇ ସେ କହିଲେ " କ୍ୟା ବକ୍ ବକ୍ କରତା ହେ" । ତାଙ୍କର ଏପରି ଭାବ ଦେଖି ମୋର ମନେ ହେଲା ତାଙ୍କୁ ନିମ୍ନ ସ୍ତରର ପାର୍ଥିବ ଘଟଣା ଆଦୌ ସ୍ପର୍ଶ କରୁ ନାହିଁ । ପ୍ରକୃତ ପକ୍ଷେ ସେ ଖୁବ୍ ଉଚ୍ଚ ସ୍ତରରେ ଅବସ୍ଥାନ କରୁଛନ୍ତି । ଏପରି ଭାବ ଯାଗିବାରୁ ମୁଁ ହଠାତ୍ ହସିପକାଇଲି । ମୋର ମନୋଗତ ଭାବର ଆଭାସ ପାଇ ସେ ମଧ୍ୟ ହସିଦେଲେ । ଅତଃପର 'ଓଁ ନମୋ ନାରାୟଣାୟ' କହି ଅଭିବାଦନ କରି ମୁଁ ତାଙ୍କଠାରୁ ବିଦାୟ ନେଲି ।

କୁମ୍ଭମେଳାର ପରିବେଶ ମଧ୍ୟରେ ସନ୍ୟାସ ନେବାପାଇଁ ମୋର ଅଭିଳାଷ ଜାଗିଥିଲା । ଭୋଳାଗିରିଙ୍କ ଆଶ୍ରମରୁ ସନ୍ୟାସ ନେବାକୁ ସ୍ଥିରକରି ଟଙ୍କା ଦାଖଲ କରିଦେଲି । ଏ ସମ୍ବାଦ ପାଇ ଚିଦାନନ୍ଦ ମହାରାଜ ମୋତେ ନିଷେଧ କରି କହିଲେ, ସରସ୍ୱତୀ ସମ୍ପ୍ରଦାୟରେ ବ୍ରହ୍ମଚର୍ଯ୍ୟ ଲାଭକରି ଗିରିସମ୍ପ୍ରଦାୟରେ ସନ୍ୟାସ ନେବା ଅସଙ୍ଗତ ହେବ । ତେଣୁ ମୁଁ ସନ୍ୟାସ ନେବାରୁ ନିବୃତ୍ତ ହେଲି । ପରେ

ସ୍ନାନ ଯୋଗ ଆସି ଉପସ୍ଥିତ ହେବାରୁ ଅନ୍ୟ ସାଧୁ ସନ୍ୟାସୀଙ୍କ ସଙ୍ଗେ ଗଙ୍ଗାରେ ସ୍ନାନ ସମାପନ କଲି ।

## ବଦ୍ରୀନାରାୟଣ ଯାତ୍ରା

କୁମ୍ଭମେଳା ଶେଷରେ ବଦ୍ରୀନାରାୟଣ ଧାମ ଦର୍ଶନ କରିବା ବାସନା ଜାଗ୍ରତ ହେଲା । ଗୁରୁ ଭାଇମାନଙ୍କ ଆଗରେ ମୁଁ ଏହି ପ୍ରସ୍ତାବ ରଖିବାରୁ ମୋ ପାଇଁ ପ୍ରାୟ ଅଢ଼େଇ ଶହ ଟଙ୍କା ଗୁନ୍ଦା ମିଳିଲା । ରାସ୍ତା ଘାଟର ଖବର ନେଇ ଆବଶ୍ୟକୀୟ ଖାଦ୍ୟ ସାମଗ୍ରୀ, କମ୍ବଳ ଓ ଲୁଗାପଟା ବାନ୍ଧି ରଖିଲି । ମୋର ସଙ୍ଗୀ ହେଲେ ଆଉ ତିନିଜଣ ସାଧୁ; ଜଣେ ବଙ୍ଗାଳୀ ଓ ଅନ୍ୟ ଦୁଇଜଣ ଗୋରକ୍ଷପନ୍ଥୀ । ପିସ୍ତା ବାଦାମ ବାଦଦେଇ କିଛି ଚିନ୍ନୁକ ସାଙ୍ଗରେ ନେବାକୁ ଜଣେ ସାଧୁ ଉପଦେଶ ଦେଲେ । କାରଣ ସେ ରାସ୍ତାରେ ପିସ୍ତାବାଦାମ ଅପେକ୍ଷା ଚିନ୍ନୁକ ଲୁଆଡ଼େ ଅଧିକ ପଥ୍ୟ । ପିସ୍ତାବାଦାମ ରାସ୍ତାରେ ମିଳେ, କିନ୍ତୁ ଚିନ୍ନୁକ ମିଳେନା । ହରଦ୍ୱାରଠାରୁ ପ୍ରାୟ କୋଡ଼ିଏ କିଲୋମିଟର ଦୂରରେ ଋଷିକେଶ ଏବଂ ଋଷିକେଶଠାରୁ ତେସ୍ତରି କି.ମି ଦୂରରେ ଦେବପ୍ରୟାଗ । ବସ୍ ଯୋଗେ ଯାତ୍ରା ଆରମ୍ଭ କଲୁ । ମୁଣ୍ଡ ଘୁରି ବାନ୍ତି ହେବାକୁ ଲାଗିଲା । ମୁଁ ମୋର ସଙ୍ଗୀମାନଙ୍କୁ କହିଲି ଯେ "ଦେବପ୍ରୟାଗଠାରୁ ମୁଁ ଚାଲିକରି ଯିବି, କେହି ମୋ ସଙ୍ଗେ ଯାଅ ବା ନ ଯାଅ ।" ଦେବ ପ୍ରୟାଗଠାରୁ ଦୁଇଟି ରାସ୍ତା, କୋଟିଏ ଗଙ୍ଗୋତ୍ରୀ ଆଡ଼କୁ ଯାଇଛି ଓ ଅନ୍ୟଟି ଯାଇଛି କେଦାର ଓ ବଦ୍ରୀ ଧାମ ଦିଗରେ । ରାସ୍ତାରେ ପ୍ରାୟ ଦୂରରୁ ପନ୍ଦର କି.ମି ବ୍ୟବଧାନରେ ଚଟି ବା ଯାତ୍ରୀ ବିଶ୍ରାମ ସ୍ଥାନ ରହିଛି । ଏହି ଚଟିମାନଙ୍କରେ ଗ୍ରେଟ ଗ୍ରେଟ ଦୋକାନ ଘର । ବ୍ୟବହାର ପାଇଁ ରାନ୍ଧିବା ବାସନ ଓ ଜଳପାତ୍ର ଇତ୍ୟାଦି ମିଳେ । ମୁଖ୍ୟ ଚଟିମାନଙ୍କରେ କାଳୀକମ୍ବଳୀ ବାବାଙ୍କ ଧର୍ମଶାଳା ଅଛି ।

ଦେବପ୍ରୟାଗ, ଅଳକନନ୍ଦା ଓ ଭାଗିରଥି ଗଙ୍ଗା ନଦୀ ଦ୍ୱୟର ସଙ୍ଗମସ୍ଥଳ, ଉଭୟ ଦିଗରୁ ନଦୀଦ୍ୱୟ ପ୍ରଚଣ୍ଡ ବେଗରେ ମିଳିତ ହୋଇ ପରସ୍ପରକୁ ଆଘାତ କରନ୍ତି । ଦେବପ୍ରୟାଗଠାରୁ ଆମ୍ଭର ପଦଯାତ୍ରା ଆରମ୍ଭ ହେଲା । କାନ୍ଧରେ

ବୁଢୁଢ଼ୁ ଧରି ପାହାଡ଼ୀ ରାସ୍ତାରେ ଚାଲିବା ଏଇ ପ୍ରଥମ ଅନୁଭୂତି । ଦିନସାରା ଚାଲି ଚାଲି ଯାଉ ଓ ସନ୍ଧ୍ୟାବେଳେ ଚଟିରେ ବିଶ୍ରାମ କରୁ । ଖୁବ୍ କଷ୍ଟ ହେଉ-ଥାଏ । ସଙ୍ଗୀ ମାନେ ମୋର ହାତପାଦ ଚିପିଦେଉଥାଆନ୍ତି । ପୂର୍ବାପରିମେ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଭିକ୍ଷା କରି ଖାଉ । ଆଗକୁ ବଢ଼ିବାକୁ ଆଉ ମୋର ସାହାସ ହେଉ ନାହିଁ । ସହଯାତ୍ରୀମାନେ କିନ୍ତୁ ଉତ୍ସାହ ଦେଉଥାଆନ୍ତି । ଭାର ଲାଘବ କରିବା ପାଇଁ ମୋ ପାଖରେ ଥିବା ଖାଦ୍ୟ ପଦାର୍ଥ ବିତରଣ କରିଦେଲି । ଭିକ୍ଷାରେ ଛେଲି ଭଜା, ସତ୍ତୁ, ଗୁଡ଼, ଅଟା ଇତ୍ୟାଦି ମିଳେ । ଚାରିଜଣଙ୍କ ପାଇଁ ଖାଦ୍ୟ ନିଅଣ୍ଟ ହେଲେ ମୋ ଭାଗକୁ ବେଶୀ ଦେଇ ସେମାନେ କମ୍ କରି ଖାଆନ୍ତି । ବେଳେବେଳେ ଚଟିରେ ଦୁଧ କିଣି ପିଉ । ଛେଲିଭଜା ସଙ୍ଗେ ଚାହା ଖାଇ ଖାଇ ଆଗେଇ ଚାଲୁ ।

ଦେବପ୍ରୟାଗଠାରୁ ପ୍ରାୟ ବାଷଠି କି.ମି ପଥ ଅତିକ୍ରମ କଲାପରେ ରୁଦ୍ର-ପ୍ରୟାଗ ପଡ଼ିଲା । ରୁଦ୍ରପ୍ରୟାଗ ଅଳକନନ୍ଦା ଓ ମନ୍ଦାକିନୀ ଗଙ୍ଗାନଦୀ ଦ୍ୱୟର ସଙ୍ଗମ ସ୍ଥଳୀ । ଉଭୟ ନଦୀର ସଂଘର୍ଷ ଭୀଷଣ ତରଙ୍ଗମାଳା ଓ ଗର୍ଜ୍ଜନ ଶବ୍ଦ ସୃଷ୍ଟି କରେ । ଦେବପ୍ରୟାଗଠାରୁ ରୁଦ୍ରପ୍ରୟାଗର ଦୃଶ୍ୟ ଅଧିକ ମନୋରମ । ଏଠା ଚଟିରେ ଦେଖିଲି ଯେ, ଜଣେ ବୃଦ୍ଧି ସ୍ବାମୀ ଚାହା ଜ୍ୱର ଭୋଗୁଛନ୍ତି । ତାଙ୍କର ଜଣେ ସଙ୍ଗୀ, ଦୃଷ୍ଟିଶକ୍ତି ଖୁବ୍ କ୍ଷୀଣ । ତାଙ୍କ ସଙ୍ଗୀମାନେ ତାଙ୍କୁ ତ୍ୟାଗକରି ଚାଲିଯାଉଥିବା କଥା ବିକଳ ହୋଇ ସେ କହିଲେ । ମୋ ପାଖରେ ବାଇ-ଓକେମିକ୍ ଔଷଧ ଥିଲା । ମହୁ ସଙ୍ଗେ ମାଖି ଆଖିରେ ଲଗାଇବାକୁ ଦେଲି । ଜ୍ୱର ରୋଗୀକୁ ମଧ୍ୟ ଔଷଧ ଖାଇବାକୁ ଦେଲି । ରୁଦ୍ରପ୍ରୟାଗରୁ ଅଣଚାଳିଶି କି.ମି ଦୂରରେ ଗୁପ୍ତକାଶୀ' ) ※ ପଡ଼େ । ବୃକ୍ଷଲତାଚ୍ଛାଦିତ ଏହି ପଥ ଧାରରେ କୁଳୁକୁଳୁ ଧ୍ୱନି କରି କରି ଝରଣା ପ୍ରବାହିତ ହୋଇ ଚାଲିଛି । ଆମେ ଯାତ୍ରାରମ୍ଭ କରିବା ପରେ ପରେ ଦେଖିଲି ଯେ, ଜଣେ ଅଶୀତିପର ବୃଦ୍ଧା ବାଡ଼ି ଖଣ୍ଡିଏ ଧରି ଠୁକ ଠୁକ ଆଗେଇ ଯାଉଛି । ପୁଣି ଗୋଟିଏ ଗ୍ରେଟ ପିଲାକୁ ଚାଲୁଥିବା ଦେଖିଲି । ଏମାନଙ୍କର ସାହାସ ଦେଖି ମୁଁ ନିଜକୁ ନ୍ୟୁନ ମଣିବା ସଙ୍ଗେ ସଙ୍ଗେ

---

※ ଚାରିଟି କାଶୀ, ଯଥା : ବାରାଣସୀ, କାଶୀ, ବ୍ୟାସକାଶୀ, ଉତ୍ତରକାଶୀ (ଗଙ୍ଗୋତ୍ରୀ ପଥରେ) ଏବଂ ଗୁପ୍ତକାଶୀ ।

ମନର ଜୋର ବଢ଼ାଇବାକୁ ଚେଷ୍ଟା କଲି । ଗୁପ୍ତକାଶୀଠାରେ ପହଞ୍ଚି କଣେ ବୃନ୍ଦାବନୀ ବୈଷ୍ଣବ ସାଧୁଙ୍କ ସଙ୍ଗେ ସାକ୍ଷାତ୍ ହେଲା । ବାବାଜୀଙ୍କ ସଙ୍ଗେ ମାତାଜୀ ଓ ଅନ୍ୟାନ୍ୟ ଗ୍ରେଡ଼ବଡ଼ ଗୃହୀ ଶିଷ୍ୟ ଓ ସନ୍ନ୍ୟାସୀ ଏକାଠି ରହିଥାଆନ୍ତି । ମୁଁ ମୋର ସଙ୍ଗୀ ବଙ୍ଗାଳୀ ସାଧୁଙ୍କୁ କହିଲି ଯେ, "ଏହି ବୈଷ୍ଣବଙ୍କୁ ଆକୃଷ୍ଟ କରିବା ପାଇଁ ଓ ତାଙ୍କ ଦଳ ସଙ୍ଗେ ଭାବ କରିବା ପାଇଁ ଗୋଟିଏ ଉପାୟ କରାଯାଉ ।" "ତୁମେ କୃଷ୍ଣ ନିନ୍ଦା କର, ମୁଁ ସ୍ତୁତିକରି କୃଷ୍ଣ ମହିମା ପ୍ରତିପାଦନ କରିବି ।" ଆମର କୃଷ୍ଣ ପ୍ରସଙ୍ଗାଳାପ ଶୁଣି ସେହି ସାଧୁ ଓ ତାଙ୍କ ଦଳର ସମସ୍ତେ ଆମ ପାଖକୁ ଆସି ଆଳାପ ପରିଚୟ କରିବାରେ ଲାଗିଗଲେ । ସେମାନେ ମୋତେ ଖୁବ୍ ପ୍ରଶଂସା କଲେ ଓ ଖାଣ୍ଟି ବୈଷ୍ଣବ ବୋଲି କହିଲେ । ମୋ ସଙ୍ଗେ ତତ୍ତ୍ୱ ଆଲୋଚନା କରି ମୋର ସେବା ଯତ୍ନରେ ଲାଗିଲେ । ପରଦିନ ଆମ୍ଭେମାନେ ସେଠାରୁ ପ୍ରାୟ ସତାଇଶ ମାଇଲ ଦୂରବର୍ତ୍ତୀ ତ୍ରିଯୁଗୀ ନାରାୟଣଙ୍କ ପୀଠକୁ ଚାଲୁ । ଗଙ୍ଗୋତ୍ରୀଠାରୁ ବଦ୍ରୀନାଥ ଧାମକୁ ଯିବା ରାସ୍ତା ଏଠାରେ ମିଳିତ ହୋଇଅଛି । ସେଦିନ ଭିକ୍ଷାରୁ କେବଳ କୋଦୋଁର ଅଟା ମିଳିଲା । ସେଥିରେ ପାଣି ପକାଇ ନିଆଁରେ ବସାଇଲୁ । ଖାଇବାରେ ଆନନ୍ଦୀ ସନ୍ତୋଷ ହେଲାନି । ତାପରେ ମୁଁ ସଙ୍ଗୀମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଏକା ଏକା ଚାଲିବାକୁ ଲାଗିଲି ।

## କେଦାରନାଥ ଧାମ

ରାସ୍ତାରେ ଚାଲିଥିବା ହିନ୍ଦୁସ୍ଥାନୀ (ମାଲକୁଣ୍ଡି ଲଗାଇଥିବା) ଜବାନମାନଙ୍କ ସଙ୍ଗେ ଚାଲିବା ପ୍ରତିଯୋଗିତା ହେଲା । ଇଚ୍ଛା କରି ସେହିକୁ ହାଲୁକା କରିବା ଅଭ୍ୟାସ ମୋର ଥାଏ । ଲଠି ଭରା ଦେଇ ଡେଇଁ ଡେଇଁକା ତିନି କିଲୋ-ମିଟର ଉତରାଇ ଅତିକ୍ରମ କଲାପରେ ସୋନପ୍ରୟାଗ ପଡ଼ିଲା । ଏଠାରେ ବାସୁକୀ ଗଙ୍ଗା ଓ ମନ୍ଦାକିନୀ ଗଂଗା ମିଳିତ ହୋଇଛନ୍ତି । ଏଠାରୁ ପୁଣି ଅଢ଼ାଇ କିଲୋମିଟର ଚଢ଼ାଇ ପଡ଼େ । ଏହି ରାସ୍ତାରେ କିଛିଦୂର ଚାଲିବା ପରେ ଜବାନମାନେ ହାର ମାନିଲେ । ମୁଁ ଆଗଇ ଯାଇ ମଧ୍ୟାହ୍ନ ପୂର୍ବରୁ ଗୌରୀକୁଣ୍ଡଠାରେ ଗରମ ପିଅ-

ମଖା ଲୁଚି ଓ ଡ଼ାଲି ଖାଇବାକୁ ପାଇଲି । ଗୌରୀକୁଣ୍ଡଠାରୁ କେଦାରନାଥର ଦୂରତା ପ୍ରାୟ ବାର କୋଶ । ପଥର ଦକ୍ଷିଣ ଭାଗରେ ମନ୍ଦାକିନୀ ନଦୀ, ହିମାବୃତ ଗିରିଶ୍ରେଣୀ ଓ ଜଳ ପ୍ରସ୍ରବଣର ଅପୂର୍ବ ଦୃଶ୍ୟ ଅବଲୋକନ କରି କରି ସନ୍ଧ୍ୟାବେଳେ କେଦାରନାଥ ଧାମରେ ଉପନୀତ ହେଲି । ଏହି ସ୍ଥାନର ଉଚ୍ଚତା ଏଗାର ହଜାର ସାତଶହ ପଚାଶ ଫୁଟ । ସରସ୍ୱତୀ ଓ ମନ୍ଦାକିନୀ ଗଙ୍ଗାର ମଧ୍ୟସ୍ଥଳରେ ଏହି ଧାମ ଅବସ୍ଥିତ । ଚତୁର୍ଦ୍ଦିଗରେ ଅଭ୍ରଭେଦୀ ଚିର-ତୁଷାରାବୃତ ଶୃଙ୍ଗରାଜି । ଏଠା ଧର୍ମଶାଳାକୁ ଯାଇ ହାଓଡ଼ାର କେତେଜଣ ଯାତ୍ରୀଙ୍କୁ ଭେଟିଲି । କିନ୍ତୁ ସେମାନେ ମୋତେ ରହିବାକୁ ଜାଗା ଦେଲେନାହିଁ । ପୂର୍ବ ପରିଚିତ ବୃନ୍ଦାବନୀ ବୈଷ୍ଣବ ଓ ତାଙ୍କ ଦଳକୁ ଭେଟିଲି ସେମାନେ ଆଦର ସହି ମୋତେ ସ୍ଥାନ ଦେଲେ । ପ୍ରବଳ ଶୀତ ହେଉଥାଏ । ଧୂନି ପାଖରେ ବସି କିଛି ସମୟ ଆରାମ କରିଗଲି । ପରଦିନ ସକାଳେ କମ୍ବଳ ଘୋଡ଼ାଇ ହୋଇ ପାଇଖାନା ଗଲି । କ୍ଷଣକ ପରେ ହଠାତ୍ ଶୀତଳ ପବନ ବହିବାରୁ ମୋ ଦେହ ହିମବତ୍ ଅଚଳ ହୋଇଗଲା । ଗୋଟିଏ ଚାହା ଦୋକାନରେ ଚାରିଅଣା (ପଚିଶି) ପଇସା ଦେଇ ଅଳ୍ପ ଚାହା ଖାଇଲି । ଦୋକାନ ଚୂଲିରେ ନିଆଁ ଜଳୁଥାଏ । ସେଠାରେ ବସିରହିବାକୁ ଟିକିଏ ଆରାମ ଲାଗୁଥାଏ । କିନ୍ତୁ ଦୋକାନୀ ମୋତେ ସେଠାରେ ରହିବାକୁ ଦେଲା ନାହିଁ । ତେଣୁ ନିଆଁର ସାନ୍ନିଧ୍ୟ ପାଇବା ପାଇଁ ବାଧ୍ୟ ହୋଇ ଥରେ ଥରେ କରି ପଚିଶି ଥର ଚାହା ଖାଇବାକୁ ପଡ଼ିଲା । ପୂର୍ବାହ୍ନରେ କେଦାରନାଥ ଦର୍ଶନ କରିବାକୁ ଗଲି । ଗବାକ୍ଷଶୂନ୍ୟ ଏକଦ୍ୱାରଯୁକ୍ତ ପ୍ରକୋଷ୍ଠରେ ବାବା କେଦାରନାଥ ବିରାଜମାନ—ପ୍ରସ୍ତରର ପ୍ରକାଣ୍ଡ ଲିଙ୍ଗ ମୂର୍ତ୍ତି । ବ୍ୟାସ ପ୍ରାୟ ଚାରି ହାତ ଓ ଉଚ୍ଚତା ଦୁଇହାତ ହେବ । ଲିଙ୍ଗତଳେ ଗଂଗା ବହୁଥିବା କଥା ଶୁଣିଥିଲି । ପଣ୍ଡାଙ୍କ ଅନୁମତି ନେଇ ହାତ ପୂରାଇ ଗଂଗାଙ୍କୁ ସ୍ପର୍ଶକଲି । ନାନାରକମ ଫଳ ଓ ଲୁଚି ଭୋଗ ଦିଆଯିବାରେ ପାଠ ଚାରିପଟେ ଲୁଚି ଗଦାହୋଇ ଗଛ ବଢ଼ିଥାଏ । ଦର୍ଶନ ପରେ ଧର୍ମଶାଳାକୁ ଫେରି ଆସି ହାଲୁଆ ଖାଇବାକୁ ପାଇଲି । ବୈଷ୍ଣବ ସାଧୁ କେଦାର ଦର୍ଶନରୁ ଫେରି ମିଠାଇ ଭୋଗ ଖାଇବାକୁ ଦେଲେ ।

ହାଓଡ଼ାରୁ ଆଗତା ଦୁଇଜଣ ମହିଳାଙ୍କୁ ଭେଟିଲି । କେହି ଭଣ୍ଡ ସାଧୁ ତାଙ୍କର ସର୍ବସ୍ୱ ଅପହରଣ କରି ନେଇଥାଏ । ମୋତେ ଦେଖି ସେମାନେ ବଙ୍ଗଳାରେ କହିଲେ, "ଆମର ସବୁ ଶେଷ ହୋଇ ଯାଇଛି, ତୁମେ ଆଉ ନେବ କଣ ?" ମୋର ଦୟା ହେଲା । ମୁଁ କହିଲି, "ଜଣେ ସାଧୁ ତୁମଠାରୁ ନେଇଛି, ଆଉ ଜଣେ ତୁମକୁ ପଚିଶି ଟଙ୍କା ଦେଉଛି, ତୁମେ ନିଅ ।" ସେମାନେ ମୋଠାରୁ ଟଙ୍କା ରଖିବାକୁ ରାଜି ହେଉନଥିଲେ । ମୋ ଠିକଣା ତାଙ୍କୁ ଦେଲି ଓ ଘରକୁ ଫେରିବା ପରେ ଟଙ୍କା ଫେରାଇ ଦେବାକୁ କହିଲାରୁ ଟଙ୍କା ନେଲେ । କେଦାରନାଥ ଧାମର ଅନ୍ନଛତ୍ରକୁ ଯାଇ ଖୁବ୍ ଭଲ ଭୋଜନ ପାଇଲି । ମୋର ପୂର୍ବପରିଚିତ ସାରସ୍ୱତ ସମ୍ପ୍ରଦାୟର ବିମଳ ବ୍ରହ୍ମଚାରୀ ଓ ଜଣେ ଗୃହସ୍ଥ ଭକ୍ତ (ଶ୍ରୀ ଗୋଷ୍ଠ ବିହାରୀ ଚକ୍ରବର୍ତ୍ତୀ ଙ୍କ ସଙ୍ଗେ ଦେଖାହେଲା । ସେମାନଙ୍କ ପାଇଁ ମଧ୍ୟ ଛତ୍ରରୁ ଖାଦ୍ୟ ଯୋଗାଡ଼ କରିଦେଲି । ଅପରାହ୍ନରେ ବାର କି.ମି ଓହ୍ଲାଇ ଆସି ଗୌରୀକୁଣ୍ଡଠାକୁ ଫେରିଲି ।

ସନ୍ଧ୍ୟା ବେଳେ ବର୍ଷା ହେଲା । ଚଟିରେ ବସିବାକୁ ପର୍ଯ୍ୟନ୍ତ ସ୍ଥାନ ନ ଥାଏ । ଧର୍ମଶାଳାରେ ଖୁବ୍ ଅନୁସନ୍ଧାନ କଲି । କୌଣସିଠାରେ ସ୍ଥାନ ମିଳିଲା ନାହିଁ । ଠାଏ ଦୁଇ ଜଣ ହିନ୍ଦୁସ୍ଥାନୀ ମହିଳା ବିଛଣା ପାରିଥିବା ଦେଖିଲି । ମଝିରେ ଅଳ୍ପ ସ୍ଥାନ ଥାଏ । ସେଠାରେ କମ୍ବଳଟି ରଖି ବସିଗଲି । ଦୁଇଜଣ ସ୍ତ୍ରୀ ଦୁଇଆଡ଼ୁ ଦୁଇ ଖଣ୍ଡା ମାଡ଼ି ବସାଇଲେ । ମୋ ପାଖରେ ଲଠିଥିଲା । ଲଠି ଦେଖାଇ କୃତ୍ରିମ ରୋଷ ପ୍ରକାଶ କରି କହିଲି, "ତୁମାରା ଜାନ୍ ଲେ ଲେଙ୍ଗେ ।" ଅଦୂରରେ ଗପସପ କରୁଥିବା ତାଙ୍କ ଦଳର ଚାରିଜଣ ମରଦ ଆସି ମୋତେ ଘେରି ଗଲେ । ମୋର ପୂର୍ବ ପରିଚିତ ଦୁଇଜଣ ରୋଗୀ (ଉଭୟେ କିଛି ପରିମାଣ ସୁସ୍ଥ ହୋଇସାରିଥାଆନ୍ତି । ଦୈବାତ୍ ପାଖରେ ଥିଲେ । ସେମାନେ ଚହ୍ନିପାରି ମୋତେ ମହାତ୍ମା ବୋଲି ସମ୍ମାନ ଦେଖାଇ ମୋର ପକ୍ଷ ନେବାରୁ ଅନ୍ୟ ଦଳ ମୋ ପାଦରେ କ୍ଷମାପ୍ରାର୍ଥୀ ହେଲେ । ମୁଁ କହିଲି, "ପୁରୁଷମାନଙ୍କୁ କ୍ଷମା କରିପାରେ, କିନ୍ତୁ ଶୋଇବାକୁ ଜାଗା ପାଇଲେ ଯାଇ ମା'ମାନଙ୍କୁ କ୍ଷମା କରିବି ।" ମୋର ଖୁବ୍ ସେବା ଯତ୍ନ କଲାଟଲି, ଖାଇବା ପିଇବାର ବନ୍ଦୋବସ୍ତ ମଧ୍ୟ ହେଲା ।

# ତୁଙ୍ଗନାଥ, ଗୁଚମଲି ଓ ଜୋଶୀ ମଠ

ପରଦିନ ସକାଳୁ ପୁଣି ଯାତ୍ରାରେ ପ୍ରବୃତ୍ତ ହେଲି । ହାଓଡ଼ାର ସେହି ଯାତ୍ରୀଦଳ — ଯେଉଁମାନେ ମୋତେ କେଦାରନାଥଠାରେ ପାଖ ପୂରାଇ ଦେଉ ନଥିଲେ — ମୋ ସାଙ୍ଗେ ଜୁଟିଲେ । ମୁଁ ସେମାନଙ୍କ ସଙ୍ଗେ ଆଳାପ ପର୍ଯ୍ୟନ୍ତ କରୁନଥାଏ । ତାଙ୍କ ମଧ୍ୟରୁ ପଛରେ ପଡ଼ିଯାଇଥିବା ଜଣେ ଯୁବକ ସଙ୍ଗେ କଥାବାର୍ତ୍ତା ହେଲା । ସେ ପଚାରିଲେ, "ସାଧୁଜୀ, ଆପଣ କ'ଣ ସବୁ ଦେଖୁଛନ୍ତି ? ତୀର୍ଥ ଯାତ୍ରାରେ ଈଶ୍ୱରଙ୍କୁ ସାକ୍ଷାତ୍ କଲେଣି ?" ମୁଁ କହିଲି, "ବନ, ଗିରି ଓ ନିର୍ଝରର ଅପରୂପ ପ୍ରାକୃତିକ ଶୋଭାକୁ ଯଦି ଈଶ୍ୱର କୁହାଯାଏ ତେବେ ମୁଁ ବାସ୍ତବିକ ଈଶ୍ୱର ସାକ୍ଷାତକାର କରି ଚାଲିଛି ।" ମୋ କଥା ଶୁଣି ସେ ଖୁବ୍ ଖୁସି ହେଲା ।

କେଦାରନାଥଠାରୁ ପ୍ରାୟ ଅଠଷଠି କି:ମି ପଥ ଅତିକ୍ରମ କରି ତୁଙ୍ଗନାଥ-ଠାରେ ପହଞ୍ଚିଲି । ତୁଙ୍ଗନାଥ ପୀଠ କେଦାରନାଥଠାରୁ ମଧ୍ୟ ଅଧିକ ଉଚ୍ଚରେ । ରାସ୍ତା ଖୁବ୍ କଠିନ, ପାହାଡ଼ ଚଢ଼ିବା ଦୁଃସାଧ୍ୟ । ତୁଙ୍ଗନାଥଠାରେ ଆକାଶ ଗଙ୍ଗାର ଗୋଟିଏ ଧାରା ଯେଉଁ କ୍ଷୁଦ୍ର କୁଣ୍ଡରେ ଆସି ପଡ଼ୁଛି ତାହାର ନାମ ଅମୃତ କୁଣ୍ଡ । ଗଙ୍ଗାଧାରରେ ଯାତ୍ରୀମାନେ ସ୍ନାନ କରି ସାରି କୁଣ୍ଡରେ ତର୍ପଣ ଶ୍ରାଦ୍ଧ କରନ୍ତି । ସମୀପବର୍ତ୍ତୀ ବେଣିଆ ଚଟିର ଧର୍ମଶାଳାରେ ରହିବାକୁ ଜାଗା ପାଇବା ଖୁବ୍ କଷ୍ଟକର ମନେହେଲା । ହାଓଡ଼ାର ଯାତ୍ରୀଙ୍କ ପାଖରେ ଘର ପାଇବା ପାଇଁ ଟିକେଟ୍ ଥାଏ । ଏମାନେ ଘର ଅଧିକାର କରିବାକୁ ଚେଷ୍ଟା କଲାବେଳେ ଅନ୍ୟ ଏକ ହିନ୍ଦୁସ୍ଥାନୀ ଦଳ ଆସି ଘର ଦଖଲ କରିବାରେ ଲାଗିଗଲେ । ମୁଁ ପ୍ରଥମେ ହିନ୍ଦୁସ୍ଥାନୀଙ୍କ ପକ୍ଷ ନେଇ ହାଓଡ଼ା ଯାତ୍ରୀଙ୍କ ବିରୋଧ କଲାଭଳି ଅଭିନୟ କଲି । ଫଳରେ ଚଉକିଦାରକୁ ଡକାଯାଇ ଗୋଟିଏ ଅଧିକା ବଖରା ଖୋଲିଦିଆଗଲା । ତେଣିକି ମୋ ପିଠି ଧରି ସମସ୍ତେ ସେହି ଘରେ ରହିବାକୁ ହାଓଡ଼ା ଆଗତ ଯାତ୍ରୀ ଖୁସି ହୋଇ ମୋର ଖୁବ୍ ସମ୍ବର୍ଦ୍ଧନା କଲେ । ତୁଙ୍ଗନାଥ ଦର୍ଶନ କରିସାରି ଆମେ ପୁଣି ଆଗେଇ ଚାଲିଲୁ । ରାସ୍ତାରେ ଗୋଟିଏ ପାହାଡ଼ ଗ୍ରାମରେ ଭିକ୍ଷା କଲାବେଳେ

ଦେଖିଲି ଯେ ଜଣଙ୍କ ଘରେ ବୈଦ୍ୟ ଗୋଟିଏ କଲେରା ରୋଗୀର ଚିକିତ୍ସାରେ ବ୍ୟସ୍ତ । ରୋଗୀର ଅବସ୍ଥା ସାଂଘାତିକ ବୋଲି ଜଣାପଡୁଥିଲା । ଗୁରୁ ସ୍ମରଣ କରି ମୋ ପାଖରେ ଥିବା ହାଇଓକେମିକ୍ ଔଷଧ ପାନେ ସେହି ରୋଗୀକୁ ଦେଲି । ଆମର ସୌଭାଗ୍ୟ ଯେ କିଛି ସମୟ ପରେ ସେ ରୋଗୀ ସୁସ୍ଥ ହୋଇ ଉଠିଲା । ଏଥିପାଇଁ ବୈଦ୍ୟରାଜ ମୋ ପାଖରେ ଖୁବ୍ କୃତଜ୍ଞତା ପ୍ରକାଶ କଲେ । ସେହି ଗୃହସ୍ଥଙ୍କର ଆନନ୍ଦ କହିହେଲା ନ ସରେ । ମୋତେ ତାଙ୍କ ଘରେ ରହି ଭୋଜନ କରିବାକୁ ଆମନ୍ତ୍ରଣ କରାଇଲେ । ମୁଁ ଅସମ୍ମତ ହୋଇ ଦହି ଓ ଗୁଡ଼ ଭିକ୍ଷା ଗ୍ରହଣ କରି ବିଦାୟ ନେଲି ।

ତରଣି କ ମି ରାସ୍ତା ଅତିକ୍ରମ କରି ଗୃମେଲ୍‌ଠାରେ ପହଞ୍ଚିଲି । ଏଠାରେ କିଛି ସମୟ ବିଶ୍ରାମ କରିଗଲି । ଏହି ଅଞ୍ଚଳରେ ମୋର ଗୁରୁଦେବ ପ୍ରେମସିଦ୍ଧା ଗୋପୀମାନଙ୍କ ଦର୍ଶନ ପାଇଥିଲା ଭଳି ମନେ ହେଲା । ତେଣୁ ଗୋପୀମାନଙ୍କ ସଙ୍ଗେ ସାକ୍ଷାତ୍କାର ସୌଭାଗ୍ୟ ଘଟିବା ପାଇଁ ମୁଁ ମନେ ମନେ ପ୍ରାର୍ଥନା କରୁଥାଏ ଏବଂ ସବୁଠାରେ ତାଙ୍କ ଆଶ୍ରମ ସମ୍ପର୍କରେ ଖବର ନେଉଥାଏ । ପରଦିନ ସକାଳେ ଗ୍ରେଲ୍ ଭଜା ଖାଇ ଖାଇ ଯାତ୍ରା କରୁ କରୁ ଗୋଟିଏ ବିସନପରିହିତା ହାସ୍ୟମୟୀ ଜନୈକା ଯୋଗିନୀଙ୍କ ସଙ୍ଗେ ସାକ୍ଷାତ୍ ହେଲା । ଆଗ୍ରହାତିଶଯ୍ୟରେ ମାତାପୁତ୍ର ନ୍ୟାୟରେ ଉଭୟେ ଉଭୟଙ୍କୁ କୋଳାଗ୍ରତ କଲୁ । କ୍ଷଣକ ପାଇଁ ମନେହୁଏ ଗୁରୁଦେବଙ୍କ ସାଧନ ଜୀବନରେ ଅଲୌକିକ ଭାବ ସାଧନା ଘଟିତ ଅପ୍ରକାଶ୍ୟ ଲୀଳାସ୍ୱାଦର ସ୍ଫୁର୍ତି ଅନୁଭୂତ ହେଲା । ସେ କହିଲେ ଯେ, ଜଣେ ଭକ୍ତର ଆହ୍ୱାନକ୍ରମେ ତାଙ୍କୁ ଦୂରକୁ ଯିବାକୁ ପଡ଼ୁଛି । ପିପଲକୋଠୀଠାରେ ତାଙ୍କର ଆଶ୍ରମ ଅଛି । ସେମାନେ ଦୁଇ ଭଉଣୀ ସେଠାରେ ଅବସ୍ଥାନ କରନ୍ତି । ମୋତେ ତାଙ୍କ ଆଶ୍ରମକୁ ଯିବାକୁ ଅନୁରୋଧ କରି ନିଜ ଗନ୍ତବ୍ୟ ପଥରେ ସେ ଚାଲିଗଲେ । ଗୃମେଲ୍ ଠାରୁ ପ୍ରାୟ ପନ୍ଦର କ ମି ଦୂରରେ ଥିବା ପିପଲକୋଟିଠାରେ ଅନେକ ଅନୁସନ୍ଧାନ କରି ସୁଦ୍ଧା ତାଙ୍କ ଆଶ୍ରମ ଠାବ କରିପାରିଲି ନାହିଁ । ଅନ୍ୟ ଏକ ସାଧୁଙ୍କ ଜମାତରେ ହାଲୁଆ ପୁରି ଇତ୍ୟାଦି ଖାଇବାକୁ ମିଳିଲା ।

ପିପଲକୋଟିଠାରୁ ଜ୍ୟୋତି ବା ଜୋଶୀ ମଠର ଦୂରତା ପ୍ରାୟ ବତିଶି କିମି । ଜୋଶୀମଠ ଆଦ୍ୟ-ଶଙ୍କରାଚାର୍ଯ୍ୟଙ୍କଦ୍ୱାରା ପ୍ରତିଷ୍ଠିତ । ଏହା ବ୍ୟତୀତ, ଭାରତର ପୂର୍ବସୀମା ଶ୍ରୀକ୍ଷେତ୍ର ବା ପୁରୀଧାମରେ ଗୋବର୍ଦ୍ଧନ ମଠ, ଦକ୍ଷିଣ ପ୍ରାନ୍ତୀୟ ସେତୁବନ୍ଧ ରାମେଶ୍ୱରଠାରେ ଶୃଙ୍ଗେରୀ ମଠ, ପଶ୍ଚିମ ପ୍ରଦେଶର ଦ୍ୱାରକାଧାମଠାରେ ଶାରଦା ମଠ ସ୍ଥାପନ କରି ଜଗଦ୍‌ଗୁରୁ ଶଙ୍କର ଭାରତୀୟ ଲୋକ ସମାଜରେ ସନାତନ ଧର୍ମାନୁସରଣର ସୁବ୍ୟବସ୍ଥା କରିଯାଇଛନ୍ତି ।

କାର୍ତ୍ତିକମାସଠାରୁ ପ୍ରବଳ ଶୀତ ଓ ହିମପାତ ଯୋଗୁଁ ଯେତେବେଳେ ବଦ୍ରୀନାରାୟଣ ପୀଠ ଅଗମ୍ୟ ହୁଏ, ପ୍ରଭୁଙ୍କୁ ପଣ୍ଡାମାନେ ଜୋଶୀମଠରେ ସ୍ଥାପନ କରି ଛଅମାସ କାଳ ପୂଜା କରନ୍ତି । ଗ୍ରୀଷ୍ମାରମ୍ଭରେ ବରଫ ତରଳି ଗଲେ ଠାକୁର ପୁଣି ବଦ୍ରୀଧାମକୁ ଯାଆନ୍ତି । ଯୋଶୀ ମଠରେ ଶଙ୍କରାଚାର୍ଯ୍ୟଙ୍କ ପାଦ ପାଖରେ ବସିବାକୁ ମୋ ମନରେ ଶଙ୍କର-ପ୍ରଚାରିତ ଅଦ୍ୱୈତ ଜ୍ଞାନ ଜାଗି ଉଠିଲା । ସେତିକି ବେଳେ ତତ୍କାଳୀନ ପୀଠାଧୀଶ ଶଙ୍କରାଚାର୍ଯ୍ୟ ସ୍ନାନ ସମାପନ କରି ଫେରି ଆସୁଥାଆନ୍ତି । ମୁଁ ତାଙ୍କୁ ପ୍ରଣାମ କଲି । ସେ ମୋତେ ଉଠାଇ ନେଇ ଆଲିଙ୍ଗନ କଲେ । ମଠରେ ରୁଟି ନ ଥିବାରୁ ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ମୋତେ ସଙ୍ଗେ ଦିଆଗଲା ।

ଏଠାରୁ କୈଳାସ ଓ ମାନସ ସରୋବର ଯିବାପାଇଁ ଗୋଟିଏ ରାସ୍ତା ଅଛି । ଏହି ରାସ୍ତାରେ ଦୁର୍ଗମ ଗିରିସଙ୍କଟ ଅତିକ୍ରମ କରିବାକୁ ପଡ଼େ ଓ ପାହାଡ଼ରୁ ପଥର ଓ ମାଟି ଧସିଯାଏ । ତେଣୁ ଏହା ବିପଦସଙ୍କୁଳ । ମାନସ ସରୋବର ଯିବା ସମ୍ପର୍କରେ ଆଗ୍ରହୀ ହୋଇ ରାସ୍ତା ଓ ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟ ଶଙ୍କରାଚାର୍ଯ୍ୟଙ୍କୁ ପଚାରିଲି । ସେ କହିଲେ, "ଏକ ମାସ ଅପେକ୍ଷା କର, ଅନ୍ୟ ସାଧୁମାନେ ମଧ୍ୟ ଯିବେ, ଏକ ସଙ୍ଗେ ଯିବ, ନୋହିଲେ ଦସ୍ୟୁ କବଳରୁ ରକ୍ଷା ମିଳିବ ନାହିଁ ।"

ହିମାଳୟର ଏହି ସବୁ ତୀର୍ଥର ମହିମା ଅଲୌକିକ ! ପଥଶ୍ରମ ଓ ଶୀତାଧିକ୍ୟ ହେତୁ ଶରୀର ଦୁର୍ବଳ, ମନ ଭ୍ରମିତ ଓ ବୁଦ୍ଧି ସ୍ଥିର ହୋଇ

ଦୁର୍ଲ୍ଲଭ ବ୍ରହ୍ମଜ୍ଞାନର ଅପରୋକ୍ଷାନୁଭୂତି ଲାଭ ହୋଇଥାଏ । ପ୍ରକୃତ ନାରାୟଣ ଦର୍ଶନ ଏଠାରେ ହୁଏ ।

## ବଦରିକା ଧାମ

ଲମବଡ଼େ ଓ ହନୁମାନ ଚଟି ପାର ହୋଇ ଋଷିଗଙ୍ଗା ଓ ଅଲକନନ୍ଦାର ସଙ୍ଗମସ୍ଥଳ ବଦରିକା ଧାମରେ ପହଞ୍ଚିଲୁ । ପୁଣି ସେହି ହାଓଡ଼ା ଯାତ୍ରୀ ଦଳଙ୍କ ସଙ୍ଗେ ରହିବାକୁ ପଡ଼ିଲା । ପ୍ରସ୍ତର ନିର୍ମିତ ଦୋତାଲା ଘରେ ଦୁଇ ତିନଦିନ ଅବସ୍ଥାନ କଲି । ସାଧୁ ସଙ୍ଗତରେ ପ୍ରସାଦ ସେବା କରିବାକୁ ମିଳୁଥାଏ ।

ପ୍ରବାଦ ଅଛି, ପ୍ରାଚୀନ କାଳରୁ ତିବ୍ବତବାସୀ ବଦ୍ରୀନାରାୟଣ ବିଗ୍ରହର ପୂଜା କରି ଆସୁଥିଲେ । କାଳେ ଏହି ମୂର୍ତ୍ତି ଦିଗ୍‌ବିଜୟୀ ଶଙ୍କରାଚାର୍ଯ୍ୟଙ୍କ ହସ୍ତଗତ ହୋଇଯିବ, ଏହି ଆଶଙ୍କା କରି ଆଚାର୍ଯ୍ୟଙ୍କ ଉତ୍ତରାଖଣ୍ଡ ପରି ବ୍ରାଜନର ଅବ୍ୟବହିତ ପୂର୍ବେ ପୂଜାରୀମାନେ ଏହି ନାରାୟଣ ମୂର୍ତ୍ତି ଅଲକନନ୍ଦା ନଦୀଗର୍ଭରେ ବିସର୍ଜ୍ଜନ କରନ୍ତି । ବଦ୍ରୀଧାମସ୍ଥ ନାରଦ କୁଣ୍ଡ ମଧ୍ୟରୁ ଉଦ୍ଧାର କରି ଶଙ୍କରାଚାର୍ଯ୍ୟ ଆଧୁନିକ ବଦ୍ରୀଧାମରେ ଏହି ମୂର୍ତ୍ତି ପ୍ରତିଷ୍ଠିତ କରନ୍ତି ।

ବଦ୍ରୀନାରାୟଣ ମୂର୍ତ୍ତି ଚତୁର୍ଭୁଜ କୃଷ୍ଣବର୍ଣ୍ଣ ପ୍ରସ୍ତରନିର୍ମିତ ପ୍ରାୟ ଏକ ହାତ ଉଚ୍ଚ ଓ ପଦ୍ମାସନରେ ସମାଧିମଗ୍ନଭାବେ ଉପବିଷ୍ଟ । ମୂର୍ତ୍ତିଙ୍କର ମସ୍ତକୋପରି କନକଛତ୍ର, ମସ୍ତକରେ ସ୍ୱର୍ଣ୍ଣ ମୁକୁଟ ଓ ସର୍ବାଙ୍ଗରେ ନାନାବିଧ ଅଳଙ୍କାର ସୁଶୋଭିତ । ଦକ୍ଷିଣଭାଗରେ କୁବେର ଓ ନାରଦ, ବାମ ଭାଗରେ ନର ଓ ନାରାୟଣ ଋଷି ଓ ସମ୍ମୁଖରେ ଉଦ୍ଧବ ଓ ଗରୁଡ଼ ବିରାଜମାନ । ଶ୍ରୀ ବଦ୍ରୀନାଥ ଧାମ ହିନ୍ଦୁ ଜଗତର ଅନ୍ୟତମ ପ୍ରଧାନ ତୀର୍ଥ । ଅଦୂରରେ ବ୍ରହ୍ମକପାଳ ଶିଳା ପିତୃଶ୍ରାଦ୍ଧ ପାଇଁ ପ୍ରସିଦ୍ଧ । ଶ୍ରୀ ବଦ୍ରୀନାଥଙ୍କ ଅନ୍ନଭୋଗ ନିଷ୍ଟ କରି ଏଠାରେ ପିଣ୍ଡଦାନ କରାଯାଏ ।

# ବସୁଧାର ଦର୍ଶନ

ବଦ୍ରୀଧାମ ଠାରୁ ପ୍ରାୟ ଛଅ କି.ମି. ଦୂରରେ ବସୁଧାରା ପ୍ରପାତ ଅବସ୍ଥିତ। ଉକ୍ତ ଅଛି, ପାପୀ ମସ୍ତକରେ ଏହି ଧାରାର ଜଳ ପଡ଼ିତ ହୁଏ ନାହିଁ। ଏହା ଦର୍ଶନ କରିବାକୁ ମୋର ଖୁବ୍ ଆଗ୍ରହ ହେଲା। କେହି ସାଙ୍ଗରେ ଯିବାକୁ ରାଜି ନହେଲେହେଁ ମୁଁ ଏକା ଯିବାକୁ ସାହାସ କଲି। ଭୋର ଚାରିଟା ବେଳେ ବାହାରିପଡ଼ି ଦେଖିଲି ହାଓଡ଼ା ଦଳରୁ ଜଣେ ଗୃହସ୍ଥ ଯାତ୍ରୀ ମଧ୍ୟ ଯିବାକୁ ବାହାରିଛନ୍ତି। ମଧ୍ୟାହ୍ନ ଭୋଜନ ପାଇଁ କିଛି ଝାଲୁଆ ଯୋଗାଡ଼ କରି ଯାତ୍ରା ଆରମ୍ଭ କଲୁ। ଥଣ୍ଡା ହାଓ୍ୱା ଚାଲୁଥାଏ। ତାର ସ୍ପର୍ଶରେ ଦେହ ବରଫ ଭଳି ଶୀତଳ ହୋଇଯାଉଥାଏ। ବାଟରେ ପଡ଼ିଥିବା ଗହମର ନଡ଼ାକୁ ଜାଳି ସେକ ହେବାରୁ ଟିକିଏ ତାଜା ଲାଗିଲା। ସୂର୍ଯ୍ୟୋଦୟ ପରେ ପୁଣି ଚାଲିବାକୁ ଲାଗିଲୁ। କିଛିଦୂର ଅତିକ୍ରମ କଲାପରେ ବ୍ୟାସଗୁମ୍ଫା ବା ବ୍ୟାସାଶ୍ରମ ପଡ଼ିଲା। ଏଠାରେ ସରସ୍ୱତୀ ନଦୀ ଉପରେ ଦଉଡ଼ିରେ ଝୁଲୁଥିବା ଦଶଇଞ୍ଚ ଚଉଡ଼ା ପଟାବନ୍ଧା ପୋଲ ଥାଏ। ରାସ୍ତାରେ ଯାଉଥିବା ବୋଟିଏ କୁଲି ଶ୍ରେଣୀର ଲୋକର ଉପଦେଶ ଅନୁଯାୟୀ ବନ୍ଧାଯାଇଥିବା ଦଉଡ଼ିକୁ ଧରି ଝୁଲି ଝୁଲି ଚାଲିଲୁ। ଖୁବ୍ ସାହାସ ଓ ସନ୍ତର୍ପଣ ସହକାରେ ମୋର ସହଯାତ୍ରୀଙ୍କୁ ପାର କରାଇଲି ଓ ମୁଁ ଧିରେ ପାର ହେଲି। ପୋଲ ପାର ହେଲାବେଳେ ପ୍ରାୟ ଦୁଇଶହ ଫୁଟ ନିମ୍ନରେ ଥିବା କରାଳ ସ୍ରୋତା ନଦୀର ଦୃଶ୍ୟ ହୃତ୍‌କମ୍ପ ସୃଷ୍ଟି କରୁଥାଏ। ବ୍ୟାସଗୁମ୍ଫାଠାରୁ ପ୍ରାୟ ୩ କି.ମି. ରାସ୍ତା ଅତିକ୍ରମ କରି ଦେବ-ଦୁର୍ଲ୍ଲଭ ବସୁଧାରା କ୍ଷେତ୍ରରେ ପ୍ରବେଶ କଲୁ। ଏହି କ୍ଷେତ୍ରର ଦୃଶ୍ୟ ଅଭୂତ-ପୂର୍ବ। ଚତୁର୍ଦ୍ଦିଗବ୍ୟାପୀ ତୁଷାରାବୃତ ପର୍ବତମାଳା ସୂର୍ଯ୍ୟକିରଣ ସମ୍ପାତରେ ସୁନା ରୂପା ତମ୍ବା ଆଦି ଧାତୁର ବିଚିତ୍ର ବର୍ଣ୍ଣାଳୀ ହମ୍ପର ସୃଷ୍ଟି କରୁଥାଏ। ପ୍ରାୟ ଦୁଇଶହ ଫୁଟ ଉଚ୍ଚରୁ ବସୁଧାରା ନାମକ ହିମମିଶ୍ରିତ ଜଳପ୍ରପାତ ଶିଳା ଖଣ୍ଡ ଉପରେ ସଶବ୍ଦ ଲମ୍ଫ ପ୍ରଦାନ କରୁଥିବା ଦେଖି ମୁଗ୍ଧ ହେଲି। ପ୍ରପାତର ଧାରାରେ ସୂର୍ଯ୍ୟାଂଶୁ ପ୍ରତିଫଳିତ ହୋଇ ସପ୍ତବର୍ଣ୍ଣୀ ଇନ୍ଦ୍ରଧନୁ ସୃଷ୍ଟି ହେଉଥାଏ। ମୋର ମନେହେଲା, "ତୁଷାରଧବଳ ପର୍ବତ ଗାତ୍ରରେ ପ୍ରାତଃ-

ଭାଳୀନ ବାଳରବିର ସ୍ୱର୍ଣ୍ଣାଭ କିରଣ ସମ୍ପାତର ଦୃଶ୍ୟ ଦେଖି ମଦୀୟ ପୂଜ୍ୟପାଦ ଗୁରୁଦେବ ବସୁଧାସ୍ଥ କ୍ଷେତ୍ର ପରିବ୍ରାଜନ କାଳରେ 'ରଜତ ଆସନେ ବସେ ଗୌରୀଶଙ୍କର' କବିତା ରଚନା ପାଇଁ ପ୍ରେରଣା ପାଇଥିବା ସମ୍ଭବପର । ପାଠକମାନଙ୍କର ଅବଗତି ପାଇଁ ଏହି କବିତାର* ଓଡ଼ିଆ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା :

ରଜତ-ଆସନେ ବସେ ଗୌରୀଶଙ୍କର ।
ହେଉଛି ସହସ୍ରାରେ ରଜତ-ଭୂଧରେ
ଯେସନ୍ତେ ଉଦିତ ଶଶଧର । ୦ ।
ଶିବଙ୍କ ଶିରୋପରି ବହେ ଗଙ୍ଗା କଳ କଳ
ବାହନ୍ତି ଗଜଦନ୍ତ ବାମେ ଆଲୁଳିତ କୁନ୍ତଳ,
ଜଟା ଶୋଭେ ଏକ ସ୍ଥଳେ ଦାଉ ଦାଉ ଅଗ୍ନି ଜଳେ
ଅନ୍ୟ ସ୍ଥଳେ ଶୋଭେ ଅର୍ଦ୍ଧ ସୁଧାଂଶୁ ସୁନ୍ଦର । ୧ ।
ଏକ ଶ୍ରୁତି ପଟେ ଦୋଳେ କୁଣ୍ଡଳି ଦ୍ୱିଜିହ୍ୱର ଦଳ
ଅପର କର୍ଣ୍ଣରେ ଶୋଭେ କନକ-କୁଣ୍ଡଳ;
ଈଶାନ ବିଷାଣ କରେ ପଲକେ ପ୍ରଳୟ କରେ
ଶିବେ ଅନ୍ନଦାନ କରେ ଅଭୟାର ହସ୍ତ କର । ୨ ।
କାଞ୍ଚୁଲି ଭୂଷିତା ଉମା ଝଟକେ ମଣି ମାଣିକ୍ୟ
ବିଘାମ୍ବରର ବାଘଛାଲ କଟିତଟେ ନାହିଁ ଐକ୍ୟ
ଦୀନ ନଳିନୀ କହେ ପଦ-ଶୋଭା ଭିନ୍ନ ନୋହେ
ସେ ପଦ ଭାବିଲେ ଛୁଇଁନପାରେ ଯମ କିଙ୍କର । ୩ ।

ଏହି କ୍ଷେତ୍ରର ପରିବେଶରେ ସ୍ୱାଭାବିକ ଭାବେ ମନ ସମାହିତ ହୋଇଯିବାରୁ କିଛି ସମୟ ଧ୍ୟାନସ୍ଥ ହୋଇ ବସି ରହିଲି । ପରେ ଆମ

---

*ମୂଳ ବଙ୍ଗଳା କବିତା ପାଇଁ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ପ୍ରଣୀତ 'ଜ୍ଞାନୀଗୁରୁ' ଗ୍ରନ୍ଥ ଦ୍ରଷ୍ଟବ୍ୟ ।

ପାଖରେ ଥିବା ହାଲୁଆକୁ ଖରକରି ଖିଆଗଲା । ତସ୍ମାତ୍ ଯାତ୍ରା ମୋ ଜୀବନର ଏକ ବିଶେଷ ସ୍ମୃତି ହୋଇ ରହିଲା । ଅପରାହ୍ଣରେ ସେଠାରୁ ଫେରି ରାତି ପ୍ରାୟ ଆଠଟା ବେଳେ ବଦ୍ରୀଧାମରେ ଉପନୀତ ହେଲୁ ।

ଏଥର ଫେରିବା ବେଳ । ପଦବ୍ରଜରେ ଗୃମେଣ୍ଣ ଯାଏଁ ଆସି ଅଦୂରବର୍ତ୍ତୀ ଷ୍ଟେସନ୍‌ରୁ ଟ୍ରେନ୍ ଯୋଗେ ଅନ୍ୟ ଏକ ରାସ୍ତାରେ ହରିଦ୍ୱାର ଫେରିଲେ । ଚଳିବେଳେ ଅଧିକାଂଶ ଯାତ୍ରୀ ଦେବପ୍ରୟାଗ, ରୁଦ୍ରପ୍ରୟାଗ ହୋଇ ଯାତ୍ରା କରନ୍ତି । କାରଣ ରାସ୍ତାର ଦୃଶ୍ୟ ମନୋରମ ଓ ନାନା ପ୍ରୟାଗ ତୀର୍ଥରେ ସ୍ନାନ, ଦାନ ଓ ତର୍ପଣ କରିବା ବିଧି ରହିଛି । ମୋ ସହ ଆଉ ତିନିଜଣ ନାଗା ସାଧୁ ହରିଦ୍ୱାର ଯାଏଁ ଆସିଲେ । ସେଠାରୁ ଦିଲ୍ଲୀ ବାଟେ ମଥୁରା ବୃନ୍ଦାବନ ଧାମ ଦର୍ଶନ କରିବାକୁ ମନସ୍ଥ କରି ଏକାଠି ରେଲଯାତ୍ରା ଆରମ୍ଭ କଲୁ ।

ଦିଲ୍ଲୀରେ ଓହ୍ଲାଇ ଷ୍ଟେସନ୍ ପାଖ ଗୋଟିଏ ବଗିଚାରେ ଆମ୍ଭର କମ୍ବଳ ବିଛାଇଦିଆଗଲା । ମୋର ସଙ୍ଗୀ ସାଧୁଙ୍କର ଭୋଜନରେ କମ୍ ଆଗ୍ରହ ଲକ୍ଷ୍ୟକଲି । ତେଣୁ ଖାଦ୍ୟ ସଂଗ୍ରହ ପାଇଁ ଅଗତ୍ୟା ମୋତେ ଏକା ବାହାରିବାକୁ ହେଲା । କମଣ୍ଡଳୁଟିଏ ଧରିଥାଏ ! କଦଳୀ, କମଳା ଓ ସେଓ ଭିକ୍ଷାରେ ସେ'ଟି ପୂର୍ଣ୍ଣ ହୋଇଗଲା । ରୁଟି ଡ଼ାଲି ମଧ୍ୟ ଖୁବ୍ ମିଳିଲା । ଶେଷରେ ଗୋଟିଏ ଭୋଜନାଳୟରେ ଜଣେ ଲୋକ ମୋର ପେଟପୂରା ଭୋଜନ କରାଇଦେଲେ । ଭିକ୍ଷା ପାଇଥିବା ସାମଗ୍ରୀ ନେଇ ମୋର ସାଥୀ ସାଧୁଙ୍କୁ ଖାଇବାକୁ ଦେଲି । "ଭଗବାନ୍ ଆଜ ଖାନେକୋ ଦିୟା ହୈ, ଖୁସିସେ ଖାଓ" କହି ସେମାନେ ଖୁବ୍ ଆନନ୍ଦରେ ଭୋଜନ କରିବାକୁ ଲାଗିଲେ ।

## ବୃନ୍ଦାବନ ଧାମ

ରାତି ଟ୍ରେନରେ ଚଢ଼ି ଦିଲ୍ଲୀରୁ ବୃନ୍ଦାବନଧାମକୁ ଆସିଲୁ । କାଠିଆ ବାବାଙ୍କ ଆଶ୍ରମ ପାଖ ସନ୍ୟାସୀ ଆଶ୍ରମରେ ଆଶ୍ରୟ ମିଳିଲା । କେବଳ ଜଣେ

ନାଗା ମୋ ସଙ୍ଗେ ରହିଲେ, ଅନ୍ୟମାନେ ଗ୍ରୁଣ୍ଡି ଗ୍ଲୁଲିଗଲେ । ପ୍ରାୟ ଦେଢର ଦିନ କାଳ ଗ୍ଲ୍ର-ଆଡ଼େ ବୁଲି ଗ୍ଲ୍ଲି ଦେଖାଗଲି । ଅନ୍ନଛତ୍ରରେ ଅଭ୍ୟାଗତ ଭାବେ ଭୋଜନ ପାଉଥାଉ ।

ବୃନ୍ଦାବନରେ ମାଧୂକରୀର ବିଶେଷ ମହାତ୍ମ୍ୟ ରହିଛି । ଏଠାରେ ଗୃହସ୍ଥ ମାନେ ସାଧୁଙ୍କୁ ନିମନ୍ତ୍ରଣ କରି ନେଇ ଆପଣାଘରେ ଖୁବ୍ ଆଦରର ସହ ଭୋଜନ କରାନ୍ତି—ଏହାର ନାମ ମାଧୂକରୀ ଭିକ୍ଷା । ମୁଁ ମନେ ମନେ ଠାକୁରଙ୍କୁ ଜଣାଇଲି, 'ଠାକୁର, ସତେ କ'ଣ ବୃଂଦାବନରେ ମୋର ମାଧୂକରୀ ଲାଭ ହେବ ନାହିଁ ?' ପରଦିନ ଛତ୍ରରୁ ଫେରି ବଙ୍କୁବିହାରୀଙ୍କ ମନ୍ଦିର ପାଖରେ ଦର୍ଶନ କରୁଛି, ଜଣେ ପିଲା ମୋତେ ଧରି ତାଙ୍କ ଘରକୁ ଯିବାକୁ ନିମନ୍ତ୍ରଣ କଲା । କହିଲା, "ଆସନ୍ତୁ, ପୁରି ଭୋଜନ ମିଳିବ ।" ଅନ୍ନ-ଛତ୍ରରୁ ପାଇଥିବା ରୁଟି ଇତ୍ୟାଦି ନାଗା ସାଧୁଙ୍କୁ ଦେଇ ଲକ୍ଷ୍ୟ କଲି, ନିମନ୍ତ୍ରଣ ଜଣାଇ ସାରି ସେ ପିଲାଟି ଖୁବ୍ ଦ୍ରୁତ ଗତିରେ ଆଗକୁ ଦଉଡ଼ି-ଗଲା । ଗଳିରୁ ଗଳିକୁ ପାର ହୋଇ ସେ ଯାଇ ଗୋଟିଏ ଘର ଭିତରେ ପଶିଯିବା ମୁଁ ଦେଖି ପାରିଲି । ମୁଁ ତା' ପଛେ ପଛେ ଅନୁସରଣ କରି ସେହି ଘରର ପ୍ରବେଶ ପଥରେ ଦୁଇ ପଟେ ଦୁଇଜଣ ଯୁବତୀ ନାରୀଙ୍କୁ ଅପେକ୍ଷାରେ ଥିବା ମଧ୍ୟ ଦେଖିଲି । ପିଲାଟି ସେ ଦୁହିଁଙ୍କ ମଧ୍ୟରେ ଚାଲି ଚାଲିଯାଇଥିଲା । ମୁଁ ମଧ୍ୟ ଏକ ଧ୍ୟାନରେ ଠିକ୍ ସେଇ ପିଲା ପରି ସେଇ ଦୁଇଜଣ ସ୍ତ୍ରୀଙ୍କ ମଧ୍ୟରେ ପ୍ରବେଶ କରି ଆଗକୁ ଯିବାକୁ ବସିଛି, ସେମାନେ ମୋତେ ଅଟକାଇ ମୋର ପାଦ ଧୌତ କରି ପୋଛିଦେଲେ ଓ ମୋତେ ପ୍ରଣାମ କଲେ । ମାମାନେ ଓ ଘରର ଅନ୍ୟମାନେ ମୋତେ ଖୁବ୍ ଭକ୍ତି ସହକାରେ ଆସନରେ ବସାଇଲେ ଓ ରୁଟି, ଆଚୁର ସହ ବିବିଧ ଖାଦ୍ୟ ସାମଗ୍ରୀ ପରିବେଷଣ କଲେ । ପଂଖା ଝୁଲାଇ ଏକ ପ୍ରେମପୂର୍ଣ୍ଣ ପରିବେଶ ମଧ୍ୟରେ ମୋତେ ଭୋଜନ କରାଇ ଆପ୍ୟାୟିତ କଲେ ଓ ଏକ ଟଙ୍କା ଦକ୍ଷିଣା ଦେଇ ବିଦାୟ ଦେଲେ ।

## ରାସଲୀଳାର ରଙ୍ଗ

ଦିନେ ସନ୍ଧ୍ୟାରେ ରାସଲୀଳା ଦେଖିବାକୁ ଗଲି । ବୃନ୍ଦାବନ ଧାମରେ ଏପରି କୃଷ୍ଣଲୀଳାଭିନୟ ନିତ୍ୟ ଲାଗି ରହିଥାଏ । ଦୁଇଜଣ ପୁଅପିଲା ବେଶଭୂଷା ପରିହିତ ହୋଇ ଆସି କୃଷ୍ଣଚରିତ ଅଭିନୟ କରନ୍ତି । ଦର୍ଶକ ଦଳ ଅର୍ଥାତ୍ ଗୃହପାଖଶହ ଜଣ ସାଧୁ ଓ ଗୃହସ୍ଥ ତାଙ୍କୁ ଭଗବାନ ଜ୍ଞାନରେ ପ୍ରଣାମ କରନ୍ତି । ଅଭିନେତାଙ୍କୁ ମିଠାଇ ଖାଇବାକୁ ଦିଆଯାଏ । ତାଙ୍କର ପଦସେବା ଓ ଗୃମର ଆଳଟ ଲାଗି କରାଯାଏ । ସତେ ଯେପରି ଭଗବାନ ସ୍ଥୂଳ ରୂପରେ ଆବିର୍ଭୂତ । ମୋ ମନରେ ଏହି ସୁଆଙ୍ଗ ଦେଖି ପ୍ରଥମେ ସନ୍ଦେହ ଜାତ ହେଲା । ଭାବିଲି ଏସବୁ ନିହାତି ବୋକାମି । ଅଭିନେତା ପିଲାଙ୍କୁ ଭଗବାନ ବୋଲି ଚିନ୍ତାକଲେ ମନୁଷ୍ୟ ସତେ କଣ ଦିବ୍ୟଲୀଳାରସ ଆସ୍ୱାଦନ କରିପାରେ ? ମୋର ପରିସ୍ଥ ଭାବ ଦେଖି ମୋ ସଙ୍ଗୀ ନାଗା-ସାଧୁ ଆକ୍ଷେପ କଲେ । ତାଙ୍କର ବକ୍ତବ୍ୟ ଥିଲା, କାହାରି ଭାବକୁ ନଷ୍ଟ କରିବା ଅନୁଚିତ । କିଏ କେଉଁ ଉପାୟରେ ଈଶ୍ୱରୀୟ ଲୀଳାରସ ମାଧୁର୍ଯ୍ୟ ପାନ କରୁଛି, ସେକଥା ସମ୍ବନ୍ଧରେ ନିର୍ଣ୍ଣୟ କରିହେବ ନାହିଁ । ତାଙ୍କର ଏପରି ମତାମତ ଜ୍ଞାତ ହୋଇ ଏବଂ ଥରକୁ ଥର ପିଲାଙ୍କ ରାସ ଅଭିନୟ ଓ ଦର୍ଶକଙ୍କର ଭାବୋନ୍ମାଦ ଦେଖି ମୋ ନିଜର ଭାବ କ୍ରମେ ଗାଢ଼ ହେବାକୁ ଲାଗିଲା । ଥରେ ଭୋରର ଗୁରୁଟା ବେଳେ ସ୍ନାନ କରି ଯାଉଥିବା ରାସ୍ତାରେ ଦେଖିଲି ଯେ ସେଇ ଦୁଇଟି ପିଲା ଆମ୍ବ ତୋଟାରେ ନାଚୁଛନ୍ତି । ସଙ୍ଗୀ ନାଗାସାଧୁଙ୍କୁ ଏହା ଦେଖିବାକୁ କହିଲି, କିନ୍ତୁ ସେ ଏହା ଦେଖି-ପାରନ୍ତେ କପରି ? ମୋର ଅନୁଭୂତି ଶୁଣି ସେ କହିଲେ, 'ତୁମକୋ ରଙ୍ଗ ଲାଗ୍‌ଗୟା ହୈ ।' ଭାବର ଗାଢ଼ ମୂର୍ତ୍ତିହିଁ ଭଗବାନ । କଥାରେ ଅଛି, 'ଦେବତା କାଠରେ ବା ପାଷାଣରେ ନ ଥାନ୍ତି, ଭାବରେ ହିଁ ଭଗବାନ ବିଦ୍ୟମାନ, ଭାବହିଁ ତାଙ୍କର ଉପାଦାନ, ଭାବହିଁ କାରଣ ।'

## ଓଡ଼ିଶା ଯାତ୍ରା

ବୃନ୍ଦାବନରୁ ଫେରି ଚନ୍ଦନକୋଣା ରୋଡ ନିକଟସ୍ଥ ପଲାଶଗୃପୁଡ଼ୀ ଆଶ୍ରମକୁ ଆସିଲି । ହରିଦ୍ୱାର କୁମ୍ଭମେଳାରେ କଟକର ଗୁରୁଭ୍ରାତା ଶ୍ରୀଯୁକ୍ତ

କୃଷ୍ଣଗୋପାଳ ମୁଖାର୍ଜୀଙ୍କ ସହଧର୍ମିଣୀ ଶ୍ରଦ୍ଧେୟା ଗଙ୍ଗା ମା ମେଳାରୁ ଫେରି କଟକ ବୁଲିଯିବା ପାଇଁ ଅନୁରୋଧ କରିଥିଲେ । ୧୩୫୭ ସାଲ (୧୯୫୦ ମସିହା) ଶ୍ରାବଣ ମାସ ବେଳକୁ ମୁଁ ପ୍ରଥମ କଟକ ଆସି କୃଷ୍ଣଗୋପାଳଦାଙ୍କ ବକ୍ସିବଜାର ବାସଭବନରେ ଅବସ୍ଥାନ କଲି । କୃଷ୍ଣଗୋପାଳ ମୁଖାର୍ଜୀ ଠାକୁରଙ୍କର ଅନ୍ୟତମ ପ୍ରବୀଣ ଶିଷ୍ୟ । ଠାକୁରଙ୍କ ଆଶ୍ରିତ ସାଧୁ, ସନ୍ନ୍ୟାସୀ ତଥା ଗୃହୀ ଭକ୍ତଙ୍କ ପ୍ରତି ତାଙ୍କର ଅନୁରାଗ ଅପରିସୀମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେକେହି ଜୟଗୁରୁ କହି ତାଙ୍କ ଘରେ ଉପସ୍ଥିତ ହେଲେ ଉଭୟ ଶ୍ରୀ ମୁଖାର୍ଜୀ ଓ ଗଙ୍ଗାମାଙ୍କର ବିଶେଷ ପ୍ରୀତିଭାଜନ ହୋଇପାରୁଥିଲେ । କୃଷ୍ଣଗୋପାଳଙ୍କ ଘରେ ମୋର ଖୁବ୍ ଅଭ୍ୟର୍ଥନା ହେଲା ଏବଂ ଓଡ଼ିଆ ଭାଷା ଶିକ୍ଷା କରିବା ସୁଯୋଗ ମିଳିଲା ।

କଟକସ୍ଥ ମାଛୁଆବଜାର ମଣ୍ଡପ ପାଖରେ ରହୁଥିବା ଜଣେ ଅବସରପ୍ରାପ୍ତ ବଙ୍ଗୀୟ ଭଦ୍ରଲୋକଙ୍କ ଘରେ ଶ୍ରୀ ଶ୍ରୀ ରାମଠାକୁରଙ୍କ ଶିଷ୍ୟ ଓ ଅନ୍ୟାନ୍ୟ ଧର୍ମପ୍ରାଣ ଭକ୍ତଙ୍କର ଗୋଟିଏ ପାଠଚକ୍ର ବସୁଥାଏ । ଏଠାରେ ନାନା ଧର୍ମପ୍ରସଙ୍ଗ ଆଲୋଚିତ ହୁଏ ଓ ଶାସ୍ତ୍ରପୁରାଣ ତଥା ଶ୍ଳୋକାର୍ଥ ଚର୍ଚ୍ଚା କରାଯାଏ । ପ୍ରତ୍ୟେକ ଶ୍ଳୋକର ବିଭିନ୍ନ ଅର୍ଥ ପ୍ରତିପାଦିତ ହେବା ପରେ ମୋତେ ତାର ଶେଷ ମୀମାଂସା କରିବାକୁ ପଡ଼େ ।

ଥରେ ସେଠାରେ ଗୋଟିଏ ଧର୍ମସଭାର ଆୟୋଜନ କରାଗଲା । ସାଧୁମାନଙ୍କ ପ୍ରବଚନ ଓ ନାମକୀର୍ତ୍ତନର ବ୍ୟବସ୍ଥା କରାଯାଇଥାଏ । ପୁରୀର ଜଣେ ବକ୍ତା ଆମନ୍ତ୍ରିତ ହୋଇଥାଆନ୍ତି । ମୋତେ ମଧ୍ୟ ସଭାରେ ଭାଷଣ ଦେବାକୁ ଅନୁରୋଧ କରାଯାଇଥାଏ । ଭାଷଣ ଦେବାକୁ ଅକ୍ଷମତା ପ୍ରକାଶ କରି ସଭାରେ ଯୋଗ ଦେବାକୁ ମୁଁ ଅସମ୍ମତ ହେଲି । କିନ୍ତୁ କେତେକ ଲୋକ ଆସି ମୋତେ କଟକଚଣ୍ଡୀଙ୍କ ପାଖକୁ ବୁଲିଯିବା କଥା କହିଲେ ଓ ରିକ୍ସାକୁ ଦୁରାଇ ସେଇ ମାଛୁଆ ବଜାର ସଭା ସ୍ଥଳରେ ପହଞ୍ଚାଇଦେଲେ । ସଙ୍ଗେ ସଙ୍ଗେ ମୋର ଉପସ୍ଥିତି ସଭାରେ ଉଦ୍‌ଘୋଷିତ ହୋଇଗଲା । ଅଗତ୍ୟା ମୁଁ ଯାଇ ସଭା ମଣ୍ଡପରେ ଉପବିଷ୍ଟ ହେଲି । ପୁରୀରୁ ଆଗତ ପ୍ରବଚନଦାତା ଜଣେ ଗୃହସ୍ଥ

ହୋଇଥିବାରୁ ଏବଂ ମୁଁ ଭାଷଣ ଦେବାର ପକ୍ଷପାତୀ ନ ଥିବା ଦୃଷ୍ଟେ ବ୍ରହ୍ମଶ୍ରୀ ସାଧୁଙ୍କୁ ସମ୍ମାନିତ କରିବା ପାଇଁ ମୋତେ ସଭାପତିଭାବେ ବୃତ କରାଗଲା । ମୋର ଭାଷଣ ଦେବା ଅଭ୍ୟାସ ଏବଂ ଇଚ୍ଛାବି ନ ଥିବା କଥା ଖୁବ୍ ବିନୀତ ଭାବେ ବ୍ୟକ୍ତ କରି କେବଳ ନୀରବ ଦ୍ରଷ୍ଟା ସଭାପତିରୂପେ ବସି ରହିବି ବୋଲି ପ୍ରକାଶ କଲି । ସଭାରମ୍ଭରେ ଶ୍ରୀମଦ୍ ଭଗବଦ୍ଗୀତାରୁ କିଛି ଅଂଶ ପାଠ କରାଗଲା । ତାପରେ ପ୍ରଧାନ ବକ୍ତା ନିଜ ଭାଷଣ ପ୍ରସଙ୍ଗରେ ଜଗନ୍ନାଥ କିପରି ପୂର୍ଣ୍ଣ ବ୍ରହ୍ମ ଓ ଶ୍ରେଷ୍ଠ ବୈଷ୍ଣବ ଅବତାରରୂପେ କଳିକାଳରେ ସମସ୍ତଙ୍କର ଉପାସ୍ୟ, ତେଣୁ ତାଙ୍କର ପୂଜା ଉପାସନା କଲେ ମୁକ୍ତି ମିଳିପାରିବ, ଏହି ଆଲୋଚନା କରି ତାଙ୍କର ବକ୍ତବ୍ୟ ଶେଷ କଲେ । ଏଥିକରେ ଶ୍ରୋତାଙ୍କର ସନ୍ତୋଷ ଲାଭ ହେଲା ନାହିଁ । ସଭାପତିଙ୍କ ମୁହଁରୁ କିଛି ଶୁଣିବା ପାଇଁ ସମସ୍ତେ ଜିଦ୍ ଧରି ବସିଲେ । ଖୁବ୍ ପାଟିତୁଣ୍ଡ ହେବାକୁ ଲାଗିଲା ।

## ଅଭିଭାଷଣ

ବାଧ୍ୟହୋଇ ମୁଁ ଭାଷଣ ଦେବାପାଇଁ ଗୋଟିଏ ଭାବ ସୃଷ୍ଟି କଲି ଓ କହିବାକୁ ଆରମ୍ଭ କଲି । ପ୍ରଥମେ ଗୀତାପାଠର ମହିମା ପ୍ରକାଶ କରିସାରି ପ୍ରଧାନ ବକ୍ତାଙ୍କର ପ୍ରଶଂସା ଶୁଣାଇଲି । ମୁଁ କହିଲି, "ବକ୍ତାଙ୍କ ଭାଷଣ ଖୁବ୍ ଉଚ୍ଚକୋଟୀର ହୋଇଛି, ଖୁବ୍ ଭକ୍ତିମାନ୍ ଏବଂ ଜ୍ଞାନୀ ଲୋକ ବ୍ୟତୀତ ପ୍ରଧାନ ବକ୍ତା ମହାଶୟଙ୍କ ଭାଷଣର ପ୍ରତିପାଦ୍ୟ ବିଷୟକୁ ହୃଦୟଙ୍ଗମ କରିବା ସହଜ ନୁହେଁ ।" ତାପରେ ଦେବଦେବୀଙ୍କ କଥାକୁ ପଛକୁ ରଖି ମୁଁ ଯୋଗର ବ୍ୟାଖ୍ୟା ଆରମ୍ଭ କଲି । ମନୁଷ୍ୟର ଇନ୍ଦ୍ରିୟ ଓ ମନୋନିଗ୍ରହ ପାଇଁ ବାୟୁ ବା ଶ୍ୱାସ ନିୟନ୍ତ୍ରଣର ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କଲି । ପୁଣି କହିଲି ଯେ, ଏ ସଭାରେ ଅନେକ ଶିକ୍ଷିତ ଏବଂ ଗତାନୁଗତିକଭାବେ ଦୀକ୍ଷିତ ବ୍ୟକ୍ତି ହୁଏତ ଥିବେ, କିନ୍ତୁ ପ୍ରକୃତ ଜ୍ଞାନୀ ଓ ଭଗବଦ୍ଭକ୍ତ ତତ୍ତ୍ୱବିତ୍ କେତେଜଣ ଅଛନ୍ତି ? କେତେଜଣଙ୍କର ସାଧନ ଭଜନରେ ପ୍ରକୃତ ଅନୁରାଗ ରହିଛି ? ପୁଣି କେତେଜଣ ନିୟମିତ ସାଧନ ଭଜନ କରନ୍ତି ? ସଂସାରର କର୍ମ କୋଳାହଳ ମଧ୍ୟରେ ବାୟୁ ଓ ମନକୁ ସଂଯତ କରି କ୍ୱଚିତ୍ ସାଧକ ଯୋଗସ୍ଥ

ହୋଇ ରହିପାରନ୍ତି । ଏପରି ଯୋଗୀ ନ ହେଲେ ଦେବତା ଓ ଈଶ୍ୱରଙ୍କ ରହସ୍ୟ ପରିଜ୍ଞାତ ହେବା କିମ୍ବା ଭଗବାନଙ୍କଠାରେ ପ୍ରକୃତପକ୍ଷେ ଅନୁଗତ ହୋଇପାରିବା ଅସମ୍ଭବ । ଏପରିଭାବେ ମୋର ଭାଷଣ ପ୍ରାୟ ଘଣ୍ଟାଏ ସମୟ ଚାଲିଥିବ । ଲୋକେ ମନ୍ତ୍ରମୁଗ୍ଧ ଭଳି ଶୁଣୁଥାଆନ୍ତି । ତେଣିକି ମୋର ବକ୍ତବ୍ୟ ଶେଷ ପର୍ଯ୍ୟାୟକୁ ଆସିଗଲା । ସର୍ବଶେଷରେ ମୁଁ କହିଲି ଯେ, ଆପଣମାନଙ୍କୁ ଯେ ଏହି ଭାଷଣ ଶୁଣାଇଲେ ସେ ସମ୍ପ୍ରତି ଏଠାରୁ ଚାଲିଯାଇଛନ୍ତି । ଆପଣଙ୍କ ପ୍ରଶ୍ନର ଉତ୍ତର ଆଉ କିଏ ଦେବ ? ଏହି ଦୀର୍ଘ ପ୍ରବଚନ ଶୁଣାଇବାପାଇଁ ମୋ ଦେହ ଏତେ ସମୟ ଧରି ଏକ ମାଧ୍ୟମରୂପେ କାମ କରୁଥିଲା । ମୁଁ ଜୀବନରେ କସ୍ମିନ୍‌କାଳେ କୌଣସିଠାରେ ଭାଷଣ ଦେଇନାହିଁ । ମୁଁ ତହିଁରେ ଖାଲି ଅନଭ୍ୟସ୍ତ ନୁହେଁ, ଅକ୍ଷମ ମଧ୍ୟ । ମୁଁ କେଉଁଠାରେ ରହେ ବୋଲି ସଭାସ୍ଥଳରେ ପ୍ରଶ୍ନ ହେବାରୁ କୃଷ୍ଣଗୋପାଳଙ୍କ ବାସଭବନ ଠିକଣା ଜଣାଇ - ଦେଲି ।

ସଭାଭଙ୍ଗ ପରେ ଫେରିବାକୁ ରାତି ସାଢ଼େ ଦଶଟା ବାଜିଲା । ଆଗରୁ ନ ଜଣାଇ ଏତେ ବିଳମ୍ବରେ ଫେରିବାରୁ ଗଙ୍ଗାମା ଖୁବ୍ ଶାସନ କଲେ । ପରଦିନ ସକାଳେ କୃଷ୍ଣଗୋପାଳଙ୍କ ପରିଚିତ କେତେଜଣ ଅଫିସର ଆସି ମୋ ସହିତ ସାକ୍ଷାତ୍ କଲେ । ଆହୁରି ଦଶ ବାରଜଣ ସାଧନେଚ୍ଛୁ ଭକ୍ତ ମଧ୍ୟ ଆସି ପହଞ୍ଚିଗଲେ । ଜପ, ଧ୍ୟାନ ଇତ୍ୟାଦିର କୌଶଳ ପ୍ରସଙ୍ଗରେ ଆଲୋଚନା ହେଲା । ସମସ୍ତେ ମୋଠାରୁ ସାଧନୋପଦେଶ ଓ ଶିକ୍ଷାଲାଭ କରି ଫେରିଲେ । ଫଳରେ କଟକରେ ମୋର ଖ୍ୟାତି କିଛି ପରିମାଣ ବ୍ୟାପିଗଲା । ଜଣେ ସ୍ଥାନୀୟ ପଣ୍ଡିତ ମୋର ଯୋଗ ରହସ୍ୟ ସଂପର୍କିତ ଜ୍ଞାନ ଓ ପ୍ରଶଂସାବାଦରେ ଆକୃଷ୍ଟ ହୋଇ ଅପରେ ପାଠଚକ୍ରରେ ଆସି ପହଞ୍ଚିଲେ ଓ ଗୀତାର ପଞ୍ଚଦଶ ଅଧ୍ୟାୟ ପାଠ କରିବାକୁ ଆରମ୍ଭ କରିଦେଲେ । ସମସ୍ତେ ମୋତେ ପଚାରିଲେ ଯେ ଆପଣ ତ ଏହି ପଣ୍ଡିତଙ୍କୁ ଉତ୍ତର ଦେଉନାହାନ୍ତି ? ମୁଁ କହିଲି, "କାହିଁ, ପଣ୍ଡିତ ମହାଶୟ ତ କିଛି ପ୍ରଶ୍ନ କରି ନାହାନ୍ତି ।" ସେ ପଣ୍ଡିତ ଉତ୍ତର କଲେ, "ମୁଁ ଆପଣଙ୍କୁ ଗୀତାର ବ୍ୟାଖ୍ୟା ଶୁଣାଇବି, ଆପଣ ଶୁଣିବେ ନାହିଁ !" ମୁଁ ପଣ୍ଡିତ ମହାଶୟଙ୍କୁ ପଚାରିଲି, "ଗୀତା ତ ଆପଣଙ୍କ ଲେଖା ନୁହେଁ, ଗୀତାକୁ

ଅଶ୍ରଦ୍ଧ କର ଆପଣ ଯେଉଁ ପାଣ୍ଡିତ୍ୟର ପ୍ରଖ୍ୟାପନ କରୁଛନ୍ତି ତାର ସାର୍ଥକତା କେଉଁଠି ? ଆପଣ ଏତାବତ୍ ଅନ୍ନମୟ କୋଷରେ ହିଁ ଅଛନ୍ତି— ଊର୍ଦ୍ଧ୍ୱତନ ସ୍ତରର କଥା କାହୁଁ ଜାଣିବେ ?" ଏହା ଶୁଣି ପଣ୍ଡିତଙ୍କ ମନରେ ସାମ୍ୟଭାବର ସଞ୍ଚାର ହେଲା ।

କଟକନିବାସୀ ଠାକୁରପ୍ରେମୀ ମହାତ୍ମା ଭକ୍ତ ଶ୍ରୀ ଉଦ୍ଧବ ସାହୁ କୃଷ୍ଣ ଗୋପାଳଦାଙ୍କ ଘରକୁ ପ୍ରାୟ ଯିବା ଆସିବା କରୁଥାଆନ୍ତି । ତାଙ୍କ ସଙ୍ଗେ ପରିଚୟ ହେଲା ପରେ ସେ ମୋତେ ନାନା ତୀର୍ଥସ୍ଥାନ ଓ ମନ୍ଦିର ଦେଖାଇବାକୁ ନେଲେ । ଥରେ ମହାନଦୀ କୂଳ ଗଡ଼ଗଡ଼ିଆ ଘାଟ ମହାଦେବଙ୍କ ମନ୍ଦିରକୁ ଆମେ ଯାଇଥାଉ । ଜଣେ ସାଧୁଙ୍କ ସଙ୍ଗେ ସେଠାରେ ସାକ୍ଷାତ୍ ହେଲା । ସେ ମହାଶୟ ନାନା ପ୍ରକାର ଔଷଧ ବିତରଣ କରୁଥାନ୍ତି । ସାଧୁ ମୋତେ ପ୍ରଣାମ କଲେ ଓ ପଞ୍ଚପାଣ୍ଡବଙ୍କ ସମ୍ବନ୍ଧରେ ପୁରାଣ ପ୍ରସଙ୍ଗ ଶୁଣାଇଲେ । ତାଙ୍କ ସଙ୍ଗେ ଆଳାପ କଲାବେଳେ ମୋର ଗୋଟିଏ ଦ୍ୱାର ଖୋଲିଗଲା, ଅର୍ଥାତ୍ ଅନେକ ଦିନୁ ବଦ୍ଧମୂଳ ସଂଶୟ ଦୂର ହୋଇ ମୋର ଜ୍ଞାନୋଦୟ ହେଲା । ଆନନ୍ଦାତିଶଯ୍ୟରେ ମୁଁ ସେ ସାଧୁଙ୍କୁ ଆଲିଙ୍ଗନ କଲି ।

ଆଉ ଥରେ ଆମେ ପୁରୀ ଗିରନାରବନ୍ତଠାରେ ରହୁଥିବା ଲଙ୍ଗୁଟୀ ବାବାଙ୍କୁ ଦର୍ଶନ କରିବାକୁ ଗଲୁ । ସେ ବାବା ମୌନୀ ହୋଇ ରହୁଥାଆନ୍ତି । ସେ ଆମକୁ ଦେଖି ବସିବାକୁ ଆସନ ଦେଲେ ଓ ନିଜେ ଖଣ୍ଡିଏ ଆସନରେ ବସିଲେ । ପ୍ରାୟ ଅଧଘଣ୍ଟା କାଳ ଉଭୟେ ଉଭୟଙ୍କୁ ଚାହିଁ ରହିଲୁ । ଶେଷରେ 'ଠିକ୍ ହୈ, ସୁଖୀ ଠିକ୍ ରସ୍ତା' କହି ସେ ଉଠି ଚାଲି ଗଲେ । ଆମେ ସେଠାରୁ ଫେରିଲୁ ।

## କ୍ଷୀରୋଦ ନାଥ ସିଂହ

ଭାଦ୍ରବ ମାସ ହେବ— ଓଡ଼ିଶାର ବିଭିନ୍ନ ନଦୀରେ ବନ୍ୟା ଆସି କଟକ ଜିଲ୍ଲାର ଉପକୂଳବର୍ତ୍ତୀ ସମତଳ ଅଞ୍ଚଳକୁ ପ୍ଲାବିତ କରିଥାଏ । ବନ୍ୟା

ଦେଖିବାକୁ ମୋ ମନରେ ଆଗ୍ରହ ହେବାରୁ କୃଷ୍ଣଗୋପାଳଙ୍କ ସଙ୍ଗେ ପଞ୍ଚାମୁଣ୍ଡାଇ ଯାଯାକଲୁ । ରାସ୍ତାରେ ଅସୁରେଶ୍ୱର ପଡ଼ିଲା । ଏଠାରେ ଆମ ଗୁରୁଦେବଙ୍କ ଜଣେ ପ୍ରିୟ ଶିଷ୍ୟ ଶ୍ରୀ କ୍ଷୀରୋଦନାଥ ସିଂହଙ୍କ ନିବାସ । ତାଙ୍କ ସଙ୍ଗେ ସାକ୍ଷାତ କରିବାକୁ ଦୁହେଁ ସେଠାକୁ ଗଲୁ । ଆମକୁ ଦେଖି କ୍ଷୀରୋଦ ନାଥ ଓ ତାଙ୍କ ସ୍ତ୍ରୀଙ୍କ ଆଗ୍ରହ କହିଲେ ନମସ୍କାରେ । ଏହାର ଗୋଟିଏ କାରଣ କ୍ଷୀରୋଦ ଭାଇଙ୍କ ସ୍ତ୍ରୀ ପୂର୍ବ ରାତ୍ରରେ ଠାକୁରଙ୍କୁ ସ୍ୱପ୍ନ ଦେଖିଥିଲେ । ସ୍ୱପ୍ନରେ ଶ୍ରୀ ଶ୍ରୀ ଠାକୁର ନିର୍ଦ୍ଦେଶ ଦେଇଥିଲେ ଯେ, କାଲି ତୋ ଘରକୁ ଯେଉଁ ସାଧୁ ବାବା ଆସିବେ ତାଙ୍କୁ ମୋଭଳି ଦେବାଜନ୍ ଓ ଶ୍ରଦ୍ଧା ଭକ୍ତି କରିବୁ । ସେଠାରୁ କୃଷ୍ଣ ଗୋପାଳ ଭଦ୍ରକ ଫେରିଗଲେ । କିନ୍ତୁ ସ୍ୱାମୀ ସ୍ତ୍ରୀ ଦୁହେଁ ମୋତେ ତାଙ୍କ ଘରେ ଆଉ କିଛିଦିନ ରହିବାକୁ ଅନୁରୋଧ କଲେ । ସେମାନଙ୍କ ଅନୁରୋଧ ରକ୍ଷାକରି ମୁଁ କହିଲି, "ତୁମେ ଯେତେଦିନ ଯାଏଁ ମୋତେ ନ ଛାଡ଼ିଛ ସେତେଦିନ ଯାଏଁ ମୁଁ ଏଠାରେ ରହିବି ।" ବେଶ୍ କେତେଦିନ ସେଠାରେ କଟିଗଲା । ତାଙ୍କ ଘରେ ଥିବା ଗୋଟିଏ ବାଘ ଚମଡ଼ା ଦେଖି ସେ'ଟି ପାଇବାକୁ ମୋର ଅଗ୍ରହ ଜାଗିଲା । ସେଥିରେ ବସିଲେ ମୋର ଅନିଷ୍ଟ ହେବା ଆଶଙ୍କା କରି ସେମାନେ ମୋତେ ସେଥିରେ ବସିବାକୁ ବାରଣ କରୁଥିଲେ । କିନ୍ତୁ ମୋର ବିଶେଷ ଆଗ୍ରହ ଦେଖି ମୋତେ ସେ'ଟି ବ୍ୟବହାର କରିବାକୁ ଦେଲେ । ସେ ଚମଡ଼ାଟି ଉପରେ ମୁଁ ଶୁଆବସା କଲି । ପୁଣି ତା'ଉପରେ ବସି ପ୍ରେମିକ-ଗୁରୁଙ୍କ ତତ୍ତ୍ୱ ଆଲୋଚନା କଲି । କିଛିଦିନ ଏପରି କଲା ପରେ ମୋର ଦେହରେ 'ପଟାପିଟା' ଛଉ ଭଳି ଚିହ୍ନ ଦେଖାଦେଲା । ଏହା ଦେଖି କ୍ଷୀରୋଦ ସିଂହ ଓ ତାଙ୍କ ସ୍ତ୍ରୀ ବିଚଳିତ ହୋଇ ପଡ଼ିଲେ । ମୁଁ ତାଙ୍କୁ ଆଶ୍ୱସ୍ତକରି ଏହାର କାରଣ ଚିନ୍ତା କଲି । ଜଣାଗଲା ଯେ, ବାଘଚମଡ଼ାର ସ୍ପର୍ଶ ଓ ପ୍ରେମତତ୍ତ୍ୱ ପରି କୋମଳ ପ୍ରସଙ୍ଗର ଚର୍ଚ୍ଚା ପରସ୍ପରବିରୋଧୀ ହୋଇଥିବାରୁ ସମ୍ଭବତଃ ଏପରି ବିକାର ଉତ୍ପନ୍ନ ହୋଇଛି । ତା'ପରେ ଚମଡ଼ା ଉପରେ କମ୍ବଳ ବିଛାଇ କିଛିଦିନ ବସିବାକୁ ଆରମ୍ଭ କରିଛି, ଦେହ ପୂର୍ବପରି ପରିଷ୍କାର ହୋଇଗଲା ।

---

# ଚତୁର୍ଦ୍ଦଶ ଅଧ୍ୟାୟ

## ପରଂପରା

### ମନୁଷ୍ୟ ଗୁରୁ

ଅସୁରେଶ୍ୱରଠାରେ ରହୁଥିବାବେଳେ କେତେକ ଭକ୍ତଙ୍କ ନିମନ୍ତ୍ରଣକ୍ରମେ ସ୍ଥାନୀୟ ନୀଳାଚଳ ସାରସ୍ୱତ ସଂଘ ବୈଠକରେ ଯୋଗ ଦେଇଥିଲି । ଭକ୍ତ ଭାଇ ଜାଣିବାକୁ ଚାହିଁଲେ ଯେ ଶ୍ରୀ ଶ୍ରୀ ଠାକୁରଙ୍କଠାରୁ ସ୍ୱପ୍ନରେ ମନ୍ତ୍ର ପାଇଲେ ଆଉ ପୁଣି ସ୍ଥୂଳ ଗୁରୁକରଣର ଆବଶ୍ୟକତା ଅଛି କି ନା । ମୁଁ ତାନ୍ତ୍ରିକ ଗୁରୁ ଗ୍ରନ୍ଥ ପ୍ରତି ନିର୍ଦ୍ଦେଶ କରି ସ୍ଥୂଳଗୁରୁକରଣ ସାଧାରଣଭାବେ ଅନିବାର୍ଯ୍ୟ ବୋଲି ପ୍ରମାଣ କଲି । ତାନ୍ତ୍ରିକଗୁରୁରେ ଉଲ୍ଲେଖଥିବା ଗୁରୁ କରଣ ଓ ଦୀକ୍ଷା ପଦ୍ଧତି ପ୍ରସଙ୍ଗ ପାଠକରି ସେ ମହାଶୟ ତାଙ୍କର ସଂଘ ନାୟକ ଓ ଅନ୍ୟମାନଙ୍କ ସଙ୍ଗେ ଆଲୋଚନା କଲେ । ଉତ୍କଳ ଭାଷାରେ ଶ୍ରୀ ଶ୍ରୀ ଠାକୁରଙ୍କ ଜୀବନୀ ପ୍ରକାଶିତ ହେବା ପରଠାରୁ ଅନେକ ସାଧନପ୍ରେମୀ ଭକ୍ତ ଗୁରୁକରଣ ଓ ଦୀକ୍ଷା ପ୍ରସଙ୍ଗରେ ଉଦ୍‌ବୁଦ୍ଧ ହୁଅନ୍ତି । ଶ୍ରୀ ଶ୍ରୀ ଠାକୁରଙ୍କ 'ଏକ ବହୁପ୍ରଚାରିତ ବାଣୀ 'ମୁଁ ଗୁରୁଭାର କାହାକୁ ଅର୍ପଣ କରିନାହିଁ, ମୁଁ ନିଜେ ଗୁରୁ ରହିଲି'ର ଆଶ୍ରୟ ନେଇ ଅନ୍ୟ ସ୍ଥୂଳ ଗୁରୁଙ୍କ ଆବଶ୍ୟକତା ଅନେକ ଅନୁଭବ କରୁନଥାନ୍ତି । ସ୍ଥୂଳଗୁରୁକରଣର ପକ୍ଷପାତୀ ହୋଇ ମୁଁ ଯୁକ୍ତି କଲି ଯେ, ସ୍ୱୟଂ ଶ୍ରୀ ଶ୍ରୀ ଠାକୁର ଯେତେବେଳେ ଶାସ୍ତ୍ରବିଧି ଅନୁସରଣପୂର୍ବକ ପ୍ରତି ସଦ୍‌ଗୃହସ୍ଥ ଓ ସାଧନକାମୀ ବ୍ୟକ୍ତି ପାଇଁ ଗୁରୁକରଣ ଓ ଦୀକ୍ଷାରୂପକ କଲ୍ୟାଣକର ବିଧି ପ୍ରବର୍ତ୍ତନ କରିଯାଇଛନ୍ତି, ତାଙ୍କ ମହାସମାଧି ପରେ ଏହା ଲୋପ ହେବ କିପରି ? ଆପଣା ଜୀବଦ୍ଦଶାରେ ସେ ଯେତେବେଳେ ସ୍ଥୂଳ ମନୁଷ୍ୟ ଗୁରୁଙ୍କର ଆବଶ୍ୟକତା ପ୍ରଚାର କରିଗଲେ ଓ ଜଗଦ୍‌ଗୁରୁଙ୍କ ମହତ୍ତ୍ୱ

ଇଚ୍ଛା ଫଳରେ ସେ ନଜେ ସେହ୍ୱ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ, ପରବର୍ତ୍ତୀ କାଳରେ ମନୁଷ୍ୟଗୁରୁ ଅନାବଶ୍ୟକବୋଲି କହିବା ନତାନ୍ତଭ୍ରାନ୍ତିପୂର୍ଣ୍ଣ । ସ୍ୱପ୍ନରେ ମନ୍ତ୍ରଲଭ କଲେହେଁ ଉପଯୁକ୍ତ ଗୁରୁଙ୍କଠାରୁ ଏହା ପୁନର୍ବାର ଦୀକ୍ଷା ମାଧ୍ୟମରେ ଗ୍ରହଣକର ପୁରଶ୍ଚରଣ କରିବାକୁ ହୁଏ । ମନୁଷ୍ୟ ଗୁରୁଙ୍କର ସେବା ଓ ପ୍ରୀତି ସଂପାଦନ ମାଧ୍ୟମରେ ତାଙ୍କର ଆଶୀର୍ବାଦ ଲଭ ନ କଲେ ସିଦ୍ଧିଲଭ କରିବା ଅସମ୍ଭବ । କେବଳ ବଶେଷ ଅବସ୍ଥାରେ ବଟପତ୍ରରେ ଲଖିତ ସ୍ୱପ୍ନଲବ୍ଧ ମନ୍ତ୍ର ବଧିପୂର୍ବକ ସ୍ଥାପିତ ଘଟରେ ନବେଶ କର ଗ୍ରହଣ କରାଯାଏ । ଏହା ଶ୍ରୀ ଶ୍ରୀ ଠାକୁରଙ୍କ ଲଖିତ ତାନ୍ତ୍ରିକ ଗୁରୁରେ ସ୍ପଷ୍ଟଭାବେ ଲଖିତ ହୋଇଅଛି ।

ମୋର ଏହି ସ୍ୱାଧୀନ ମତବାଦ ଅନେକଙ୍କର ମନୋମତ ନ ହେବାରୁ ଶ୍ରୀବେଦନାଥ ସିଂହଙ୍କ ଘରେ ମୁଁ ଅଧିକ ଦନ ଅବସ୍ଥାନ କରିବା ସମ୍ଭବ ହେଲନାହିଁ । ସେମାନେ ମୋତେ ବହୁଦନ ସେଠାରେ ରଖିବାକୁ ଇଚ୍ଛି ଥିଲେ ହେଁ ଅବସ୍ଥାନ୍ତର ଯୋଗୁଁ ସେ କୃଷ୍ଣ-ଗୋପାଳଙ୍କୁ ମୋର କଟକ ଫେରଯିବା ସମ୍ବାଦ ଜଣାଇଲେ । ପରେ ପରେ ମୁଁ କଟକ ଫେରଗଲି । ଏହା ସେ ବର୍ଷ କାର୍ତ୍ତିକ ମାସର ଘଟଣା ।

## କଟକବାସୀଙ୍କ ଦୀକ୍ଷା

କଟକ କାଳ୍ପାବାସୀ ଶ୍ରୀ ରସାନନ୍ଦ ମହାନ୍ତି ଓ ତାଙ୍କ ମାଉସୀ ପୁରୀ ଜଗନ୍ନାଥ ଦର୍ଶନ କରିବାକୁ ଯାଇଥିଲେ । ସେଠାରେ ସ୍ୱପ୍ନାବସ୍ଥାରେ ଶ୍ରୀ ଶ୍ରୀ ଠାକୁରଙ୍କୁ, ଜଗନ୍ନାଥଙ୍କୁ ଓ ମୋତେ ଏକତ୍ର ଦର୍ଶନ କର ମୋଠାରୁ ଦୀକ୍ଷା ଗ୍ରହଣ କରିବା ପାଇଁ ମନରେ ଅଭିଳାଷ ରଖିଲେ ଓ କଟକ ଫେର ଆସି ମୋତେ ଦୀକ୍ଷା ଦେବାପାଇଁ ଅନୁରୋଧ କଲେ । (ଉତ୍ସବ ସାହୁଙ୍କ ଭଳି ରସାନନ୍ଦ ମଧ୍ୟ କୃଷ୍ଣ ଗୋପାଳଙ୍କ ଘରକୁ ଯିବା ଆସିବା କରିବା ଫଳରେ ମୋ ସଙ୍ଗେ ତାଙ୍କର ଆଗରୁ ଆଳାପ ପରଚୟ ଥିଲା ।) ମୁଁ କନ୍ତୁ ଦୀକ୍ଷା ଦେବାକୁ ରାଜି ହେଉନଥିଲି । ଉତ୍ସବ ସାହୁ ଓ ଅନ୍ୟାନ୍ୟ ଭକ୍ତଗଣଙ୍କର

ନିର୍ବାଣାନନ୍ଦଶଙ୍କୁ ଶେଷରେ ବ୍ରହ୍ମାନନ୍ଦଙ୍କୁ ଓ ତା'ର ଏବଂ ଉତ୍ସବ ସାଧୁଙ୍କର ପରିବାରର କେତେକଙ୍କ ସମେତ ମୋଟ ଏଗାର ଜଣଙ୍କୁ ପ୍ରଥମଥର ପାଇଁ ଦୀକ୍ଷା ଦେଲି । ମାଘ ପୂର୍ଣ୍ଣିମାବେଳକୁ କୋଦ୍ରା ଠାରେ ଉତ୍କଳ ପ୍ରାଦେଶିକ ଭକ୍ତ ସମ୍ମିଳନୀ ଅନୁଷ୍ଠିତ ହେଲା । ତହିଁରେ ଯୋଗ ଦେଇ ସାରି ମୁଁ ଖଡକୁସମା ଆଶ୍ରମକୁ ଫେରିଗଲି ।

## ଜୀବନ ସଂଶୟ ?

ଆଦ୍ରା ଆଶ୍ରମାଧ୍ୟକ୍ଷ ଶ୍ରୀମତ୍ ବ୍ରହ୍ମାନନ୍ଦ ସରସ୍ୱତୀ ଖଡ଼କୁସମା ଆସିଥିଲେ । ତାଙ୍କ ଆଶ୍ରମରେ ଘର ତୋଳାଇବା କାମତଦାରଖ କରିବା ପାଇଁ ମୋତେ କୃଷ୍ଣାନନ୍ଦବାଲା କରି ସଙ୍ଗରେ ନେଇ ଗଲେ । ଆଦ୍ରା ଆଶ୍ରମରେ ୧୯୫୧ ମସିହା ପ୍ରାରମ୍ଭରୁ ୧୯୫୩ ପର୍ଯ୍ୟନ୍ତ ଅବସ୍ଥାନ କାଳରେ ଆଶ୍ରମର ଭିତ୍ତି ସ୍ଥାପନ, ମନ୍ଦିର ଓ ବାସଗୃହ ନିର୍ମାଣ କାର୍ଯ୍ୟ ପରିଚାଳନା ଦାୟିତ୍ୱରେ ରହିଲି । ଆଦ୍ରା ଆଶ୍ରମ ସଲଗ୍ନ ଜଙ୍ଗଲରେ ଡ଼କାୟତମାନଙ୍କ ବସତି ଥିଲା । ଥରେ ଡ଼କାୟତମାନେ ମୋତେ ଘେରିଯାଇ ସେମାନଙ୍କ ଅଧିକୃତ ଇଲାକା ଭିତରେ ଆଶ୍ରମ ନିର୍ମାଣ କରାଯାଉଥିବାରୁ ଖୁବ୍ ଆପତ୍ତି ଅଭିଯୋଗ କଲେ । ମୁଁ ସେମାନଙ୍କ ସର୍ଦ୍ଦାରଙ୍କ ସଙ୍ଗେ ଯୋଗାଯୋଗ କରି ବୁଝାଇ କହିଲି ଯେ, ଆମେମାନେ ସଂସାରତ୍ୟାଗୀ ସନ୍ନ୍ୟାସୀ, ଆଉ ସେମାନେ ଗୃହସ୍ଥ । ତେଣୁ ସେମାନଙ୍କର କର୍ତ୍ତବ୍ୟ ହେଲା ଯେ ସାଧୁଙ୍କ ସୁବିଧା ପାଇଁ ବରଂ ସେଇମାନେ କିଛିଦୂର ଜଙ୍ଗଲ ମଧ୍ୟକୁ ହଟିଯିବେ । ସୁଖର କଥା, ମୋର ଉପଦେଶକ୍ରମେ ସେମାନେ ଆଉ ଦୁଇ କିଲୋମିଟର ଦୂରକୁ ଚାଲିଗଲେ ।

ଆଦ୍ରାଠାରେ ଥିଲାବେଳେ ହଠାତ୍ ମୋର ମୃତ୍ୟୁର ପୂର୍ବାଭାସ-ଜଣା ଗଲା । ମନ ନିମ୍ନମୁଖୀ ହୋଇ ନିଜକୁ ବିଶେଷଭାବେ ଅସହାୟ ଲାଗିଲା । ଚାରିଆଡ଼ ଯେପରି ଶୂନ୍ୟ ଓ ଅର୍ଥହୀନ । ମୋର ହୋଇ ଯେପରି କେହି କେଉଁଠି ନାହିଁ ! ମାତ୍ର ଅବିଳମ୍ବେ ଏହି ଚିନ୍ତାକୁ ଜୋର ପୂର୍ବକ ଦୂରକୁ ଠେଲିଦେଇ ଗୃହନିର୍ମାଣ କର୍ମରେ ମନୋଯୋଗ କଲି । ପ୍ରାୟ ଏକମାସ କୌଣସି ରକମ ବିତିଲା, କିନ୍ତୁ ପୁଣି ପୂର୍ବପରି ମୃତ୍ୟୁ ଶଙ୍କା ଜାଗି ଉଠିଲା ।

ପୁଣି ସବୁକୁ ସଫଳ କରିବାକୁ ଚେଷ୍ଟାକଲି । ଏପରି ଅବସ୍ଥାରେ ଖାଦ୍ୟ ପାନ ପର୍ଯ୍ୟନ୍ତ ଅରୁଚିକର ବୋଧ ହେଲା । ରୁଟୀ ପର୍ଯ୍ୟନ୍ତ ଥରେ ଫୋପାଡ଼ି ଦେଲି । ଦିନେ ଜଣେ ମିସ୍ତ୍ରୀ ସଙ୍ଗେ କଥାବାର୍ତ୍ତା କରୁଛି, ଅଜ୍ଞାନ ହୋଇ ପଡ଼ିଲି । ଶହ ଶହ ଲୋକ ଦେଖିବାକୁ ଆସିଲେ । କିନ୍ତୁ ଆଶ୍ରମାଧ୍ୟକ୍ଷ ସ୍ୱାମୀଜୀ ଘରେ ଥିଲେ ଦେଖିବାକୁ ଆସିଲେ ନାହିଁ ବୋଲି ଶୁଣିବାକୁ ପାଇଲି । ଲୋକେ ଘିଅ ମାଲିସ କରି ମୋର ଚୈତନ୍ୟ ସମ୍ପାଦନ କଲେ । ତାପରେ ମୋତେ ସ୍ଥାନ ଜଗାଇଦିଆଗଲା । ମୁଁ କିନ୍ତୁ ଏକ ଦୃଷ୍ଟିରେ ଚାହିଁ ରହୁଥାଏ—ଯେପରି ଅର୍ଦ୍ଧ ବାହ୍ୟ ଭାବ । ପ୍ରାୟ ପନ୍ଦରଦିନ ଏହି ଦୁର୍ଯ୍ୟୋଗ ଲାଗି ରହିଲା । ଅବଶେଷରେ ବ୍ରହ୍ମାନନ୍ଦଜୀ ଆସି ଝଗଡ଼ା ଲଗାଇଲେ ଓ ମୋର ସମସ୍ତ ବ୍ୟବହାର୍ଯ୍ୟ ଜିନିଷ ପତ୍ର ଛଡ଼ାଇ ରଖିଲେ । ମୁଁ ଅଗତ୍ୟା ସେ ଆଶ୍ରମ ତ୍ୟାଗ କରି ବାହାରି ଆସିଲି ।

## ଆଶ୍ରମ ପରିଚାଳନା

ଏହି ଘଟଣାର ଅଳ୍ପଦିନ ପରେ ଶ୍ରୀ କୃଷ୍ଣ ଗୋପାଳ ମୁଖାର୍ଜୀଙ୍କ ସଙ୍ଗେ ସାକ୍ଷାତ୍ ହେଲା । ତାଙ୍କରି ଉପଦେଶକ୍ରମେ ମୁଁ ପୁଣିଥରେ ଝଡ଼କୁସୁମା ଆଶ୍ରମରେ ଯାଇ ଯୋଗଦେଲି । ତଥାପି ମୋର ଜଡ଼ତା ଓ ଉଦାସୀନ ଭାବ ଲାଗିରହିଥାଏ । ଆଗଭଳି ମୋ ଉପରେ ଠାକୁରପୂଜା ଓ ଭୋଗ ପ୍ରସ୍ତୁତ କରିବା ଭାର ନ୍ୟସ୍ତ ରହିଲା । ଆଶ୍ରମାନ୍ତେବାସୀ ବିଦ୍ୟାର୍ଥୀ ବାଳକ ଗୁରୁଦାସ ମୋର ସହଯୋଗୀ ହୋଇ ରହୁଥାଏ । ସେ ମୋର ଆନ୍ତରିକ ସ୍ନେହ ଶ୍ରଦ୍ଧାର ପାତ୍ର ଅଥଚ ବାହାରେ ତା' ପ୍ରତି ମୁଁ ଖୁବ୍ କଡ଼ା ଶାସନ ଜାରି କରିଦେଇଥାଏ । କିଛିଦିନ ପରେ ଆଶ୍ରମରେ ଆଭ୍ୟନ୍ତରୀଣ ବିସମ୍ବାଦ ସୃଷ୍ଟି ହେଲା । ଅଶାନ୍ତି ମଧ୍ୟରେ ମୋତେ ଆଉ ସେଠାରେ ରହିବାକୁ ଭଲ ଲାଗିଲା ନାହିଁ । ଆଶ୍ରମ କମିଟି ବୈଠକରେ ଏ ସମସ୍ତ ବିଶୃଙ୍ଖଳାର ପ୍ରମାଣ ଦର୍ଶାଇ ମୁଁ ଆଶ୍ରମ ଛାଡ଼ିଯିବାକୁ ଚାହିଁଲି । ଶ୍ରୀମତ୍ ଠାକୁର ଚୈତନ୍ୟ ବ୍ରହ୍ମଚାରୀ (ପରବର୍ତ୍ତୀ ସନ୍ୟାସ ନାମ: ଶ୍ରୀମତ୍ ସେବାନନ୍ଦ ସରସ୍ୱତୀ) ମଧ୍ୟ ସେତେବେଳେ ଆଶ୍ରମର ଦାୟିତ୍ୱ ତ୍ୟାଗ କଲେ । ତତ୍କାଳୀନ ଆଶ୍ରମାଧ୍ୟକ୍ଷ ଶ୍ରୀମତ୍

ଚଣ୍ଡୀ ଚୈତନ୍ୟ ବ୍ରହ୍ମଚାରୀ ମୋତେ କିନ୍ତୁ ଆଶ୍ରମରେ ରହିବାକୁ ବିଶେଷ ଅନୁରୋଧ କଲେ । ତାଙ୍କର ଏହି ପ୍ରବର୍ତ୍ତନା ଓ ଆଗ୍ରହାତିଶଯ୍ୟ ଯୋଗୁଁ ଅଗତ୍ୟା ମୁଁ ଆଶ୍ରମର ସହକାରୀ ଅଧ୍ୟକ୍ଷ ହୋଇ ରହିଲି । ସେତେବେଳେ ଆଶ୍ରମିକ ଅବସ୍ଥା ବିଶେଷ ଶୋଚନୀୟ ହୋଇ ପଡ଼ିଥାଏ । ମୋ ଉପରେ କୃଷି ଗୋହେବା ଆଦିର ଦାୟିତ୍ୱ ନ୍ୟସ୍ତ ହେଲା । ପ୍ରଥମେ ଗ୍ରାମୀ ମହାଜନଙ୍କ—ଠାରୁ ଧାନ ଉଧାର ଆଣି ଖାଇଲୁ । ସତୀଶ ପାଲଙ୍କ ମୃତ୍ୟୁ ପରେ ତାଙ୍କ ଶ୍ରାଦ୍ଧରେ ଯୋଗଦେଇ ଆଶ୍ରମପାଇଁ ଏକ ହଜାର ଟଙ୍କା ଦାନ ଆଣିଲି ଶ୍ରୀ ବ୍ରଜ ଗୋପାଳ ମୁଖାର୍ଜୀ ଏକ ହଜାର ଏକ ଟଙ୍କା ଭିକ୍ଷା ଦେଲେ । ଯଥାବିଧି କୃଷିକାର୍ଯ୍ୟ ଆରମ୍ଭ କରାଗଲା । ଉପଯୁକ୍ତ ପରିଚାଳନା ଫଳରେ ପ୍ରଚୁର ଧାନ ଫଳିଲା । ଆଶ୍ରମ ପ୍ରତି ଶିଷ୍ୟ ଭକ୍ତଙ୍କର ଆକର୍ଷଣ ବଢ଼ିଲା । ଅନେକ ନୂତନ ଭକ୍ତ ଜୁଟିଲେ । ଆଶ୍ରମ ବେଶ ଉନ୍ନତ କଲା । ଏହା ୧୯୫୪ ମସିହାର କଥା । ଏତିକି ବେଳେ ସାରସ୍ୱତ ମଠାଶ୍ରମମାନଙ୍କର ଆନ୍ତର୍ବିବାଦ ଯୋଗୁଁ ଶ୍ରୀ ଶ୍ରୀ ଠାକୁର ପ୍ରବର୍ତ୍ତିତ ସାର୍ବଭୌମ ଭକ୍ତ ସମ୍ମିଳନୀ ପଶ୍ଚିମ ବଙ୍ଗଳା ସାରସ୍ୱତ ଆଶ୍ରମ, ଝଡ଼କୁସୁମାଠାରେ ପ୍ରଥମଥର ପାଇଁ ସ୍ୱତନ୍ତ୍ର ଭାବେ ଅନୁଷ୍ଠିତ ହୁଏ । * ପର ପର ପାଞ୍ଚବର୍ଷ ଧରି ଏଠାରେ ଭକ୍ତ ସମ୍ମିଳନୀର ସ୍ୱତନ୍ତ୍ର ଅଧିବେଶନ ଅନୁଷ୍ଠିତ ହେବା ପରେ ୧୯୬୧ ମସିହା ଅଧିବେଶନ ବେଳେ ମିଳନର ସୂତ୍ରପାତ ହୋଇ ଦକ୍ଷିଣ ବାଂଲା ସାରସ୍ୱତ ଆଶ୍ରମପୀଠରେ ୧୯୬୨ ମସିହା ଅଧିବେଶନ ଏକତ୍ର ଆହୂତ ହୋଇ ଦୁଇ ଦଳର ମହାମିଳନ ସମ୍ପନ୍ନ ହୁଏ । ଶ୍ରୀ ଶ୍ରୀ ଠାକୁରଙ୍କ ଦେହାବସାନ ପରେ ତାଙ୍କ ସମାଧି କେଉଁଠି ରହିବ, ମହାନ୍ତ ଓ ଗୁରୁ କିଏ ହେବ ଏବଂ ଦୀକ୍ଷା ଦେବା ଅଧିକାର କାହାର—ଏହିଭଳି କେତୋଟି ବିଷୟ ବିବାଦର ମୂଳ ସୂତ୍ର ହୋଇଥିଲା ସନ ୧୯୬୩ ମସିହା ପୂର୍ବସ୍ଥଳୀ (ମଧ୍ୟବାଂଲା ସାରସ୍ୱତ ଆଶ୍ରମ ) ଭକ୍ତ ସମ୍ମିଳନୀ ବେଳେ ତତ୍କାଳୀନ ମହାନ୍ତଙ୍କ ବ୍ୟତୀତ ଅନ୍ୟ ସନ୍ନ୍ୟାସୀ ବ୍ରହ୍ମଚାରୀଙ୍କର ଦୀକ୍ଷା ଦେବା ଅଧିକାର ନିଷିଦ୍ଧ ହେଲା ।

---

* ବିଶେଷ ବିବରଣୀ ପାଇଁ ସ୍ୱାମୀ ଚିନ୍ମୟାନନ୍ଦ ସରସ୍ୱତୀ ପ୍ରଣୀତ ‘ପଶ୍ଚିମ ବାଂଲା ସାରସ୍ୱତ ଆଶ୍ରମେର ଇତିବୃତ୍ତି’ ଗ୍ରନ୍ଥମାଳା ଦ୍ରଷ୍ଟବ୍ୟ ।

# ଗୁରୁଗିରି ସମସ୍ୟା

ଖଡ଼ିକୁସୁମାଠାରେ ସନ୍ନ୍ୟାସୀ ଅଧ୍ୟକ୍ଷ ଥିବା ବେଳେ ଓ ତା' ଆଗରୁ କଟକରେ ଦୀକ୍ଷା ଦେଇ ମୁଁ ଶିଷ୍ୟ ସଂଗ୍ରହ କରି ସାରିଥାଏ । ୧୯୬୨ ମସିହାରେ ମୁଁ ପୁଣି କଟକ ଆସି ଅବସ୍ଥାନ କଲାବେଳେ ବାଣପୁର ଇଲାକା ବାଲେଡ଼ି ନିବାସୀ ଶ୍ରୀ ପ୍ରସନ୍ନ ବଡ଼ଜେନା (ତତ୍କାଳୀନ ଏମ୍.ଏ ଛାତ୍ର) ସ୍ୱତଃସ୍ଫୂର୍ତ୍ତି ଶ୍ରଦ୍ଧା ଓ ଭକ୍ତି ସହକାରେ ମୋ ଠାରୁ ଦୀକ୍ଷା ଗ୍ରହଣ କରନ୍ତି । କିନ୍ତୁ ଆଶ୍ରମାଧ୍ୟକ୍ଷ ଶ୍ରୀମତ୍ ଚଣ୍ଡୀ ଚୈତନ୍ୟ ବ୍ରହ୍ମଚାରୀ ମୋ ଉପରେ ଦୋଷାରୋପ କରି ମୋର ଦୀକ୍ଷା ଦାନ ଅଧିକାର ତଥା ଦୀକ୍ଷିତ ଶିଷ୍ୟମାନଙ୍କୁ ଅବୈଧ ଘୋଷଣା କରିବା ପ୍ରସ୍ତାବ ଉଠାଇବାରୁ ମୁଁ ସ୍ୱତଃପ୍ରବୃତ୍ତ ହୋଇ ଆଶ୍ରମ ତ୍ୟାଗକରି ଆସିଲି ।

ଗଡ଼ବେତା ଷ୍ଟେସନ୍‌ର ଅଦୂରବର୍ତ୍ତୀ ସାଉଲସ୍ପା ମଉଜା ଶ୍ରୀ ଶ୍ରୀ ଠାକୁର ମହାତ୍ମାଙ୍କ ପ୍ରତିଷ୍ଠାପନ୍ନ ଓ ଭକ୍ତିମାନ ଶିଷ୍ୟ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଣା ଓ ତାଙ୍କ ଭାଇ ଶ୍ରୀଯୁକ୍ତ ନିତ୍ୟାନନ୍ଦ ରଣାଙ୍କ ନିବାସ । ଉଭୟ ଭାଇଙ୍କ ସଙ୍ଗେ ମୋର ଘନିଷ୍ଠ ପରିଚୟ ଥିଲା । ଖଡ଼ିକୁସୁମା ଆଶ୍ରମର ସୁପରିଚାଳନାରେ ମୋର ଅବଦାନ କଥା ରଣାଙ୍କ ପରିବାର ଭଲଭାବେ ଜାଣିଥିଲେ । ସାରସ୍ୱତ ମଠର ଅନ୍ତର୍ଦ୍ୱନ୍ଦ୍ୱ ଓ ଖଡ଼ିକୁସୁମାର ସ୍ୱାତନ୍ତ୍ର୍ୟ ଘୋଷଣା କାଳରେ ମୁଁ ଦୀକ୍ଷା ପ୍ରଦାନ କରି ଶିଷ୍ୟ ଗ୍ରହଣ କରିଥିବା କଥା ସେମାନଙ୍କ ଗୋଚରକୁ ଆସିଥିଲା । ମୁଁ ରଣାଙ୍କୁ ବୁଝାଇଲି, "ଥରେ ଦୀକ୍ଷା ଦେଇ ଶିଷ୍ୟ କରିଛୁ ଯେତେବେଳେ ଧର୍ମତଃ ମୁଁ ମୋର ଶିଷ୍ୟମାନଙ୍କର ଗୁରୁ । ମୁଁ ଏବେ ସେମାନଙ୍କୁ ତ୍ୟାଗ କରି ଦେଇ ସାରସ୍ୱତ ମଠର ମହନ୍ତଙ୍କ ପାଖରେ ସମର୍ପଣ କରିଦେବା ଏକ ପ୍ରହସନ ମାତ୍ର ହେବ ! ଯେଉଁମାନେ ଦୀକ୍ଷାଦାନ କର୍ମରେ ପୌରହିତ୍ୟ କରନ୍ତି, ତାଙ୍କ କଥା ସ୍ୱତନ୍ତ୍ର ! ମୁଁ ଯେପରି ଗୁରୁ ସ୍ୱୀକାର କରି ଦୀକ୍ଷା ନେଇଥିଲି, ମୋର ଶିଷ୍ୟମାନେ ଅନୁରୂପ ଭାବେ ମୋତେ ସ୍ୱୀକାର କରିଛନ୍ତି । ସାରସ୍ୱତ ସମ୍ପ୍ରଦାୟ ଆମର ଏହି ପାରମାର୍ଥିକ ସମ୍ପର୍କକୁ ଛିନ୍ନ କରିନପାରେ ; କାରଣ ଏହି ସୂତ୍ର ଗୁରୁପରମ୍ପରାକ୍ରମେ ଅତୀତରୁ ଭବିଷ୍ୟତ କାଳକୁ ପ୍ରସାରିତ ।"

ସେମାନଙ୍କ ଗୋଷ୍ଠୀ ମୋର ଆଗ୍ରହ ବଡ଼୍କରକୁ ସମର୍ଥନ କରି ମୋତେ ତାଙ୍କ ବାସଭବନରେ ରହିବାକୁ ଆଗ୍ରସ୍ତ ଦେଲେ । ଅଧିକନ୍ତୁ ଗଡ଼ଦେବତା ଅଜିଆ ଆମଳାଶୁଳିଠାରେ ସ୍ୱାଧୀନ ଭାବେ ଚୋଟିଏ ଅଶ୍ରମ ନିର୍ମାଣ କରି-ବାକୁ ଉତ୍ସାହିତ କଲେ । ମୁଁ ମଧ୍ୟ ଖୁବ୍ ଆଗ୍ରହ ଓ ଉତ୍ସାହର ସହ ନୂତନ-ଅଶ୍ରମର ଭିତ୍ତି ସ୍ଥାପନ କଲି । ଇତିମଧ୍ୟରେ ସାରସ୍ୱତ ମଠର ତତ୍କାଳୀନ ମହନ୍ତ ମହାରାଜ ଝଡ଼କୁସମା ପରିଦର୍ଶନରେ ଆସିଲେ । ତାଙ୍କ ସହ ବ୍ୟକ୍ତି-ଗତ ଭାବେ ସାକ୍ଷାତ୍ କରି ଝଡ଼କୁସମା ଅଶ୍ରମର ପରିଚାଳନା ଓ ଉନ୍ନତି ବିଧାନ ସମ୍ପର୍କରେ ଆଲୋଚନା କରିବାକୁ ମୋର ଆକାଂକ୍ଷା ହେଲା । ଏହି ଅଶ୍ରମ ସଙ୍ଗେ ବହୁତ ଧନ ଜଡ଼ିତ ଥିବାରୁ ହୋଇପାରେ ମୋର ଏହି ପ୍ରକାର ମୋହ ସୃଷ୍ଟି ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ମହନ୍ତଙ୍କ ସହ ସାକ୍ଷାତ୍ କରିବାର ବୃଥା ପ୍ରୟାସରୁ ନିବୃତ୍ତ ହେବା ଲାଗି ସେମାନଙ୍କ ପରିବାର ମୋତେ ଉପଦେଶ ଦେଇଥିଲେ ହେଁ ମୁଁ ସେମାନଙ୍କ ନିଷେଧ ସତ୍ତ୍ୱେ ମହନ୍ତଙ୍କୁ ସାକ୍ଷାତ୍ କଲି ।

ମୋ ସଙ୍ଗେ ଦୀର୍ଘକାଳ ଆଲୋଚନା ହେବା ପରେ ମହନ୍ତ ମହାରାଜ ମୋ ଉପରେ ସନ୍ତୁଷ୍ଟ ହେଲେ ଓ ଆଗରୁ ମୋ ପ୍ରତି କରାହୋଇଥିବା ଅତ୍ୟା-ଚାର ପାଇଁ ଦୁଃଖ ପ୍ରକାଶ କଲେ ଓ କେତେକ ପରିଚାଳନାଗତ ତ୍ରୁଟି ଦୃଷ୍ଟେ ବ୍ରହ୍ମଚାରୀ ଠାକୁର ଦାସଙ୍କୁ ଅଶ୍ରମରୁ ଅନ୍ତର କରିବାକୁ ଚାହିଁଲେ । ଅତୀତରେ ଅଶ୍ରମର ସୁରକ୍ଷାକଳ୍ପେ ଠାକୁର ଦାସଙ୍କ ସହଯୋଗିତା ଓ କର୍ମଦକ୍ଷତା ପ୍ରମାଣିତ କରି ମହନ୍ତଙ୍କୁ ତାହାରୁ ପ୍ରତ୍ୟକ୍ଷ ଭାବେ ନିବୃତ୍ତ କରା-ଇଲି ଓ ସଂଶୋଧନର ପନ୍ଥା ଗ୍ରହଣ କରିବାକୁ ସୁପାରିଶ କଲି । (ଝଡ଼-କୁସମା ଆଶ୍ରମ ସଙ୍ଗେ ସାରସ୍ୱତ ମଠର ବିବାଦ ଲାଗିଥିଲାବେଳେ ମୁଁ ଅଶ୍ରମର ସହକାରୀ ଅଧ୍ୟକ୍ଷ ଥାଏ । କୁଚକ୍ରୀମାନେ ଜାମସେଦ୍‌ପୁରର ମୁସଲମାନ ଗୁଣ୍ଡା-ଦ୍ୱାରା ଉପଦ୍ରବ କରି ଆଶ୍ରମ ଅଧିକାର କରିବାକୁ ବସିଲେ । ସେତେବେଳେ ସ୍ଥାନୀୟ ଲୋକଙ୍କୁ ଏକତ୍ରିତ କରି ଗୁଣ୍ଡାଙ୍କୁ ନିରସ୍ତ କରିବାରେ ମୋତେ ଠାକୁର ଦାସ ଉଲ୍ଲେଖଯୋଗ୍ୟ ସାହାଯ୍ୟ ପ୍ରଦାନ କରନ୍ତି । ) ପୁନଶ୍ଚ, ତତ୍କାଳୀନ ଅଧ୍ୟକ୍ଷ ଶ୍ରୀ ଚଣ୍ଡୀ ଚୈତନ୍ୟ ବ୍ରହ୍ମଚାରୀଙ୍କ ଭଗ୍ନସ୍ୱାସ୍ଥ୍ୟ ଓ ଅକ୍ଷମତା

ହୃଷ୍ଟେ ମୋତେ ସନ୍ୟାସ ଦେଇ ଆଶ୍ରମର ଅଧ୍ୟକ୍ଷ ଭାବେ ନିଯୁକ୍ତ କରିବା ପାଇଁ ମହାନ୍ତ ପ୍ରସ୍ତାବ କଲେ—ଏପରିକି ମୁଁ ଆଗପରି ଦୀକ୍ଷା ଦେଇ ଶିଷ୍ୟ ଗ୍ରହଣ କରିବା ପାଇଁ ମଧ୍ୟ ଅନୁମତି ପ୍ରଦାନ କଲେ । ମୁଁ କିନ୍ତୁ ଏପରି ମୌଖିକ ଆଦେଶକୁ ଲିଖିତ ଆକାରରେ ଚାହିଁବାରୁ ମହାନ୍ତ ସେଥିରେ ସମ୍ମତ ହେଲେ ନାହିଁ । ତାଙ୍କଠାରୁ ସନ୍ୟାସ ନ ନେବା ଯାଏଁ ସ୍ଥାୟୀ ଭାବେ ସେ ମୋତେ ସ୍ୱୀକାର କଲି ଭଳି ମୋର ହୃଦ୍‌ବୋଧ ହେଲା ନାହିଁ ।

ଏପରି ଅସ୍ଥାୟୀ ଓ ଅନିଶ୍ଚିତ ବ୍ୟବସ୍ଥାରେ ମୁଁ ଆଶ୍ରମ ପରିଚାଳନା ଭାର ନେବାକୁ ରାଜି ହେଲି ନାହିଁ କିନ୍ତୁ ପ୍ରିୟ ସତୀର୍ଥମାନଙ୍କର ନିର୍ବନ୍ଧାତିଶଯ୍ୟରେ ବାଧ୍ୟତାମୂଳକ ଭାବେ ଆଶ୍ରମ ଅଧ୍ୟକ୍ଷଙ୍କ ଓ ଶିକ୍ଷାଦୀକ୍ଷାର ଭାର ମୋ ଉପରେ ନ୍ୟସ୍ତ କରାଗଲା । ସଣୋଙ୍କ ପରିବାର ଏ ସମ୍ବାଦ ପାଇ ଖୁବ୍ ଆଶ୍ୱସ୍ତ ହେଲେ । କିନ୍ତୁ ମୋର ଖଡ଼ିକୁସମା ଆଶ୍ରମ ବାସର ଅନ୍ତିମ-କାଳ ପାଖେଇ ଆସୁଥାଏ । ମହନ୍ତ ମୋତେ ଆଶ୍ରମ ଅଧ୍ୟକ୍ଷ ପଦରେ ନିଯୁକ୍ତ କରିଥିଲେ ସତ, କିନ୍ତୁ ଏହା ନାମକାବାସ୍ତେ ଭଳି ମନେ ହେଲା; କାରଣ ଆଶ୍ରମ ନାମରେ ପ୍ରେରିତ ଚିଠି ଓ ଚାନ୍ଦା-ଇତ୍ୟାଦି ମୋ ପାଖରେ ପହଞ୍ଚି-ପାରିଲା ନାହିଁ । ଶ୍ରୀମତ୍ ଚଣ୍ଡୀ ଚୈତନ୍ୟ ବ୍ରହ୍ମଚାରୀଙ୍କ ପାଖରେ ମହନ୍ତଙ୍କ ଲିଖିତ ପ୍ରମାଣ ପତ୍ର ଥିବାରୁ ଡାକବାଲା ଆଶ୍ରମ ଉଦ୍ଦେଶ୍ୟରେ ପ୍ରେରିତ ସମସ୍ତ ସାହାଯ୍ୟ ଓ ମୁଷ୍ଟିଭିକ୍ଷା ବାବଦ ଟଙ୍କା ପୂର୍ବଭଳି ତାଙ୍କୁଇ ଦେବାକୁ ଲାଗିଲା । ଏପରି ପରିସ୍ଥିତିରେ ମୁଁ ଖୁବ୍ ବିରକ୍ତ ହୋଇ ସବୁଦିନ ପାଇଁ ଖଡ଼ିକୁସମା ଆଶ୍ରମ ପରିତ୍ୟାଗ କଲି ।

# ପଞ୍ଚଦଶ ଅଧ୍ୟାୟ

ତତ୍ତ୍ୱମସି

## ସନ୍ନ୍ୟାସ ଦୀକ୍ଷାର ସୂଚନା

ଏଥରକ କନ୍ତୁ ଆମଳାଶୂଳୀଠାରେ ପୂର୍ବ ପଶ୍ଚିମ ... ତ ଅତ୍ରମକୁ ପୂର୍ଣ୍ଣୀଙ୍କ କରିବା ପାଇଁ ମଧ୍ୟ ଆଉ ଉତ୍ସାହ ରହିଲା ନାହିଁ । ସୁତରାଂ ଗୁଣାଙ୍କଠାରୁ କିଛି ଅର୍ଥ ସାହାଯ୍ୟ ନେଇ ବଙ୍ଗ ଅଭିମୁଖେ ଯାତ୍ରା କଲି । ଏହି ବେଳେ (୧୯୬୩ ମସିହା) ଆସାମ ବଙ୍ଗୀୟ ସାରସ୍ୱତ ମଠର ପ୍ରାକ୍ତନ ମହନ୍ତ ଶ୍ରୀମତ୍ ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀଙ୍କ ମହାରାଜ ଭୁବନେଶ୍ୱରଠାରେ ଅବସ୍ଥାନ କରୁଥାଆନ୍ତି । ମୋର ସନ୍ନ୍ୟାସ ଦୀକ୍ଷା ପାଇଁ ପ୍ରଜ୍ଞାନନ୍ଦଜୀଙ୍କଠାରେ ପ୍ରାର୍ଥୀ ହେବାକୁ ଗୁରୁଭ୍ରାତା ଶ୍ରୀ କୃଷ୍ଣଗୋପାଳ ମୁଖାର୍ଜୀ ପ୍ରସ୍ତାବ ଦେଲେ । ସେ କହିଲେ, "ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀ ଜଣେ ଉଚ୍ଚକୋଟୀର ସିଦ୍ଧ ସାଧୁ, ଯାହାଙ୍କୁ ସ୍ୱୟଂ ଶ୍ରୀ ଶ୍ରୀ ଠାକୁର ବୈଦିକ ପଦ୍ଧତିରେ ସନ୍ନ୍ୟାସ ଦୀକ୍ଷା ପ୍ରଦାନ କରି ଆସାମ ବଙ୍ଗୀୟ ସାରସ୍ୱତ ମଠର ମହନ୍ତ ରୂପେ ପ୍ରତିଷ୍ଠିତ କରିଥିଲେ । ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିବା ପାଇଁ ତୁମର ଶାରୀରିକ ଓ ମାନସିକ ଅବସ୍ଥା ଉପଯୁକ୍ତ । ତୁମର ବ୍ରହ୍ମଚର୍ଯ୍ୟାଶ୍ରମରେ ଅନୁଷ୍ଠିତ ତପସ୍ୟାର ବଳ ମଧ୍ୟ

---

* ସ୍ୱାମୀଜୀଙ୍କ ପ୍ରଣୀତ 'ଶ୍ରୁତିସ୍ମୃତି' ଗ୍ରନ୍ଥରେ ତାହାଙ୍କ ସଂକ୍ଷିପ୍ତ ଆତ୍ମଜୀବନୀ ସନ୍ନିବିଷ୍ଟ ହୋଇଅଛି ।

ଯଥେଷ୍ଟ । ଗୁରୁ ପରମ୍ପରା ରକ୍ଷାକଲେ଼ଏବଂ ସାରସ୍ୱତ ସଂଘ ଓ ମଠାଶ୍ରମ ପ୍ରତିଷ୍ଠାର ମୂଳରେ ନିହିତ ଶ୍ରୀ ଶ୍ରୀ ଠାକୁରଙ୍କର ମହାନ୍ ଉଦ୍ଦେଶ୍ୟ ରୂପାୟନ ନିମିତ୍ତ ତୁମେ ବିନା ଦ୍ୱିଧାରେ ଓ ଅନତିବିଳମ୍ବେ ସ୍ୱାମୀ ପ୍ରଜ୍ଞାନନ୍ଦଙ୍କ ଶରଣାପନ୍ନ ହୋଇ ଅନ୍ତିମ ଆଶ୍ରମରେ ଦୀକ୍ଷିତ ହୁଅ ।"

ମୋର ଗୁହାବାସବେଳେ ଅନେକ କୃଚ୍ଛ୍ର ସାଧନ କରିବାଦ୍ୱାରା ଆତ୍ମସ୍ୱରୂପ ଜ୍ଞାନ ଜାତ ହୋଇଥିଲେହେଁ ଗତାନୁଗତିକ ବା ଆନୁଷ୍ଠାନିକ ଭାବେ ସନ୍ନ୍ୟାସ-ସଂସ୍କାର ଲାଭ ହୋଇନଥିବାରୁ ଅନ୍ୟ ସନ୍ନ୍ୟାସୀଙ୍କ ସାନ୍ନିଧ୍ୟରେ ମନରେ ଏକ ପ୍ରକାର ନ୍ୟୂନତାବୋଧ ତଥାପି ଜାଗୁଥିଲା । ଉପଯୁକ୍ତ ଗୁରୁଙ୍କଠାରୁ ମହାବାକ୍ୟ* ଶ୍ରବଣ କରିବାର ସୁଯୋଗ ଲାଭ ହୋଇ ନାହିଁ ବୋଲି ତଥାପି ଏକ ଅଭାବ ଅନୁଭୂତ ହେଉଥିଲା । ତେଣୁ ହରିଦ୍ୱାର କୁମ୍ଭମେଳାଠାରେ ସନ୍ନ୍ୟାସ ଗ୍ରହଣର ବାସନା ଉନ୍ମେଷିତ ହୋଇ ଚିଦାନନ୍ଦ ମହାରାଜଙ୍କ ନିଷେଧାଦେଶରେ ସୁପ୍ତପ୍ରାୟ ହୋଇଯାଇଥିଲା । ତଦବଧି ସନ୍ନ୍ୟାସ ଗ୍ରହଣ କରିବା ନିମିତ୍ତ ସେପରି କୌଣସି ଭାବାବେଗ ଜାଗି ନ ଥିଲା । କୃଷ୍ଣଗୋପାଳଙ୍କ ... ଶୁଣି ସାରି ମୁଁ କୃତ୍ରିମ ରୋଷର ଭଙ୍ଗୀରେ ଜବରଦସ୍ତ ତାଙ୍କୁ ପ୍ରତ୍ୟାଖ୍ୟାନ କଲି ଓ କହିଲି, "ମୁଁ ସନ୍ନ୍ୟାସ ନେବାକୁ ଚାହେଁ ନା, ମୋ ପାଇଁ ସନ୍ନ୍ୟାସର କୌଣସି ପ୍ରୟୋଜନ ନାହିଁ ।" ପ୍ରକୃତ କଥା ହେଲା, ମୂଳରୁ ପ୍ରଜ୍ଞାନନ୍ଦ ମହାରାଜଙ୍କ ପ୍ରତି ଆନ୍ତରିକ ଆକର୍ଷଣ ନ ଥାଏ । ମୋ ଦୁର୍ଭାଗ୍ୟକୁ ଶ୍ରୀ ଶ୍ରୀ ଠାକୁରଙ୍କ ସ୍ୱଧାମଗତ ହେଲେ । ସାରସ୍ୱତ ସମ୍ପ୍ରଦାୟର ସାଧୁଙ୍କ ମଧ୍ୟରେ କେବଳ ସ୍ୱାମୀ ଚିଦାନନ୍ଦଙ୍କ ପ୍ରତି ମୋର ବିଶେଷ ଆନୁଗତ୍ୟ ରହିଥାଏ, କାରଣ ପ୍ରାଥମିକ ସାଧନ ଜୀବନରେ ସେ ମୋର ପଥପ୍ରଦର୍ଶକ ଥିଲେ । ତାଙ୍କର ସରଳ ତଥା ଉଦାର ଭାବ ଏବଂ ସହଜ କର୍ମନିଷ୍ଠା ମୋ ମନକୁ ଖୁବ୍ ପ୍ରଭାବିତ କରିଥିଲା ।

---

* ଚାରିବେଦ ପ୍ରତିପାଦିତ ଚାରୋଟି ମହାବାକ୍ୟ, ଯଥା—(୧) ଅହଂ ବ୍ରହ୍ମାସ୍ମି, (୨) ତତ୍ତ୍ୱମସି, (୩) ଅୟମାତ୍ମା ବ୍ରହ୍ମ, (୪) ପ୍ରଜ୍ଞାନଂ ବ୍ରହ୍ମ ।

## ଦୀକ୍ଷା କିଏ ଦେବ

ଥରେ ସ୍ୱପ୍ନ ଦେଖିଲି ମୋର ସନ୍ୟାସର ଆୟୋଜନ ଚାଲିଛି, କିନ୍ତୁ ସ୍ଥାନ ଓ ସଯୋଗ ଇତ୍ୟାଦି ଠିକ୍ ଠିକ୍ ଜଣାପଡ଼ୁନ । ପୁଣି ଦ୍ୱିତୀୟ ଓ ତୃତୀୟବାର ମୁଁ ସେଇ ଏକାଭଳି ସ୍ୱପ୍ନ ଦେଖିଲି କିନ୍ତୁ କିଏ ସନ୍ନ୍ୟାସ ଦେବ ଠିକ୍ ଜାଣି ପାରୁନ । ଚତୁର୍ଥଦିନ ସ୍ୱପ୍ନରେ ମନକୁ ଜାଗିଲା, ମୋର ସନ୍ନ୍ୟାସ-ଦାତା ଗୁରୁ କିଏ ? ଦେଖିଲି ପ୍ରଜ୍ଞାନନ୍ଦ ମହାରାଜ ଆସି ସମସ୍ତଙ୍କର ଫଟୋ-ଗୁଡ଼ିକ ଫୋପାଡ଼ି ଦେଉଛନ୍ତି—ଆତ୍ମାନନ୍ଦଙ୍କ ଫଟୋ ଉଠିଗଲା, ଅନ୍ୟ-ମାନଙ୍କର ମଧ୍ୟ ଗଲା କିନ୍ତୁ ଚଦାନନ୍ଦଙ୍କ ଫଟୋଟି ଛିଠିଯିବାରୁ ମୋ ପ୍ରାଣରେ ଖୁବ୍ ଆଘାତ ଲାଗିଲା । ମୁଁ ସେ ଫଟୋଟି ଉଦ୍ଧାର କରିବାକୁ ଯିବାବେଳେ, ମୋର ନିଦ ଭାଙ୍ଗିଗଲା ।

ଏପରି ବାରମ୍ବାର ସ୍ୱପ୍ନ ଦେଖି ସାରିବା ପରେ ସ ନ୍ୟାସ ନେବା ପାଇଁ ମନରେ ଏକ ଝୁଙ୍କ ହେଲା । ଅସ୍ଥିର ହୋଇ ମୁଁ ଭୁବନେଶ୍ୱର ଯାଇଥିଲି ଓ ପ୍ରଜ୍ଞାନନ୍ଦ ମହାରାଜଙ୍କ ପାଖରେ ସନ୍ୟାସ ପ୍ରାର୍ଥୀ ହୋଇ କହିଲି, "ଆପଣ ସନ୍ୟାସ ଦୀକ୍ଷା ଦିଅନ୍ତୁ, ନୋ ମୋତେ ସାରସ୍ୱତ ସମ୍ପ୍ରଦାୟ ବାହାରକୁ ଯିବାକୁ ହେବ । ଇଦାନିନ୍ତନ ସନ୍ତଙ୍କ ଠାରୁ ଦୀକ୍ଷା ନେବା ପାଇଁ ମୁଁ ଚାହେଁ ନା । ଆପଣ ଦୀକ୍ଷା ନ ଦେଲେ ଅଗତ୍ୟା ମୁଁ ଶୃଙ୍ଗେରୀ ମଠକୁ ଯାଇ ସନ୍ନ୍ୟାସ ଗ୍ରହଣ କରିବି ।" ପ୍ରଜ୍ଞାନନ୍ଦଜୀ ସେତେବେଳେ ଅସୁସ୍ଥ ଥିଲେ ସେ କହିଲେ, "ଅସୁସ୍ଥ ଅବସ୍ଥାରେ ମୁଁ ଦୀକ୍ଷା କିପରି ଦେବ ?" ମୁଁ କହିଲି, "ଆପଣ କଥା ଦିଅନ୍ତୁ ସୁସ୍ଥ ହେଲେ ଅବଶ୍ୟ ଦୀକ୍ଷା ଦେବେ, ମୁଁ ଅପେକ୍ଷାରେ ରହିବି ।" ସେ କହିଲେ, "ଆଚ୍ଛା ଦେଖାଯିବ ।" ଏହି ସାକ୍ଷାତ୍କାର ପରେ ମୁଁ ଗଡ଼ଦେବତା ଫେରି ଆସିଲି ।

ଦୈବାତ୍ ଚଦାନନ୍ଦ ମହାରାଜଙ୍କ ସଙ୍ଗେ ସାକ୍ଷାତ୍ ହେଲା । ତାଙ୍କୁ ସ୍ୱପ୍ନବୃତ୍ତାନ୍ତ କହି ତାଙ୍କଠାରେ ସନ୍ୟାସ ପ୍ରାର୍ଥୀ ହେଲି । ସେ କିନ୍ତୁ ଅସମ୍ମତି ପ୍ରକାଶ କଲେ । ସେତେବେଳେ ଚଦାନନ୍ଦଜୀ ମେଦିନୀପୁର ନିକଟସ୍ଥ ଗ୍ରେଟ ବଡ଼ୁଆ ନାମକ ସ୍ଥାନରେ ଆଶ୍ରମ ସ୍ଥାପନ କରି ସ୍ୱତନ୍ତ୍ର ଭାବେ ଅବସ୍ଥାନ



ଶ୍ରୀମତ୍ ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀ

କରୁଥାଆନ୍ତି । ତାଙ୍କ ସଙ୍ଗେ ମୁଁ ଏହି ଆଶ୍ରମକୁ ଯାଇ ସନ୍ୟାସ ଦେବା ପାଇଁ ଝୁବ୍ ଗୁପ ହେଲି; ଏପରିକି ମୋର ସ୍ୱଭାବସୁଲଭ ଘାତ ଏବଂ ଆବେଗାଢ଼-ଶଯ୍ୟରେ ଅଳବତ୍ ସନ୍ନ୍ୟାସ ଦେବାକୁ ହେବ ବୋଲି କିଛି ଖୁବ୍ ଧମକ-ପୂର୍ଣ୍ଣ କଥା ଶୁଣାଇଲି । ( କାରଣ ଅତୀତରେ ଅନେକ ଦିନ ତାଙ୍କ ସଙ୍ଗେ ବସବାସ କରି ତାଙ୍କ ପ୍ରତି ଯଥେଷ୍ଟ ଆନୁଗତ୍ୟ ସାଙ୍ଗକୁ ଅତି-ପରିଚିତଜନିତ ସଖ୍ୟ ଭାବ ସୃଷ୍ଟି ହୋଇଯାଇଥିଲା ।) ସେ କହିଲେ ଯେ, ଶାରୀରିକ ଅସୁସ୍ଥତା ହେତୁ ସେ ସନ୍ୟାସ ଦେବାକୁ ଅସମର୍ଥ । ତେଣୁ ପ୍ରଜ୍ଞାନନ୍ଦ ମହାରାଜ କିମ୍ବା ଅନ୍ନଦାଙ୍କଠାରୁ ମୋର ସନ୍ୟାସ ନେବା ଉଚିତ ହେବ । ତାଙ୍କର ଏପରି ମତାମତ ଜ୍ଞାତ ହୋଇ ପରବର୍ତ୍ତୀ ମୁଁ ପୁଣି କଟକ ଆସିଲି । ଶୁଣିଲି ଯେ, ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀ ମହାରାଜ ଭୁବନେଶ୍ୱର ମାଉସି ମା ମନ୍ଦିର ପାଖରେ ଜଗମାନନ୍ଦ ମଠ ପ୍ରତିଷ୍ଠା କରି ସେଠାରେ ଅବସ୍ଥାନ କରୁଛନ୍ତି ଓ ତାଙ୍କୁ ଶ୍ରୀ-ମାଣିକ ବ୍ରହ୍ମଚାରୀଙ୍କୁ ସନ୍ୟାସ ଦୀକ୍ଷା ଦେବା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । କିନ୍ତୁ ଶ୍ରୀ ମାଣିକ ବ୍ରହ୍ମଚାରୀ (ପରବର୍ତ୍ତୀ ସନ୍ନ୍ୟାସ ନାମ ଶ୍ରୀମତ୍ ମଧୁମାଙ୍ଗଲ୍ୟ ଧର୍ମାନନ୍ଦ) ମହାରାଜଙ୍କୁ ବୁଝାଇ କହନ୍ତି—"ମହାରାଜ, ମୋତେ ସନ୍ୟାସାଶ୍ରମୀ କରିବା ପୂର୍ବରୁ ଶ୍ରୀମତ୍ ଭୋଳା ଚୈତନ୍ୟ ବ୍ରହ୍ମଚାରୀଙ୍କୁ ସନ୍ୟାସ ସଂସ୍କାର ପ୍ରଦାନ କରିବା ଶ୍ରେୟସ୍କର ହେବ । କାରଣ ଭୋଳାଦା ସନ୍ୟାସୀ ହେବା ପାଇଁ ଯଥେଷ୍ଟ ଅଧିକାର ଅର୍ଜନ କରିଥିଲେ ବୋଲି ମୋର ଅନୁମାନ । ସେ ବ୍ରାହ୍ମଣ ଏବଂ ବୟୋଜ୍ୟେଷ୍ଠ, ଅଧିକନ୍ତୁ ଗୃହାବାସ କାଳରେ କଠୋର ଯୋଗାଭ୍ୟାସ କରି ସମାଧିସ୍ଥ ହୋଇଛନ୍ତି । କିଛିଦିନ ତଳେ ସେ ଆସି ଆପଣଙ୍କ ପାଖରେ ସନ୍ନ୍ୟାସପ୍ରାର୍ଥୀ ହୋଇଥିଲେ । ଆପଣ ମଧ୍ୟ ଶାରୀରିକ ସୁସ୍ଥ ହେଲେ ତାଙ୍କୁ ସନ୍ୟାସ ଦେବା କଥା ବିଚାର କରିବେ ବୋଲି ପ୍ରତିଶ୍ରୁତ ହୋଇଅଛନ୍ତି ।"

## ପ୍ରଜ୍ଞାନନ୍ଦଙ୍କ ପରୀକ୍ଷା

ମୁଁ ଯେତେବେଳେ କଟକଠାରେ ଅବସ୍ଥାନ କରୁଥିବା ଖବର ପାଇ ଶ୍ରୀ ମାଣିକ ବ୍ରହ୍ମଚାରୀ ମୋ ପାଖକୁ ଗଲେ ଓ ସମସ୍ତ ଘଟଣା ବିବୃତ କରି

ମୋତେ ସ୍ୱରୂପାନନ୍ଦ ମହାରାଜଙ୍କ ସଙ୍ଗେ ସାକ୍ଷାତ କରାଇବାକୁ ଭୁବନେଶ୍ୱର ନେଇଗଲେ । ପ୍ରୟୋଜନୀୟ ଆଳାପ ଆଲୋଚନା ହେବା ପରେ ମହାରାଜ ମୋତେ ସନ୍ୟାସ ଦୀକ୍ଷା ଦେବା ପାଇଁ ସମ୍ମତ ହେଲେ । ମୁଁ ମୋର ଶିଷ୍ୟ ଶ୍ରୀମାନ୍ ପ୍ରସନ୍ନ ବଡ଼ଜେନାଙ୍କ ଗ୍ରାମ ବାଣପୁର ଅନ୍ତଃପାତି ବାଲେଡ଼କୁ ଯାଇ ସନ୍ୟାସ ଦୀକ୍ଷା ଉଦ୍ଦେଶ୍ୟରେ ଭଲ ଘିଅ ଓ ଦଣ୍ଡ ଇତ୍ୟାଦି ସଂଗ୍ରହ କରି ଆଣିଲି ଓ ମହାରାଜଙ୍କ ପାଖରେ ପହଞ୍ଚି ତାଙ୍କୁ ସାଧାରଣ ଗୁରୁଭାଇ ଜ୍ଞାନରେ ପ୍ରଣାମ କଲି । ତାଙ୍କ ପ୍ରତି ମୋର ଅନ୍ତରଙ୍ଗ ଭକ୍ତି ଓ ଆନୁଗତ୍ୟର ଅଭାବ ଲକ୍ଷ୍ୟକରି ସେ କ୍ଷୁବ୍ଧ ହେଲେ ଓ ରାଗିଯାଇ ଦୀକ୍ଷା ଦେବେନାହିଁ ବୋଲି କହିଲେ । ମହାରାଜଙ୍କ ମନ୍ତବ୍ୟ ଥିଲା, "ଏ ଯାବତ୍ ଯିଏ ଠିକ୍ ଠିକ୍ ପ୍ରଣାମ କରି ଜାଣେନା, ସେ ସନ୍ନ୍ୟାସ ଦୀକ୍ଷା କିପରି ପାଇବ ? ମୁଁ ସେପରି ଶିଷ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେ ।" ଘଟଣାରେ ମୋର ସମସ୍ତ ଉତ୍ସାହ ଲୋପ ପାଇଲା । କିନ୍ତୁ ମୁଁ ମୋର ତ୍ରୁଟି ଠିକ୍ ବୁଝି ପାରୁଥାଏ । ପରେ ...ରେ ପୁଣି ଶ୍ରୀଯୁକ୍ତ ଉଦ୍ଧବ ସାହୁ ମହାରାଜଙ୍କୁ ବହୁ ଭାବରେ ବୁଝାଇ ...ବର୍ତ୍ତାଇଲେ । ମୁଁ ମଧ୍ୟ ଖୁବ୍ ଭକ୍ତି ଓ ବିନମ୍ରତା ସହ ଗୁରୁଜ୍ଞାନ...ର ତାଙ୍କୁ ପ୍ରଣାମ କରିବାରୁ ମହାରାଜ ମୋତେ ପଚା...ଲେ, "ସନ୍ନ୍ୟାସ ଦୀକ୍ଷା ନେଇ ମୋ ଆଶ୍ରମରେ ରହିବତ ?" ପୁଣି ଏକ ବିଷମ ସମସ୍ୟା ଉପସ୍ଥିତ ହେଲା ! ମୁଁ ସ୍ପଷ୍ଟ ଭାବେ କହିଲି, "ନା ମହାରାଜ, ମୁଁ ଏଠାରେ ରହିପାରିବି ନାହିଁ !" ଏହା ଶୁଣି ମହାରାଜ ପୁଣି ବିଗିଡ଼ିଗଲେ ଓ ସନ୍ନ୍ୟାସ ଦେବାକୁ ପୁଣି ଅସ୍ୱୀକାର କଲେ । ଶ୍ରୀ ସାହୁ ପୁଣି ନାନା ଭାବରେ କାକୁତି ମିନତି ହୋଇ ମୋର ସନ୍ନ୍ୟାସ ଗ୍ରହଣର ଯୋଗ୍ୟତା ଦୃଷ୍ଟି ବିନା ଚୁକ୍ତିରେ ସନ୍ନ୍ୟାସ ଦେବା ପାଇଁ ମହାରାଜଙ୍କୁ ରାଜି କରାନ୍ତି । ତାପରେ ମହାରାଜ ମୋତେ ପଚାରିଲେ, "ତୁମେ ବଡ଼କୁସମାରୁ ଆସିଛ, ଏଠାରେ ଝଗଡ଼ା କରିବନି ତ ?" ମୁଁ ଖୁବ୍ ବ୍ୟଗ୍ର ଓ ବିନୀତ ଭାବେ ପ୍ରତିଜ୍ଞା କରି ନିବେଦନ କଲି, "ମହାରାଜ, ମୁଁ କସି ନଜାଣେ ଆପଣଙ୍କ ଆଶ୍ରମାନ୍ତେବାସୀ କାହାରି ସଙ୍ଗେ ବିବାଦ କରିବି ନାହିଁ । ଆପଣଙ୍କ ଆଶ୍ରମିକ ବ୍ୟବସ୍ଥାରେ ମୁଁ ଆଦୌ ହସ୍ତକ୍ଷେପ କରିବି ନାହିଁ ।"

## ସନ୍ନ୍ୟାସ ଦୀକ୍ଷା ଲାଭ

ତାପରେ ସନ୍ନ୍ୟାସାନୁଷ୍ଠାନ ପାଇଁ ଆୟୋଜନ ହେବାକୁ ଲାଗିଲା । ସନ ୧୩୭୧ ସାଲ (୧୯୬୦ ମଲକ୍ଷ୍ୱା) ଆଶ୍ୱିନ ଶୁକ୍ଳ ଅଷ୍ଟମୀ ଦିନ ଧାର୍ଯ୍ୟ ହେଲା । ଆବଶ୍ୟକୀୟ ସାମଗ୍ରୀର ତାଲିକା କରାଗଲା । ଦୀକ୍ଷାଦାତାଙ୍କ ପାଇଁ ବିଦ୍ୟାସାଗର ଚଟି ଯୋଗାଡ଼ କରି ଆଣିବାକୁ ଦରକାର ହେଲା । ମୁଁ ବହୁ ଆୟାସପୂର୍ବକ ଅନୁସନ୍ଧାନ କଲି, କିନ୍ତୁ ଭୁବନେଶ୍ୱର କିମ୍ବା କଟକରେ ଏହି ଜିନିଷଟି ପାଇପାରିଲି ନାହିଁ । ଶେଷରେ ଆବଶ୍ୟକୀୟ ଅର୍ଥ ଦେଇ ଚଟିର ଅଭାବ ପୂରଣ କଲି । ଓଡ଼ିଶା ସରକାରଙ୍କ କୃଷି ବିଭାଗର ତତ୍କାଳୀନ ସଚିବ ଉଦାରଚେତା ଗୁରୁଗତପ୍ରାଣ ଶ୍ରୀଯୁକ୍ତ ଗୋପାଳ ଦାଶଙ୍କ ସହାୟତାରେ କମଣ୍ଡଳୁ ଓ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ କିଣାଗଲା । ମସ୍ତକ ମୁଣ୍ଡନ କରାଇ, ସେ ବୈଦିକ ଶ୍ରାଦ୍ଧ ଓ ପିଣ୍ଡଦାନ କରାଇଲେ । ବିରଜା ହୋମ ଅନୁଷ୍ଠିତ ହେଲା । ସନ୍ନ୍ୟାସାନ୍ତେ ମୋ କାନରେ ଯଜୁର୍ବେଦ ପ୍ରତିପାଦ୍ୟ ମହାବାକ୍ୟ ଶୁଣାଇ ଭାବାତିଶଯ୍ୟରେ ମୂର୍ଚ୍ଛିତ ପ୍ରାୟ ହୋଇପଡ଼ିଲେ । ଚେତନା ଲାଭ ହେବା ପରେ କହିଲେ, "ଓଁ ନମୋ ନାରାୟଣ, ମୁଁ ଆଜି ପ୍ରୀତି ସହିତ ସଂଶୁଦ୍ଧାନନ୍ଦ, ତୁମେ ଏଣିକି ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ସନ୍ନ୍ୟାସ ସମସ୍ତ ପ୍ରକାର ଦୀକ୍ଷା ଦେବା ଅଧିକାର ଲାଭ କଲ । ନିଗମାନନ୍ଦ ଠାକୁରଙ୍କ ଠାରୁ ଲାଭ କରିଥିବା ଗୁରୁଭାର ତୁମକୁ ସମର୍ପଣ କରି ମୁକ୍ତ ହେଲି– ମୁଁ ଏଣିକି ଶାନ୍ତିରେ ଯାଇପାରିବି । ଅଧିକନ୍ତୁ, ଦଣ୍ଡ କମଣ୍ଡଳୁ ଧାରଣ କରିବାର ଅବସ୍ଥା ଓ ଆବଶ୍ୟକତା ତୁମର ଆଉ ନାହିଁ । ଏହା ମୋତେ ଫେରାଇ ଦିଅ ।" ଏହା କହି ମୋଠାରୁ ଦଣ୍ଡକମଣ୍ଡଳୁ କାଢ଼ି ରଖିଲେ ଓ ସକାଳ ସନ୍ଧ୍ୟା ଦୁଇଥର କୌପୀନ ପଞ୍ଚକ, ନର୍ବାଣାଷ୍ଟକ ଏବଂ ସଦ୍ୟୋଜାତ ମନ୍ତ୍ର ପାଠ କରିବା ପାଇଁ ଉପଦେଶ ଦେଲେ ।

ସନ୍ନ୍ୟାସ ଗ୍ରହଣ କଲାପରେ ମୋର ମନୋଗତ ସଂସ୍କାର ପରିବର୍ତ୍ତିତ ହେବା ମୁଁ ପ୍ରତ୍ୟକ୍ଷ ଅନୁଭବ କଲି । ବାହ୍ୟତଃ ବ୍ରହ୍ମଚର୍ଯ୍ୟ ଉପାଧି ଧାରଣ କରିଥିଲେହେଁ ଅଲକ୍ଷରେ ମୋର ସେହି ଆବରଣଟି ଅନେକ ଦିନୁ ଖସିସାରିଥିଲା । ତଥାପି ଆନୁଷ୍ଠାନିକ ଭାବେ ସ୍ଥୂଳ ସଂସ୍କାର ପାଇଁ ଏକ ପ୍ରତୀକ୍ଷା

ଲଦ୍ଧଥିଲ । ସନ୍ନ୍ୟାସ ନେବା ସଙ୍ଗେ ସଙ୍ଗେ ପିଞ୍ଜରମୁକ୍ତ କେଶରୀ ଭଳି ମୋର ଅନ୍ତରାତ୍ମା ଶରୀରକୁ ବିଦୀର୍ଣ୍ଣ କରି ବାହାରି ଆସିଲା ଭଳି ବୋଧହେଲା । ମନ ନିସ୍ତରଙ୍ଗ ହୋଇ ଆତ୍ମ ସ୍ୱରୂପରେ ନିମଜ୍ଜିତ ହେବାରୁ ଅବଶିଷ୍ଟ ଥିବା ଜାତିତ୍ୱବୋଧ ଓ ସଙ୍କୋଚ ଭାବ ଲୁପ୍ତ ହୋଇଗଲା ।

ଦୀକ୍ଷା ପରେ ଶ୍ରୀ ମାଣିକ ବ୍ରହ୍ମଚାରୀଙ୍କ ସଙ୍ଗେ ମେଦିନୀପୁର ଫେରିଯିବା ପାଇଁ ବିଦାୟ ନେଉଥିବା ବେଳେ ପ୍ରଜ୍ଞାନନ୍ଦ ମହାରାଜ ଏତେ ଜୋରରେ ଧମକ ଦେଇ ଶାସନ କଲେ ଯେ, ମୋ ଆଖିରୁ ଦୁଇ ବିନ୍ଦୁ ଲୁହ ଝରିପଡ଼ିଲା । ଆଶୀର୍ବାଦ କରି ସେ କହିଲେ, "ଦେଖ, ତୁମକୁ ଭିକ୍ଷା କରି ଖାଇବାକୁ ହେବ ନାହିଁ, ମହାରାଜଙ୍କ ଭଳି ରହିବ, ଗୁରୁଶକ୍ତି ତୁମର ସହାୟିକା ହୋଇ ସତତ ତୁମର କଲ୍ୟାଣ ବିଧାନ କରିବ ।"

# ଷୋଡ଼ଶ ଅଧ୍ୟାୟ

## ଆଶ୍ରମୀ

### ନିର୍ବାସିତ ସନ୍ନ୍ୟାସୀ

୧୯୬୮ ମସିହା ଡିସେମ୍ବର ମାସରେ ଆସାମ ମଠରେ ସାର୍ବଭୌମ ଭକ୍ତ ସମ୍ମିଳନୀ ଅନୁଷ୍ଠିତ ହେଲା । ଶ୍ରୀ କୃଷ୍ଣ ଗୋପାଳ ମୁଖାର୍ଜ୍ଜୀ, ତଦୀୟ ଭ୍ରାତା ଶ୍ରୀ ବ୍ରଜଗୋପାଳ ମୁଖାର୍ଜ୍ଜୀ ଏବଂ ଗୁଣାଭ୍ରାତୃବର୍ଗ ମୋର ରାସ୍ତାଖର୍ଚ୍ଚ ଯୋଗାଡ଼ କରି ଦେବାରୁ ହାଓଡ଼ାଠାରୁ ବିମାନ ଯୋଗେ ଯୋରହାଟ ହୋଇ କୋକିଳାମୁଖ ଗଲି । ଭକ୍ତ ସମ୍ମିଳନୀର ପଞ୍ଚାଶତ୍ ବର୍ଷ ପୂର୍ତ୍ତି ଉପଲକ୍ଷେ ସୁବର୍ଣ୍ଣଜୟନ୍ତୀ ଅଧିବେଶନ ଅନୁଷ୍ଠିତ ହେଉଥାଏ । ପ୍ରଜ୍ଞାନନ୍ଦ ସରସ୍ୱତୀଙ୍କଠାରୁ ମୁଁ ସନ୍ନ୍ୟାସ ଗ୍ରହଣ କରିଥିବା ସମ୍ବାଦ ଅତି ଶୀଘ୍ର ଭକ୍ତ ମହଲରେ ରାଷ୍ଟ୍ର ହୋଇଗଲା । ମହନ୍ତ ମହାରାଜ ଏହା ଜାଣିପାରି ପୁଣି ଥରେ ମୋତେ ସମସ୍ତ ସାରସ୍ୱତ ମଠାଶ୍ରମରୁ ବହିଷ୍କାର କରାଗଲି ବୋଲି ସମ୍ମିଳନୀରେ ଘୋଷଣା କଲେ । ଏହି ଘୋଷଣା ପ୍ରତି ମୁଁ ଉଦାସୀନ ଭାବ ପୋଷଣ କଲି । ସମ୍ମିଳନୀ ଶେଷରେ ଆସାମରୁ ଗଡ଼ବେତା ଫେରି ଆସି ପୂର୍ବ ଭଳି ରାଣାଙ୍କ ଘରେ ଅବସ୍ଥାନ କଲି ।

୧୯୬୯ ମସିହା ଜାନୁୟାରୀ ମାସ ୬ ତାରିଖ ଦିନ ମୋର ସନ୍ନ୍ୟାସ-ଦାତା ଗୁରୁଦେବ ପୂଜ୍ୟପାଦ ସ୍ୱାମୀ ପ୍ରଜ୍ଞାନନ୍ଦ ସରସ୍ୱତୀ ମହାରାଜ ମହାନିର୍ବାଣ ଲାଭ କରନ୍ତି । ଏହି ସମ୍ବାଦ ପାଇବା ସଙ୍ଗେ ସଙ୍ଗେ ମୁଁ ଭୁବନେଶ୍ୱର

ଯାତ୍ରା କଲି ଓ ଗୁରୁଦେବଙ୍କ ମହାସମାଧି ଉତ୍ସବରେ ଯୋଗଦେଲି । ଉକ୍ତୋପଲକ୍ଷେ ଧାମର ଉଦ୍ବୋଧନ ଅବସରରେ ଭୁବନେଶ୍ୱର ଶଙ୍କରାନନ୍ଦ ପୀଠର ମହାନ୍ତ ଶ୍ରୀମତ୍ ସ୍ୱାମୀ ସଚ୍ଚିଦାନନ୍ଦ ସରସ୍ୱତୀ ମହାରାଜଙ୍କ ପୌରୋହିତ୍ୟରେ ଶ୍ରୀ ଶ୍ରୀ ଗୁରୁବ୍ରହ୍ମଙ୍କ ପୂଜା, ନାରାୟଣ ବଳି ଓ ହୋମାନୁଷ୍ଠାନ କରାଯାଏ । ସ୍ଥାନୀୟ ବିଭିନ୍ନ ମଠାଶ୍ରମରୁ ଆମନ୍ତ୍ରିତ ସନ୍ନ୍ୟାସୀ ବ୍ରହ୍ମଚାରୀଙ୍କ ସମ୍ବର୍ଦ୍ଧନା ପାଇଁ ଯଥା ବିଧି ପାଦପୂଜା ଓ ମହାପ୍ରସାଦ ଭୋଜନ ଇତ୍ୟାଦି ଆୟୋଜନରେ ମୁଁ ନିଜକୁ ନିୟୋଜିତ କରେ ।

## ଆଶ୍ରମ ନିର୍ମାଣ

ସଂସାର ପ୍ରପଞ୍ଚ ଓ ବିଷୟ ଆଶୟର ମୋହ ତ୍ୟାଗ କରି ମହାବାକ୍ୟର ମର୍ମାନୁଶୀଳନ କରିବା ପାଇଁ ସାଧକ ସନ୍ନ୍ୟାସ ଗ୍ରହଣ କରେ, କିନ୍ତୁ ଯୋଗମାୟା କୃପାକରି ସାଧକକୁ ସେପରି ସୁଯୋଗ ପ୍ରଦାନ ନ କଲେ ସିଦ୍ଧିଲାଭ ସାଧକର ସାଧ୍ୟାୟତ୍ତ ନୁହେଁ । ଯେଉଁ ସନ୍ନ୍ୟାସଗୁରୁରୂପୀ ଜଙ୍ଗମ ବୃକ୍ଷ ଶାଖାକୁ ଆଶ୍ରୟ କରି ପରିଶେଷରେ ମୁଁ ସାରସ୍ୱତ ମଠାଶ୍ରମରୁ ବିତାଡ଼ିତ ହୋଇଥିଲି ଏବେ ସେହି ଗୁରୁଦେବ ଦୁର୍ଗାନନ୍ଦ ମହାରାଜଙ୍କ ତିରୋଭାବ ପରେ ମୋହମୟ ମମତ୍ୱ ଜାଲରୁ ମୋର ଉଚ୍ଛେଦ ପୂର୍ଣ୍ଣାଙ୍ଗ ହେଲା । ଉତ୍ସବ ଶେଷରେ ଭୁବନେଶ୍ୱରରୁ ଫେରି ଚଡ଼ିବେଡାରେ ରହୁଥିଲାବେଳେ 'ମୋର ଅବଶିଷ୍ଟ ଜୀବନ କିପରି ଅତିବାହିତ ହେବ ଏବଂ ମୋର କର୍ମକ୍ଷେତ୍ର କେଉଁଠି ହେବ' ଏହି ଚିନ୍ତା ମୋ ମନକୁ ସ୍ପର୍ଶ କଲା । ମେଦିନୀପୁର ନିକଟସ୍ଥ ଚିଦାନନ୍ଦ ମହାରାଜ*ଙ୍କ ଆଶ୍ରମରେ କୁଟୀର ନିର୍ମାଣ କରି ସ୍ୱତନ୍ତ୍ର ଭାବେ ଅବସ୍ଥାନ କରିବାକୁ ଚାହିଁଲି । କିନ୍ତୁ ମୋର ଉଦ୍ୟମ ସଫଳ ହୋଇପାରିଲା ନାହିଁ । ଅବଶେଷରେ ଗଡ଼ବେତା ଆସି ରାଣୀଙ୍କ ପରିବାରବର୍ଗଙ୍କ ସଙ୍ଗେ ପରାମର୍ଶ କଲି । ମୋତେ ସେମାନେ ବିଭିନ୍ନ ସ୍ଥାନ ଦେଖାଇଲେ । କିନ୍ତୁ ଗଡ଼ବେତା ଷ୍ଟେସନ୍ ପାଖାପାଖି ଆଶ୍ରମଟିଏ ନିର୍ମାଣ ପାଇଁ ମୋର ଆଗ୍ରହ ଥିବା ଲକ୍ଷ୍ୟ କରି

---

* ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ୧୯୬୩ ମସିହା ଅଗଷ୍ଟ ୧୯ ତାରିଖରେ ଦେହରକ୍ଷା କରନ୍ତି ।

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ଗୁଣ ସ୍ୱୀୟ ମହାନୁଭବତାର ନିଦର୍ଶନ ସ୍ୱରୂପ ତଥା ଶ୍ରୀ ଶ୍ରୀ ଠାକୁରଙ୍କ ମହତି ଇଚ୍ଛାର ରୂପାୟନରେ ପ୍ରତ୍ୟକ୍ଷ ଭାବେ ସହାୟତା କରିବା ପାଇଁ ଝାଡ଼ବଣୀ ମହଜା ଅନ୍ତର୍ଗତ ତାଙ୍କ ଜମିରୁ ଦୁଇଶହ ଦଶ ହାତ ଲମ୍ବା ଓ ନବେ ହାତ ଚଉଡ଼ା ଜାଗା ମୋ ନାମରେ ରେଜେଷ୍ଟ୍ରି କରିଦେଲେ । ଏହି ସ୍ଥାନରେ ୧୯୬୭ ସାଲ ଅକ୍ଷୟ ତୃତୀୟା ଉପଲକ୍ଷେ ଆଶ୍ରମ ନିର୍ମାଣ ଉଦ୍ଦେଶ୍ୟରେ ଶ୍ରୀ ଶ୍ରୀ ଠାକୁରଙ୍କୁ ଆବାହନ କରାଗଲା ଓ ସନ୍ୟାସୀ ସଂପ୍ରଦାୟର ପ୍ରଥାନୁଯାୟୀ ଗୈରିକ ପତାକା ଉତ୍ତୋଳିତ ହେଲା । ବର୍ଷାଦିନ ଆସିଯିବାରୁ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇପାରିଲା ନାହିଁ । ଆଶ୍ୱିନ ମାସରେ ବାଉଁଶ ଓ ଅନ୍ୟାନ୍ୟ ଉପକରଣ କିଣାଗଲା । ଟାଇଲ୍ ଘର କରିବା ପରିକଳ୍ପନା କଲି । ଆଦ୍ୟ ଆଶ୍ରମାଧ୍ୟକ୍ଷ ଶ୍ରୀମତ୍ ସ୍ୱାମୀ ବ୍ରହ୍ମାନନ୍ଦଙ୍କୁ ଟାଇଲ୍ ବରାଦ କରି ଯୋଗାଇ ଦେବାପାଇଁ ଦୁଇଶହ ଟଙ୍କା ଅଗ୍ରିମ ଦେଲି । ମୋତେ ଟାଇଲ୍ ଯୋଗାଇବା ପୂର୍ବରୁ ୧୯୬୭ ଡିସେମ୍ବର ମାସରେ ସେ ଦେହରକ୍ଷା କଲେ । ଶ୍ରୀ ବ୍ରଜଗୋପାଳ ମୁଖାର୍ଜୀଙ୍କୁ ମୋର ସମସ୍ୟା ଜଣାଇଲି । ତାଙ୍କର ଗୋଟିଏ ପୁରୁଣା ଘର ଥିଲା । ତାକୁ ଭାଙ୍ଗି ଦେଇଥିବାରୁ କାଠ ଇତ୍ୟାଦି ନେଇ ଆଶ୍ରମ ତିଆରି କରିବାକୁ ସେ କହିଲେ । ଗଡ଼ବେତାରେ ଅବସ୍ଥାପିତ କର୍ମଗୁଣମାନେ ନାନା ଭାବରେ ସାହାଯ୍ୟ ଦେଲେ । ଗୁଣଙ୍କ ପରିବାରରୁ ଓ ଅନ୍ୟାନ୍ୟ ଭକ୍ତଙ୍କଠାରୁ ଅନେକ ସାହାଯ୍ୟ ମିଳିଲା । ଶ୍ରୀ ନିତ୍ୟାନନ୍ଦ ଗୁଣ କୁଲି ମଜୁରିଆ ଯୋଗାଡ଼ କରି ନିର୍ମାଣ କାମ ତଦାରଖ କରିବାକୁ ଲାଗିଲେ । ପକ୍କା ଗୃହର ବ୍ୟବସ୍ଥା କରାଗଲା ଓ ଦୁଇ ବଖରା ରହିବା ଘର ସହ ଗୋଟିଏ ବାରଣ୍ଡା ନିର୍ମିତ ହେଲା । ୧୯୬୭ ମସିହା ପ୍ରାରମ୍ଭରୁ ସତ୍ୟ ନାମରେ ଜଣେ ଯୁବକ ମୋ ପାଖରେ ସେବକ ରୂପେ ଆସି ଯୋଗ ଦିଏ । ଆଶ୍ରମ ନିର୍ମାଣ କାଳରେ ତାର ସେବା ଓ ସାହାଯ୍ୟ ବିଶେଷ ପ୍ରଶଂସନୀୟ । ୧୯୬୭ ଶ୍ରାବଣ ପୂର୍ଣ୍ଣିମା ଶ୍ରୀ ଶ୍ରୀ ଠାକୁରଙ୍କ ଶୁଭଜନ୍ମ ତିଥି ଉପଲକ୍ଷେ ଆଶ୍ରମର ପ୍ରତିଷ୍ଠା କରାଯାଏ ଓ ନାମ ରଖାଯାଏ "ନିଗମାନନ୍ଦ ଯୋଗାଶ୍ରମ ।" ସେହି ବର୍ଷ ପୌଷ ମାସ ଭକ୍ତ ସମ୍ମିଳନୀ ବେଳେ ସତ୍ୟ ମୋଠାରୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଗ୍ରହଣ କରେ ।

# ଶିଷ୍ୟ ସମାଗମ

ମୋର ସନ୍ୟାସ ଦୀକ୍ଷାନୁଷ୍ଠାନ ସମୟରୁ ଭୁବନେଶ୍ୱରର ଭକ୍ତ ଶ୍ରୀ ଚକ୍ରପାଣି ମିଶ୍ର ଏକାଧିକବାର ମୋ ସହିତ ଦୀର୍ଘକାଳୀନ ଆଲୋଚନାରେ ବ୍ୟାପୃତ ହୋଇ ସ୍ଥୂଳ ମନୁଷ୍ୟରୂପୀ ଗୁରୁ ଗ୍ରହଣର ଆବଶ୍ୟକତା ଅନୁଭବ କରିପାରନ୍ତି ଓ ୧୯୬୭ ମସିହା ମାର୍ଚ୍ଚ ମାସରେ ମୋତେ ଗୁରୁଭାବେ ବରଣ କରି ଦୀକ୍ଷିତ ହୁଅନ୍ତି । ସେହି ବର୍ଷ ଡିସେମ୍ବର ମାସରେ ପ୍ରଜ୍ଞାନନ୍ଦଜୀ ପ୍ରତିଷ୍ଠିତ ଭୁବନେଶ୍ୱରସ୍ଥ ନିଗମାନନ୍ଦ ମଠ ଉପକଣ୍ଠରେ ଉତ୍କଳ ବିଭାଗ ତରଫରୁ ସାର୍ବଭୌମ ଭକ୍ତ ସମ୍ମିଳନୀ ଅନୁଷ୍ଠିତ ହୁଏ । ଏହି ସମ୍ମିଳନୀରେ ଯୋଗଦାନ କରିବା ସୁଯୋଗ ମଧ୍ୟ ମୋର ଲାଭ ହୁଏ । ପରବର୍ଷ ପୁଣି ମୋର ଭୁବନେଶ୍ୱର ଗସ୍ତ କାଳରେ ଶ୍ରୀ ପଦ୍ମନାଭ ମିଶ୍ର ଓ ତାପରେ ଶ୍ରୀ ଅଭିମନ୍ୟୁ ମିଶ୍ର ମୋଠାରୁ ଦୀକ୍ଷା ଗ୍ରହଣ କରନ୍ତି ।

ଆଶ୍ରମ ପ୍ରତିଷ୍ଠା ପରେ ଯେଉଁ କେତେକ ଶ୍ରଦ୍ଧାଶୀଳ ଭକ୍ତ ଭିନ୍ନ ସମୟରେ ମୋ ପାଖକୁ ଆସି ସପରିବାର ଦୀକ୍ଷା ଗ୍ରହଣ କରନ୍ତି ସେମାନଙ୍କ ମଧ୍ୟରେ ଓଡ଼ିଶାବାସୀ ଶ୍ରୀ ନବକିଶୋର ଦାଶ, ମେଦିନୀପୁର ନିବାସୀ ଶ୍ରୀ ଭବାନୀପ୍ରସାଦ ଦେ, ସ୍ଥାନୀୟ ଯୁବକ ଶ୍ରୀ ତୁଳସୀ ଭଟ୍ଟାଚାର୍ଯ୍ୟ, ଶ୍ରୀ ମଙ୍ଗଳ ସାହା, ଶ୍ରୀ ବିଜୟ ଘୋଷ ଆଦି ଅନ୍ୟତମ । ପୁନଶ୍ଚ ୧୯୭୦ ମସିହା ବେଳକୁ ମେଦିନୀପୁର ଲୋକାଲ ବ୍ୟାଙ୍କ ମ୍ୟାନେଜର ଶ୍ରୀ ଜିତେନ ଦାସ ବିଶେଷ ଶ୍ରଦ୍ଧା ସହକାରେ ମୋର ଶିଷ୍ୟତ୍ୱ ଗ୍ରହଣ କରନ୍ତି । ୧୯୭୨ ମୋର ପ୍ରବୀଣ ଶିଷ୍ୟ ଶ୍ରୀମାନ୍ ପ୍ରସନ୍ନ ବଡ଼ଜେନାଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଓଡ଼ିଶା ସରକାରଙ୍କ ବିଦ୍ୟୁତ୍ ବିଭାଗୀୟ ନିର୍ବାହୀ ଯନ୍ତ୍ରୀ ଶ୍ରୀ ପୂର୍ଣ୍ଣାନନ୍ଦ ଜେନା ସପରିବାର ମୋ ଦ୍ୱାରା ଦୀକ୍ଷିତ ହୁଅନ୍ତି । ଅତଃପର ଶ୍ରୀ ଜେନାଙ୍କ ଉଦ୍‌ଯୋଗରେ ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗର ସହକାରୀ ନିର୍ଦ୍ଦେଶକ ଶ୍ରୀମାନ୍ ଅଭିରାମ ରାଉତ ମଧ୍ୟ ସପରିବାର ମୋତେ ଗୁରୁପଦରେ ବରଣ କରନ୍ତି । କ୍ରମେ ଶିଷ୍ୟ ଭକ୍ତଙ୍କ ସଂଖ୍ୟା ବୃଦ୍ଧି ହୁଏ । ଫଳତଃ ୧୯୭୩।୭୪ ମସିହା ବେଳକୁ ସେମାନଙ୍କର ଏବଂ ଅନ୍ୟାନ୍ୟ ଶୁଭେଚ୍ଛୁ ବଦାନ୍ୟ ଧର୍ମପ୍ରାଣ ଲୋକଙ୍କ



ପରମାନନ୍ଦ ଯୋଗାଶ୍ରମ, ଝାଡ଼ବଣି ବହିର୍ଭାଗ

ଦ୍ରବ୍ୟ, ଅର୍ଥ ତଥା ଶ୍ରମରୂପୀ ଦାନ ବିନିଯୋଗରେ ପୁରୁଣା ଆଶ୍ରମ ଗୃହକୁ ଲଗାଇ ଗୋଟିଏ ଆସ୍‌ବେଷ୍ଟସ୍ ଛାତ ଥିବା ବରଣ୍ଡା, ପକ୍କା ଗ୍ରାଉଣ୍ଡବିଶିଷ୍ଟ ରହିବା ଘର ଓ ପାକଶାଳା ନିର୍ମିତ ହୁଏ । ଏହି ପ୍ରସଙ୍ଗରେ ମୋର ପ୍ରିୟଶିଷ୍ୟ ଶ୍ରୀମାନ୍ ପୂର୍ଣ୍ଣାନନ୍ଦ ଜେନାଙ୍କ ଅକାତର ଶ୍ରମ, ଶ୍ରଦ୍ଧା ଓ ଦାନ ଉଲ୍ଲେଖଯୋଗ୍ୟ ।

ଓଡ଼ିଶାରେ, ବିଶେଷତଃ ଭୁବନେଶ୍ୱରରେ ମୋର ଲୋକପ୍ରିୟତା ଓ ଆଶ୍ରମିକ ଉନ୍ନତି ପାଇଁ ଗୃହ ଭିକ୍ଷା ଇତ୍ୟାଦି ସଂଗ୍ରହ କାର୍ଯ୍ୟରେ ମୋର ପ୍ରିୟ ଶିଷ୍ୟ ଶ୍ରୀମାନ ଆର୍ତ୍ତତ୍ରାଣର ଭୂମିକା ଉଲ୍ଲେଖଯୋଗ୍ୟ । ମୁଁ ଭୁବନେଶ୍ୱରକୁ ଗଲେ ତାଙ୍କ ଘରେ ଦୀର୍ଘଦିନ ଧରି ଅବସ୍ଥାନ କରେ ଓ ସ୍ଥାନୀୟ ତଥା ବହିରାଗତ ନାନା ସାଧନପ୍ରେମୀ ଭକ୍ତଙ୍କ ସଙ୍ଗେ ଆଳାପ ଓ ଜିଜ୍ଞାସୁଙ୍କୁ ଉପଦେଶ ପ୍ରଦାନର ସୁଯୋଗ ମିଳେ । ଶ୍ରୀମାନ୍ ଆର୍ତ୍ତତ୍ରାଣ ଦୁଇଟି ଭୂମିକାରେ କର୍ମରତ : ପ୍ରଥମ. ନିଜକୁ ନିମ୍ନମୁଖୀ ପ୍ରକୃତିର ପାଶରୁ ମୁକ୍ତ କରିବା ପାଇଁ ଏବଂ ସଦ୍‌ଗୁରୁ ନିର୍ଭରତା ତଥା ବିଶ୍ୱାସକୁ ଦୃଢ଼ କରିବା ପାଇଁ ସାଧନପ୍ରୟାସୀ ହେବା; ଦ୍ୱିତୀୟ. ଜଣେ ବାର୍ତ୍ତାବହ ରୂପେ ଓଡ଼ିଶା ଓ ଓଡ଼ିଶା ବାହାରେ ସନାତନ ଗୁରୁଧାରା ଓ ସାରସ୍ୱତ ଆଦର୍ଶକୁ ପ୍ରଚାର କରିବା । ଗୁରୁ ସ୍ୱୀକାର କରିବା ପରଠାରୁ ଶ୍ରୀମାନ୍ ଆର୍ତ୍ତତ୍ରାଣଙ୍କ ଜୀବନରେ ଘଟିଥିବା କେତେକ ମୌଳିକ ପରିବର୍ତ୍ତନ ବିଶେଷ ଲକ୍ଷଣୀୟ ।

ଗତ ଚାରି ପାଞ୍ଚ ବର୍ଷ ମଧ୍ୟରେ ଭୁବନେଶ୍ୱର ବ୍ୟତୀତ ଦଶପଲ୍ଲା, ରାଜଗାଙ୍ଗପୁର ଓ ସମ୍ବଲପୁର ଅଞ୍ଚଳରେ ମଧ୍ୟ ଶ୍ରୀମାନ ପ୍ରସନ୍ନ ଓ ଶ୍ରୀମାନ ପୂର୍ଣ୍ଣାନନ୍ଦଙ୍କ ଭଳି ଏକନିଷ୍ଠ ଗୁରୁଗତପ୍ରାଣ ଶିଷ୍ୟଙ୍କ ସହଯୋଗରେ ଗୁରୁଶକ୍ତି କ୍ରିୟାଶୀଳ ହୋଇପାରିଛି । ଏହି ଆଦର୍ଶସ୍ଥାନୀୟ ଶିଷ୍ୟ ଭକ୍ତଙ୍କ ପ୍ରଭାବରେ ଜିଜ୍ଞାସୁ ଓ ସାଧନପିପାସୁ ଅନେକ ସଦ୍‌ଗୃହସ୍ଥ ମୋ ସଙ୍ଗେ ଆସି ଗୁରୁତତ୍ତ୍ୱ ଓ ସାଧନ ରହସ୍ୟ ଆଲୋଚନା କରିଛନ୍ତି । କେହି ଶିକ୍ଷା ଲାଭ କରିଛି, କେହି ବା ଶିକ୍ଷା ଓ ଦୀକ୍ଷା ଉଭୟ ଲାଭ କରିଛି । ମଦୀୟ ପୂଜ୍ୟପାଦ ଗୁରୁଦେବଙ୍କ ଭାବଧାରା ଓ ଜୟଗୁରୁ ନାମ କୀର୍ତ୍ତନର ମହିମା ସମେତ ମୋ ନିଜ ଜୀବନର ବିଚିତ୍ର ଇତିବୃତ୍ତି ଆଧାରିତ ପଦ୍ୟଦେଶାବଳୀ ସମ୍ବନ୍ଧ ପ୍ରଚ୍ଛିନ୍ନ

ହୋଇପାରିଛି । ଇଦାନିଂ ଅନ୍ୟାନ୍ୟ ସ୍ଥାନ, ଯଥା : ନୟାଗଡ଼, ଓଡ଼ିଶାର ଦକ୍ଷିଣ ପ୍ରାନ୍ତ, ଏପରିକି ଅନ୍ଧ୍ର ପ୍ରଦେଶରେ ମଧ୍ୟ ଧର୍ମପ୍ରାଣ ଭକ୍ତ ଶିଷ୍ୟଙ୍କ ମଧ୍ୟରେ ଗୁରୁକରଣ ଓ ଦୀକ୍ଷା ଲାଭ ପାଇଁ ସମ୍ବେଦନା ଜାଗି ଉଠିବା ବିଶେଷ ଆଶାପ୍ରଦ ଘଟଣା ।

## ଆନ୍ଧ୍ର ପ୍ରଦେଶରେ ଦୀକ୍ଷା

ମୋର ଶିଷ୍ୟ ଶ୍ରୀମାନ୍ ପ୍ରସନ୍ନ ବଡ଼ଜେନାଙ୍କ ମାଧ୍ୟମରେ ପ୍ରଥମେ ପୁରୀ ଜିଲ୍ଲା ବାଲେଡ଼ ଗ୍ରାମର ବନ୍ଧୁ ଗୁରୁପ୍ରେମୀ ଭକ୍ତ ମୋର ଶିଷ୍ୟତ୍ୱ ଗ୍ରହଣ କରନ୍ତି ଓ ପରେ ଗଞ୍ଜାମ ଜିଲ୍ଲା ବ୍ରାହ୍ମଣୀ ନୂଆ ଗାଁର ଶ୍ରୀ ଭଗିରଥି ସାହୁ ମୋ ପ୍ରତି ଆକୃଷ୍ଟ ହୋଇ ଆଶ୍ରମକୁ ଆସି ଶିଷ୍ୟତ୍ୱ ସ୍ୱୀକାର କରନ୍ତି । କ୍ରମେ ଏହି ଅଞ୍ଚଳର ଶ୍ରୀ ସନାତନ, ଶ୍ରୀ ପଞ୍ଚାନନ, ଶ୍ରୀ ଭଗବତ ଏବଂ ଶ୍ରୀ କୋଦଣ୍ଡ ପାତ୍ର ଇତ୍ୟାଦିଙ୍କୁ ମୁଁ ଦୀକ୍ଷା ପ୍ରଦାନ କରେ । ସନାତନଠାରୁ ଶ୍ରୀ ଶ୍ରୀ ଠାକୁରଙ୍କର, ମୋର ଓ ମାଙ୍କର (ପରବର୍ତ୍ତୀ ଅଧ୍ୟାୟ ଦ୍ରଷ୍ଟବ୍ୟ) ପ୍ରତିକୃତି (ଫଟୋ) ନେଇ ଡଙ୍କୁର ନିବାସୀ ମୋହନ ରାଓ ଓ ତାଙ୍କ ସ୍ତ୍ରୀ ଭକ୍ତି ସହକାରେ ପୂଜାର୍ଚ୍ଚନା କରିବାକୁ ଆରମ୍ଭ କଲେ । ମୋହନ ରାଓଙ୍କ ସ୍ତ୍ରୀ ମୋତେ ଅନେକଥର ସ୍ୱପ୍ନରେ ଦର୍ଶନ କରିବାରୁ ସେମାନଙ୍କର ବିଶ୍ୱାସ ଦୃଢ଼ୀଭୂତ ହେଲା ।

ଥରେ ମୁଁ ବ୍ରାହ୍ମଣୀ ନୂଆଗାଁକୁ ଯାଇଥିବା ଖବର ପାଇ ଶ୍ରୀ ମୋହନ ରାଓ ତାଙ୍କ ଗ୍ରାମର ଅନ୍ୟ ଜଣେ ଭକ୍ତ ଶ୍ରୀ ଜଗା ରାଓଙ୍କ ସଙ୍ଗେ ମୋ ପାଖକୁ ଆସି ମୋଠାରୁ ଦୀକ୍ଷା ନେବା ପାଇଁ ଅନୁରୋଧ କଲେ । ଏହି ଉଦ୍ଦେଶ୍ୟରେ ସେମାନେ ମୋତେ ଶଗଡରେ ବସାଇ ତାଙ୍କ ଗ୍ରାମ ଡଙ୍କୁରକୁ ନେଇଗଲେ । ଗ୍ରାମରେ ପହଞ୍ଚିବା ମାତ୍ରେ ସେହି ଗ୍ରାମର ପଚିଶ, ତିରିଶ ଜଣ ଲୋକ କୀର୍ତ୍ତନ କରି କରି ମୋତେ ଜଗା ରାଓଙ୍କ ଘର ପର୍ଯ୍ୟନ୍ତ ସ୍ୱାଗତ କରିନେଲେ । ଏଠାର ସମସ୍ତେ ତେଲୁଗୁ ଭାଷାଭାଷୀ । ମୁଁ ତାଙ୍କ ଭାଷା ଆଦୌ ବୁଝିପାରୁନଥାଏ । ଭଗବତ ପାତ୍ର ଉଭୟ ଓଡ଼ିଆ ଓ ତେଲୁଗୁ ଭାଷା ଜାଣିଥିବା ଯୋଗୁଁ ସେ ଆମର ଅନୁବାଦକ ରୂପେ କାର୍ଯ୍ୟ କଲେ । ସେଥରକ ସେଠାରେ ପ୍ରାୟ ଆଠ ଜଣଙ୍କର ଦୀକ୍ଷା ଲାଭ ହୁଏ ।

ଏହି ଅଞ୍ଚଳରେ ମୋର ପ୍ରବଚନ ଓ ପ୍ରର୍ଯ୍ୟଟନ ଖବର ପାଇ କେତେକ ସଂସ୍କୃତ ଶାସ୍ତ୍ରବିତ୍ ପଣ୍ଡିତ ମୋର ଆଦର୍ଶ ଓ ଉଦ୍ଦେଶ୍ୟ ସମ୍ବନ୍ଧରେ ଅବଗତ ହେବା ପାଇଁ ମୋ ସହିତ ସାକ୍ଷାତ କରି ଆଳାପ କଲେ । କଥାପ୍ରସଙ୍ଗରେ ସେମାନେ ମୋଠାରୁ ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ ଅବସ୍ଥାର ଲକ୍ଷଣ ଓ ଭେଦ ଜାଣିବାକୁ ଚାହିଁଲେ । ତାଙ୍କ ତେଲୁଗୁ ପ୍ରଶ୍ନର ଅନୁବାଦ ଶୁଣିସାରି ଘଟବତକୁ ଓଡ଼ିଆ ଭାଷାରେ ମୁଁ ଉତ୍ତର ଦେବାକୁ ଲାଗିଲି । ଭାଗବତ ଠାରୁ ମୋର ବକ୍ତବ୍ୟର ମର୍ମ ଉପଲବ୍ଧି କରି ପଣ୍ଡିତମାନେ ମୋତେ ଜଣେ ଉପଯୁକ୍ତ ଯୋଗୀଗୁରୁ ବୋଲି ସ୍ୱୀକାର କଲେ ଏବଂ ମୋଠାରୁ ଶିକ୍ଷା ଦୀକ୍ଷା ଗ୍ରହଣ କରିବା ପାଇଁ ଲୋକମାନଙ୍କୁ ଉତ୍ସାହିତ କଲେ । ଏହାଫଳରେ ସେଠାରେ ମୋର ଖ୍ୟାତି ବୃଦ୍ଧି ପାଇଲା । ଆନ୍ଧ୍ର ପ୍ରଦେଶରେ ପ୍ରଚଳିତ ଆହାର ଗ୍ରହଣ କରିବା ଦ୍ୱାରା ସେଥରକ ମୁଁ ଉଦରାମୟ ରୋଗରେ ଆକ୍ରାନ୍ତ ହେଲି ।

ଦ୍ୱିତୀୟଥର ମୁଁ ଓ ମା ଉଭୟେ ଆନ୍ଧ୍ର ପ୍ରଦେଶ ଯାତ୍ରା କଲୁ । ଭକ୍ତଙ୍କଠାରେ ଆମକୁ ସମ୍ବର୍ଦ୍ଧନା କରିବା ପାଇଁ ଏଥରକ ଲୋକଙ୍କର ଉତ୍ସାହ ବୃଦ୍ଧି ପାଇଥିବା ଦେଖାଗଲା । ନାମ କୀର୍ତ୍ତନ ସହ ଆମକୁ ସ୍ୱାଗତ କରିବା ପରେ ପ୍ରତି ଗୃହର ଦ୍ୱାର ସମ୍ମୁଖରେ ପୂର୍ଣ୍ଣ କୁମ୍ଭ ଓ ପ୍ରଦୀପ ରଖି ଭକ୍ତଗଣ ଆମର ବନ୍ଦାପନା କଲେ । ଦୂରଦେଶାଗତ ଗୁରୁଙ୍କ ସାନ୍ନିଧ୍ୟରେ ସରଳ ଭକ୍ତ ପ୍ରାଣ ପୁଲକିତ ହୋଇ ଉଠିଥିଲା । ଆମେ ସେଠାରେ ଗ୍ରୀଷ୍ମ ପାଞ୍ଚଦିନ ଅବସ୍ଥାନ କଲୁ । ବୁରୁଜପଡ଼ା ସିମାଦ୍ରୀ ଗୁଡ଼ିଆ ଆଦି କେତେକ ତେଲୁଗୁ ଭକ୍ତ ଦୀକ୍ଷା ଗ୍ରହଣ କଲେ । ପୂର୍ବାଶ୍ରମରେ ପିତାଙ୍କ ସଙ୍ଗେ ରେଲ୍‌ଓ୍ୱେ କଲୋନିମାନଙ୍କରେ ବାସ କରିଥିବାରୁ ମାଙ୍କର ତେଲିଙ୍ଗି ଦେଶୀୟ ଭାଷା ଓ ଆଚାର ଇତ୍ୟାଦି ସମ୍ବନ୍ଧରେ ସାମାନ୍ୟ ଅଭିଜ୍ଞତା ଥିଲା । ତାଙ୍କ ପରାମର୍ଶକ୍ରମେ ଏଥରକ ଭୋଜନ ଶେଷରେ ଦହି ଚୁନ୍‌ପାଣି ପିଇଲି । ତେଣୁ ଆଗଭଳି ମୋର ପେଟ ଆଉ ଅସୁସ୍ଥ ହେଲା ନାହିଁ ।

---

# ସପ୍ତଦଶ ଅଧ୍ୟାୟ

## ମା

### ଶ୍ରୀ ନନ୍ଦରାଣୀ

ଏତାବତ୍ ମୋର ବିକାଶ ଓ ଆଶ୍ରମ ପ୍ରତିଷ୍ଠାର ନାନା ଦିଗ ଆଲୋଚିତ ହୋଇଥିଲେହେଁ ସନ୍ନ୍ୟାସୀ ଜୀବନର ସହଯାତ୍ରୀ ଭୂମିକାରେ ମା'ଙ୍କ ଆବିର୍ଭାବ କଥା ବିବୃତ ହୋଇନାହିଁ । ଜନ୍ମ ହେବାର କିଛିକାଳ ପରେ ମୁଁ ମୋର ଜନ୍ମଦାତ୍ରୀଙ୍କୁ ହରାଇଥିଲି । ମଧ୍ୟଜୀବନରେ ଏବଂ ଜୀବନର ଅପରାହ୍ଣରେ ମାମିମା ରୂପେ ଓ ଶିଷ୍ୟାରୂପେ ଯଥାକ୍ରମେ ଶକ୍ତି ସାଧନା ଓ ଆଶ୍ରମ ପରିଚାଳନାରେ ଯେଉଁ ମା'ମାନେ ସହାୟିକା ହୋଇ ମୋର ଶକ୍ତି ଜୀବନକୁ ପରିପୂର୍ଣ୍ଣ କଲେ ତନ୍ମଧ୍ୟରୁ ପ୍ରଥମାଙ୍କ କଥା ଆଗରୁ ଉଲ୍ଲିଖିତ ହୋଇଅଛି । ତେଣୁ ଏଠାରେ ଶେଷୋକ୍ତ ମା'ଙ୍କ ବିଷୟରେ କିଞ୍ଚିତ ଆଭାସ ଦେବାକୁ ଚେଷ୍ଟିତ ହେବି ।

ମେଦିନୀପୁର ଜିଲ୍ଲା ଜଗନ୍ନାଥପୁର ଗ୍ରାମ ଖଡ଼କୁସମା ଆଶ୍ରମ ସଙ୍ଗେ ବହୁଦିନ ସମ୍ପର୍କ ରକ୍ଷା କରି ଆସିଥିଲି । ସେହି ସୂତ୍ରରେ ଏହି ଗ୍ରାମବାସିନୀ ଶ୍ରୀମତୀ ନନ୍ଦରାଣୀ ମୁଖାର୍ଜୀ ଚିଦାନନ୍ଦ ମହାରାଜ ଓ ଚଣ୍ଡୀଦା ପ୍ରଭୃତିଙ୍କ ପରିଚିତା ଥିଲେ । ସାଧୁ ସନ୍ନ୍ୟାସୀଙ୍କ ପ୍ରତି ଶ୍ରଦ୍ଧା ଭକ୍ତି ଓ ଧର୍ମାନୁଶୀଳନ କ୍ଷେତ୍ରରେ ଏହି ମା'ଙ୍କ ଅଦ୍ୱିତୀୟା ବୋଲି ମୁଁ ଶୁଣିବାକୁ ପାଇଥିଲି । ଥରେ ଆଶ୍ରମାନ୍ତେବାସୀ ଶ୍ରୀ କେଶବାନନ୍ଦ ଜୀ ସମ୍ଭବତଃ ମୋତେ କହିଲେ, "ଜଣେ ଖୁବ୍ ଉଚ୍ଚକୋଟୀର ଭକ୍ତିମତୀ ଓ ସୁପଣ୍ଡିତା ମା ଅଛନ୍ତି ଯାହାଙ୍କ ସଙ୍ଗେ କଥା ପର୍ଯ୍ୟନ୍ତ କହିବା ତୁମ ପକ୍ଷରେ ଦୁରୂହ ହେବ । କାରଣ ତାଙ୍କ ଭାଷା ଓ ଭାବର ସ୍ତରେ ସ୍ତରେ କଠିନ ଆଧ୍ୟାତ୍ମିକ ତତ୍ତ୍ୱ ପ୍ରତିଫଳିତ । ତେଣୁ ଆମେ

ତାଙ୍କ ପାଖକୁ ଯାଇ ଅକାରଣ କାହିଁ ଆତ୍ମସମ୍ମାନ ନଷ୍ଟ କରିବା ?" ମା'ଙ୍କ ବିଷୟରେ ଏପରି ମତାମତ ଶ୍ରୀ ହୋଇ ମା'ଙ୍କ ସଙ୍ଗେ ସାକ୍ଷାତ କରିବାକୁ ଆଗ୍ରହ ଜାଗିଥିଲେହେଁ ମୁଁ ସେ ଦିଗରେ କୌଣସି ଉଦ୍ୟମ କରିନଥାଏ ।

ଥରେ ମୁଁ ଓ କେଶବାନନ୍ଦ ଜୀ ଦୁହେଁ ଏକା ସଙ୍ଗେ ଜଗନ୍ନାଥପୁର ଯାଇଥିଲୁ । ମୋର ଜଣେ ଶିଷ୍ୟଙ୍କ ଘରେ ଆମ୍ଭମାନେ ଆଳାପ କଲାବେଳେ ଏହି ମା'ଙ୍କ ସଙ୍ଗେ ସେଠାରେ ଦୈବାତ୍ ସାକ୍ଷାତ ହୋଇଗଲା । ମୁଁ ସାଧନାର ଉଚ୍ଚତର ସୋପାନମାନଙ୍କର ପ୍ରସଙ୍ଗ ଉତ୍ଥାପନ କଲି । ତହିଁରେ ମା'ଙ୍କର ଆଗ୍ରହ ଜାଗିଲା । ସେ ପଚାରିଲେ, "ଯଦି ଅଧିକ ଉଚ୍ଚତର ସ୍ତର ଅଛି ତେବେ ସେଠାରେ କପରି ପହଞ୍ଚି ହେବ ?" 'ଗୁରୁଙ୍କ ଅନୁମତି ଓ ଅନୁଗ୍ରହ ହେଲେ ସାଧନାର ସ୍ତର ଖୋଲେ' ବୋଲି ମୁଁ କହିବା ପରେ ଆମେମାନେ ଭୋଜନ କରିସାରି ହେଥରକ ପାଇଁ ବିଦାୟ ନେଲୁ ।

ଶ୍ରୀ ନନ୍ଦରାଣୀ ମୁଖାର୍ଜି କଲିକତା ସ୍ଥିତ ଶାରଦେଶ୍ୱରୀ ଆଶ୍ରମର ପ୍ରତିଷ୍ଠାତ୍ରୀ ମା ଦୁର୍ଗାପୁରୀ (ଶାରଦା ମା'ଙ୍କର ଶିଷ୍ୟା)ଙ୍କ ମନ୍ତ୍ରଶିଷ୍ୟା ଥିଲେ । ଗୁରୁଙ୍କ ଅନୁମତିରେ ସାଧନାସ୍ତର ଖୋଲିବା କଥା ଶୁଣି ନିଜ ଗୁରୁଙ୍କ ସଙ୍ଗେ ପରାମର୍ଶ କରିବାକୁ ତାଙ୍କର ଆକାଂକ୍ଷା ଜାଗିଲା । ଥରେ ଗୁରୁଙ୍କ ସଙ୍ଗେ ସାକ୍ଷାତ୍ କରି ମା' ପଚାରିଲେ, "ଆଧ୍ୟାତ୍ମିକ ପ୍ରଗତିକାମୀ ସାଧକ ଉଚ୍ଚତର ସାଧନ ସ୍ତରରେ ଉପନୀତ ହେବା ଉପାୟ ଆପଣ ଅନୁଗ୍ରହ କରି ଜଣାଇବେ କି ? ଇହଜନ୍ମରେ ମୋର କଣ ଊର୍ଦ୍ଧ୍ୱତନ ସ୍ତରର ଅନୁଭୂତି ଲାଭ ହୋଇ ପାରିବ ?" "ହେବ ନାହିଁ କାହିଁକି, ନାରାୟଣ ତୁମର ବାସନା ପୂର୍ଣ୍ଣ କରିବେ" ଅନୁକମ୍ପାଯୁକ୍ତ ସ୍ୱରରେ ଗୁରୁମା ଉତ୍ତର ଦେଲେ ।

ପିଲାଦିନୁ ନନ୍ଦରାଣୀମାଙ୍କର ସାଧନ ଭଜନ ପ୍ରତି ସ୍ୱାଭାବିକ ସହଜ ଆକର୍ଷଣ, ଅଥଚ ସଂସାରାଶ୍ରମରେ ସ୍ୱାମୀ ଓ ଦୁଇଟି ସନ୍ତାନଙ୍କର ନିରବଚ୍ଛିନ୍ନ ସେବା ପାଇଁ ଦେହର ସ୍ୱାସ୍ଥ୍ୟ ଓ ସାମର୍ଥ୍ୟ ଉଭୟେ ଅନ୍ତରାୟ ସୃଷ୍ଟି କରନ୍ତି । ଯୌବନାବଧି 'ଆଜ୍‌ମା' ବା ଶ୍ୱାସ ରୋଗରେ ପୀଡ଼ିତା ହୋଇ ତାଙ୍କୁ ଅକଥନୀୟ ଦୁଃଖ ଭୋଗ କରିବାକୁ ହୁଏ । ସଂସାରାଶ୍ରମର ଏପରି ବ୍ୟର୍ଥତା ଓ

ପ୍ରାକୃତିକ ପରିବେଶ ତାଙ୍କର ଆଧ୍ୟାତ୍ମ ଚେତନା ଜାଗରଣରେ ବିଶେଷ ସହାୟକ ହୋଇଥିଲା । ସଂସାର ତ୍ୟାଗ କରିବା ଅଭିପ୍ରାୟ ମନରେ ଗୋପନ ରଖି ପ୍ରଥମେ ନିଜ କନ୍ୟାକୁ ଶାରଦେଶ୍ୱରୀ ଆଶ୍ରମଭୁକ୍ତ କରନ୍ତି । ପରବର୍ତ୍ତୀ କାଳରେ ଏହି କନ୍ୟା ମା ଦୁର୍ଗାପୁରୀଙ୍କଠାରୁ ସନ୍ୟାସ ଗ୍ରହଣ କରି ଛପନ୍ତୀପୁରୀ ନାମରେ ପରିଚିତା ହୁଅନ୍ତି ।

## ମା ଆଶ୍ରମକୁ ଆସିଥିଲେ

ମୋ ସହିତ ମଝେ ମଝେ ମାଙ୍କର ସାକ୍ଷାତ ହୁଏ । ଥରେ ସେ ମୋ ସହିତ ଖଡ଼କୁସମା ଆଶ୍ରମକୁ ବୁଲି ଯାଇଥିଲେ । ଉଦାସିନୀ ସାଧୁଭାବ ଗ୍ରବ । ପୁଅଟି ବି. କମ୍. ପଢ଼ୁଥାଏ । ବିଧିନିର୍ଦ୍ଦିଷ୍ଟ ଲୀଳାର ଅନ୍ତିମ ଦୃଶ୍ୟ ତଥାପି ଅଭିନୀତ ହୋଇନାହିଁ—ଯେଉଁ ଲୀଳାର ପ୍ରଭାବ କଦାଚିତ୍ କଠୋର ଅଥଚ ଶିବସଂକଳ୍ପିତ ! ପ୍ରାରବ୍ଧ ସୂତ୍ରରେ ଅଗ୍ନିନକ ଭାବେ ପୁଅର ଉନ୍ମାଦ ରୋଗ ଦେଖାଦେଲା । ଏହି ସମୟରେ ବଡ଼ବେଲାଠାରେ ନିଗମାନନ୍ଦ ଆଶ୍ରମ ପ୍ରତିଷ୍ଠା ସମ୍ବାଦ ପ୍ରଚାରିତ ହୋଇଥାଏ । ଦିନେ ଆଶ୍ରମ ବାରଣ୍ଡାଟି ପରିଷ୍କାର ହେଉଥିବା ବେଳେ ଦେଖିଲି, ମା'ଙ୍କର ସେହି ପୁଅଟି ଆଶ୍ରମଠାରେ ହାଜର । "କରେ, ତୁ ଏଠାରେ ?" ତାକୁ ପଚାରିଲି । ସେ କହିଲା, "ମା ଆପଣଙ୍କ ପାଖକୁ ପଠାଇଛନ୍ତି । କିଛିଦିନ ବୁଲି ବୁଲି ଯିବ ।" ତାଅର ଅବସ୍ଥା ତଥାପି ଖୁବ୍ ଖରାପ ହୋଇନଥାଏ । ତାର ଅସ୍ୱାଭାବିକ ଦୃଷ୍ଟି ଓ ଭାଷା ଲକ୍ଷ୍ୟ କରିଗଲି ।

ମାଙ୍କର କୁଶଳାଦି ପଚାରି ତାକୁ ରହିବାକୁ କହିଲି । ଭଲ ନାମ ପ୍ରଣବ ମୁଖାର୍ଜି—ଡ଼ାକନାମ ଧନୁ । ଅଳ୍ପଦିନ ପରେ ମା ଆସି ପହଞ୍ଚି ଗଲେ । ଭାବିଲେ ପୁଅର ଅସୁସ୍ଥତା ବଢ଼ିଯାଇଥିବ—ମନରେ ଘୋରତର ଦୁଶ୍ଚିନ୍ତା ! ମୋତେ ଆଗରୁ ଜାଣନ୍ତି, ଆଶ୍ରମ ଗଢ଼ାହୋଇଛୁ—ତେଣୁ ଗୋଟିଏ ଆଶ୍ରମରୁ ଆଉ ଗୋଟିଏ ଆଶ୍ରମକୁ ତାଙ୍କର ଏହି ଉକ୍ତିକାନ୍ତି ତଥାପି ବାସ୍ତବ ବୋଲି ମନେ ହୋଇନାହିଁ । ସ୍ୱାମୀ ମାସକୁ ମାସ ମାତା ଓ ପୁଅଙ୍କର ଭରଣ

ପୋଷଣ ପାଇଁ ଆବଶ୍ୟକୀୟ ଅର୍ଥ ଯୋଗାଇ ଦେଉଥାଆନ୍ତି । ମୋ ଉପରେ ମା'ଙ୍କର କୌଣସି ଦାବୀ ନଥାଏ । ପୂଅର ସେବା ଯତ୍ନ ଓ ଉପେକ୍ଷିତ ଗଛ ଏଇ କେତୋଟି ମାତ୍ର ଦୃଷ୍ଟାନ୍ତ ।

## ପ୍ରାରବ୍ଧ କ୍ଷୟର ସୁଯୋଗ

ଏତିକରେ ମା'ଙ୍କର କଷ୍ଟ ଶେଷ ହୁଏ କିଆଁ ? ଅତର୍କିତ ଭାବେ ମୋର ପୁଣି ଗୋଟିଏ ଦାରୁଣ କର୍ମର ସୂତ୍ର ଉଦ୍‌ଘାଟିତ ହୁଏ । ଚକ୍ଷୁର ତେଜ କ୍ରମଶଃ କ୍ଷୀଣ ହେବାକୁ ଲାଗେ । ଦିନକୁଦିନ ଅବସ୍ଥା ଶୋଚନୀୟ ହୋଇ-ପଡ଼େ । କ୍ରମେ ଚଳାଚଳ କରିବା ମୋ ପକ୍ଷରେ କଷ୍ଟକର ହେଲା । ଆଶ୍ରମ ପ୍ରତିଷ୍ଠା ପରେ ଅଦ୍ଭୁତ ମାସଟି ଗତ ହୋଇ, ଆଶ୍ୱିନ ଶେଷ ହେଉଛି, ଏଇ କେତେଦିନ ମଧ୍ୟରେ ମୁଁ ଯେପରି ପୂରାପୂରି ଅନ୍ଧ ହୋଇଗଲି । ସନ୍ନ୍ୟାସୀର ନବ ନିର୍ମିତ ସଂସାରରେ ଘୋର ବିପର୍ଯ୍ୟୟ । ପ୍ରଥମ ଆଶ୍ରମ ବାସ କାଳରେ ପ୍ରବଳ ଶାରୀରିକ ଅସୁସ୍ଥତା ପରେ ରୋଗ କରିଥିଲି—ଜୀବନ ସଙ୍କଟ ଉପସ୍ଥିତ ହୋଇଥିଲା । କିନ୍ତୁ ଯୌବନାବସ୍ଥା ହୋଇଥିବାରୁ କାହାର ସେବା ଯତ୍ନର ଅପେକ୍ଷା ନ ରଖି ଗୁରୁନିର୍ଭରତାରୂପୀ ଔଷଧ ସେବନଦ୍ୱାରା ସେଥର ରୋଗ କବଳରୁ ମୁକ୍ତି ମିଳିଥିଲା । ପୁଣି ଥରେ ଆଦ୍ରା ଅଶ୍ରମଠାରେ ମରଣାପନ୍ନ ହୋଇ ପଡ଼ିଥିଲି କିନ୍ତୁ ଏହା ଶାରୀରିକ ବ୍ୟାଧି ହୋଇ ନଥିବାରୁ କାହାରି ସେବା ଯତ୍ନର ଅପେକ୍ଷା ନ ଥିଲା । ଅଧିକନ୍ତୁ ଆଶ୍ରମାନ୍ତେବାସୀ ଭାବରେ ଦେହ ଧାରଣ କରିବା ପାଇଁ ଆବଶ୍ୟକୀୟ ଖାଦ୍ୟସାମଗ୍ରୀର ଅଭାବ ନଥିଲା । ଏଇ ତୃତୀୟବାର ଘନାୟମାନ ବିପଦ କବଳରୁ କିନ୍ତୁ ଆଉ ରକ୍ଷା ନାହିଁ । ସେତେବେଳେ ଏକମାତ୍ର ଗୁଣାଙ୍କ ପରିବାରକୁ ଛାଡ଼ିଦେଲେ ଗଡ଼ଦେତା ଇଲାକାରେ ଅନ୍ତରଙ୍ଗ ହୋଇ ଆଉ କେହି ନଥାନ୍ତି । ସତ୍ୟ ବ୍ରହ୍ମଗୃହୀ ନବୀନ ଓ କୋମଳମତି । ମୁଁ ନିଜେ ନାନା ସ୍ଥାନ ଭ୍ରମଣ କରି ନାନା ଭାବରେ ଭିକ୍ଷା ସଂଗ୍ରହ ନ କଲେ ଆଶ୍ରମ ପରିଚାଳନା ହୁଏ କିପରି ? ସକାଳ ସନ୍ଧ୍ୟା ଯେ, କାହାରି ଖାଦ୍ୟ ସଂସ୍ଥାନ ହେବ ଏଇ ଚିନ୍ତା ମନରେ ବ୍ୟଗ୍ରତା ସୃଷ୍ଟି କଲା । ପିଲାଦିନୁ ମା'ଙ୍କୁ ହରାଇଥିଲି କିନ୍ତୁ ତାଙ୍କ କୃପାଶୀର୍ବାଦରୁ ଜୀବନ ସାରା ମୁଁ

ବାଳକ ଗ୍ରବରେ ବନ୍ଦପାଗଲ । ତା ହୋଇନଥିଲେ ଜୀବନର ଏପର କୁକ୍ଷଣରେ ନିଜ ପୁତ୍ରର ଦ୍ରାରବ୍ଧ ସଂସ୍କୃତିକୁ ଅଶ୍ରସ୍ତ କର ଆଶ୍ରମ ଦ୍ୱାରରେ ମା କାହିଁକି ଆସି ପହଞ୍ଚିଥାଆନ୍ତେ ? ମୁଁ ଅନ୍ଧ ପ୍ରାପ୍ତ ହେବ ବୋଲି ତ ସେ ଜାଣିନଥିଲେ !

## ମା'ଙ୍କ ଯତ୍ନ : ମୋର ଦୁରବସ୍ଥା

ଆଗରୁ ମୋର ଅନାଗତ ଦୁର୍ଦ୍ଦଶାର ତରଙ୍ଗ ତାଙ୍କ ପାଖରେ ପହଞ୍ଚି ହୃଦକ ତାଙ୍କୁ ଆକୃଷ୍ଟ କରିଥିଲା । ଆଶ୍ରମକୁ ଆସି ପାଗଳ ଓ ଅନ୍ଧ ଉଭୟ ପୁଅଙ୍କ ଦାୟିତ୍ୱ ସେ ବହନ କଲେ । ଜଣକର ବୟସ ଆନୁମାନିକ ଏବକାଇଶି, ଅନ୍ୟଟିର (ଅର୍ଥାତ୍ ମୋର) ଏକଷଠି । ଆଖିର ତେଜ ଫିଟିବା ପାଇଁ କେତେ ରକମର ଚିକିତ୍ସା ବ୍ୟବସ୍ଥା ସେ ନ କଲେ ! କେତେ ଜାଗାରୁ ପତ୍ରର ରସ, ଅଞ୍ଜନ, ବାଇଓକେମିକ୍ ଔଷଧ, ହୋମିଓ ପାଥିକ ଚିକିତ୍ସା ସମସ୍ତ ବିଫଳ ହେଲା । ଆଖିରେ ମୋତିଆବିନ୍ଦୁ ପଡ଼ିଥିବା ସନ୍ଦେହ କରାଗଲା । ଅସ୍ତ୍ରୋପଚାରର ବ୍ୟତୀତ ସେ ଆଉ ଭଲ ହେବାର ନୁହେଁ ! ମା କିନ୍ତୁ ଆଶା ଛାଡ଼ିନଥାନ୍ତି । ଆଶ୍ରମରେ ତାଙ୍କର ସେବା ଯତ୍ନ ଚାଲୁ ରହିଥାଏ । ସଙ୍ଘ ବ୍ରହ୍ମଚାରୀ ପାକଶାଳା ଓ ଅନ୍ୟାନ୍ୟ ଆନୁସଙ୍ଗିକ ଦାୟିତ୍ୱ ତୁଲାଉଥାଏ ।

ମୁଁ ତଥାପି ଆଶ୍ରମ ବାହାରକୁ ଅର୍ଥାତ୍ ରାଧାନଗର ଫତେସିଂହପୁର ଅମଳାଗୋଡ଼ା ଯିବା ଆସିବା କରେ । ରାସ୍ତା ଘାଟ ଦେଖିବାକୁ ମୋଟେ ବଶୁନଥାନ୍ତି । ପୂର୍ବ ଅଭ୍ୟାସ ବଳରେ ଅନ୍ଦାଜ କରି ଏବଂ ଶବ୍ଦକୁ ବାରି ବାରି ଖଣ୍ଡିଏ ବାଡ଼ି ସାହାଯ୍ୟରେ ଖାଲ ଢିପ ମାପି ମାପି ଚାଲିବାକୁ ଲାଗି-ପଡ଼ିଥାଏ ।

ପ୍ରଥମ ପ୍ରଥମ ହାତରେ ବାଡ଼ି ଧରିବା ଅଭ୍ୟାସ ନ ଥିଲା । ଆଶ୍ରମ ସାମନା ସରକାରୀ କେନାଲ ହିଡ଼ରେ କିଛିଦୂର ଯିବା ପରେ କେନାଲ ପାରି ହୋଇ ପଡ଼ିଆ ମଝିରେ ରାସ୍ତା । ଦିନେ ଚାଲି ଯାଉ ଯାଉ କେନାଲ ହିଡ଼ରୁ ଗୋଡ଼ ଖସିଯାଇ ଗଡ଼ିପଡ଼ିଲି । ଗୋଲ୍ ଗୋଲ୍ ଗୋଡ଼ି ଦେହରେ ଘଷି ହୋଇ

ବେଶ୍ ଜ୍ୱାଳା ଦେଲା । ଦୂରା ହେବାରୁ ମନକୁ ମନ ଦୁଇ ତିନଥର ସେଇଠି ନିଜକୁ ଝାଡ଼ିଲି । ମନେ ମନେ ଠାକୁରଙ୍କୁ ଜଣାଇଲି, "ଆଉ କେହି ଶାସନ କରିବାକୁ ମିଳିଲେନି ?" ଆଉ ଦିନେ ବଜାରକୁ ଯାଇଛି, ଜଣଙ୍କ ସଙ୍ଗେ ଯୋର ଧକ୍କା ଲାଗିଗଲା । ସେଇ ଦିନଠାରୁ ବାଡ଼ି ଖଣ୍ଡିଏ ଧରି ସାବଧାନରେ ଯିବା ଆସିବା କରିବାକୁ ଲାଗିଲି ।

## ଅସ୍ତ୍ରୋପଚାର

୧୯୬୭ ମାର୍ଚ୍ଚ ମାସଠାରୁ ଭୁବନେଶ୍ୱରର ଚକ୍ଷୁପାଣି ଦୀକ୍ଷିତ ହୋଇ ଥିଲେହେଁ ମୋ ସହ ବିଶେଷ ଯୋଗାଯୋଗ ରଖିନଥାଏ । ମୋର ଅନ୍ଧତ୍ୱ ବ୍ୟାଧି ଗୁରୁ ସେବାରେ ଭାଗୀ ହେବା ପାଇଁ ତାକୁ ଏକ ସୁଯୋଗ ଦେଲା । ମା'ଙ୍କଦ୍ୱାରା ତା ପାଖକୁ ପତ୍ର ଲେଖାଇଲି, କାର୍ତ୍ତିକମାସ ବେଳକୁ ସେ ପ୍ରଥମଥର ଆଶ୍ରମଠାରେ ଆସି ପହଞ୍ଚିଲା । ମୋର ଅବସ୍ଥା ବିବେଚନା କରି ମୋତେ ସଙ୍ଗରେ ନେଇ କଟକ ଫେରିଲା । କଟକ ବଡ଼ ଡ଼ାକ୍ତର ଖାନାରେ ଡ଼ାଃ ରାଜଗୁରୁ ମୋର ଚକ୍ଷୁ ପରୀକ୍ଷା କରି ସଫଳ ଅସ୍ତ୍ରୋପଚାର କଲେ । କିଛିଦିନ ମଧ୍ୟରେ ଚଷମା ବ୍ୟବହାର କରି ମୁଁ ଗୋଟିଏ ଆଖିର ଦୃଷ୍ଟିଶକ୍ତି ଫେରି ପାଇଲି । ପରବର୍ଷ ପୁଣି ଅନ୍ୟ ଆଖିଟିରେ ଅସ୍ତ୍ରୋପଚାର କରାଗଲା । ଏଥରକ ମଧ୍ୟ ଅସ୍ତ୍ରଚିକିତ୍ସା ବିଶେଷ ସନ୍ତୋଷଜନକ ହେବାରୁ ମୋ ଉଭୟ ଚକ୍ଷୁ ଚଷମା ମାଧ୍ୟମରେ ବାହାର ଜଗତକୁ ଭଲଭାବେ ଦେଖିବା ପାଇଁ ଶକ୍ତି ଫେରି ପାଇଲେ । ଏ ଉଭୟ ଚିକିତ୍ସାକାଳୀ ଡ଼ାକ୍ତର ମୋର ପ୍ରିୟ ଶିଷ୍ୟ (କଟକ ବଡ଼ ଡାକ୍ତରଖାନାର ଅଭ୍ୟର୍ଥନାକାରିଣୀ) ସ୍ୱର୍ଣ୍ଣ, ଭକ୍ତ ଶ୍ରୀ ଉପେନ୍ଦ୍ର ସାହୁ, ଶିଷ୍ୟ ଶ୍ରୀ ହାଡ଼ୁ ସାହୁ, ଶ୍ରୀ ପ୍ରସନ୍ନ ବଡ଼ଜେନା ଓ ଅନ୍ୟାନ୍ୟଙ୍କର ଅକୃତ୍ରିମ ସେବା ସତ୍ୟ ଉଲ୍ଲେଖଯୋଗ୍ୟ । ସମସ୍ତେ ଶ୍ରୀଶ୍ରୀ ଗୁରୁ କୃପାଶୀର୍ବାଦ ଲାଭ କରନ୍ତୁ, ଏଇ ମୋର କାମନା ।

## ଶ୍ରୀ ଆନନ୍ଦମୟୀ ସରସ୍ୱତୀ :

ମା'ଙ୍କର ଆଶୀର୍ବାଦ ବଳରେ ମୁଁ ଆରୋଗ୍ୟ ଲାଭ କଲି କିନ୍ତୁ ତାଙ୍କର କନିଷ୍ଠ ଅନ୍ୟ ସନ୍ତାନଟିର ମସ୍ତିଷ୍କ ବିକାର ଉପଶମ ହେବା ପରିବର୍ତ୍ତେ

ବନକୁ ବନ ବଢ଼ିବାକୁ ଲାଗିଲା । ମା'ଙ୍କ ସ୍ୱାମୀ ଆସିଲେ । ଧନୁର ଚିକିତ୍ସା ଉଦ୍ଦେଶ୍ୟରେ ଆମେମାନେ ଏକ ସଙ୍ଗେ ଭୁବନେଶ୍ୱର ଗଲୁ । ଡ଼ା: ପାର୍ଥ ଗୁପ୍ତଙ୍କ ସଙ୍ଗେ ପରାମର୍ଶ କରାଗଲା । କଟକରେ ରଖି ଚିକିତ୍ସା କରିବା ଅସୁବିଧାଜନକ ମନେହେବାରୁ ରାଞ୍ଚିକୁ ନେଇ ଚିକିତ୍ସାର ବନ୍ଦୋବସ୍ତ ହେଲା । ମା ନିଜ ଭାଇଙ୍କ ଘରେ ଯାଇ ରହିଲେ । ରାଞ୍ଚିରୁ ଧନୁ ଫେରିଲା, କିନ୍ତୁ ତାର ବିକୃତ ଦୋଷ ସମ୍ପୂର୍ଣ୍ଣ ଦୂର ହେଲନାହିଁ । ମା ଧନୁ ସଙ୍ଗେ ପୁଣି ଆଶ୍ରମକୁ ଆସିଲେ । ଏହିକିଛିଦିନ ପରେ ଘଟଣାଚକ୍ରର ଆବର୍ତ୍ତରେ ଧନୁଠାରୁ ମା'ଙ୍କୁ କିଛିଦିନ ଅଲଗା ରଖିବା ସଙ୍ଗତ ମନେ କରି ତାଙ୍କୁ ଭୁବନେଶ୍ୱରର ଶିଷ୍ୟ ଅଭିମନ୍ୟୁ ପାଖକୁ ପଠାଇ ଦେଲି । ମା ପ୍ରାୟ ତିନି ଚାରିମାସ ଧରି ଅଭିମନ୍ୟୁ ଘରେ ରହିଲେ । ଏହି ଅବସ୍ଥାରେ ମା'ଙ୍କ ପ୍ରତି ଅଭିମନ୍ୟୁର ଅକୃତ୍ରିମ ଶ୍ରଦ୍ଧା ଓ ଯତ୍ନ ବିଶେଷ ପ୍ରଶଂସନୀୟ ।

ଭୁବନେଶ୍ୱରଠାରୁ ଫେରି ଆସି ମା ମୋଠାରେ ସନ୍ନ୍ୟାସ ପ୍ରାର୍ଥୀ ହେଲେ । ବିଗତ କେତେବର୍ଷର ଦୁଃଖ ନିର୍ଯାତନା ମଧ୍ୟରେ ସଂସାରର ମୋହ ନଷ୍ଟ ହୋଇ ସନ୍ନ୍ୟାସାଶ୍ରମରେ ପ୍ରବେଶ କରିବା ପାଇଁ ଧାରାବାହିକ ଭାବେ ତାଙ୍କର ଚିତ୍ତବୃତ୍ତି ବହିଥିଲା । ତଥାପି ସ୍ୱାମୀ ଓ ପୁତ୍ରଙ୍କ ପ୍ରତି ଯେଉଁ ମମତାର କଥଂଚିତ ଅବଶେଷ ଥିଲା ତାକୁ ସମୂଳେ ଛିନ୍ନ କରି ସନ୍ନ୍ୟାସାଶ୍ରମରେ ପ୍ରବେଶ କରିବାକୁ ସେ ବଦ୍ଧପରିକର ହେଲେ । ୧୯୬୧ ମସିହା ଦୁର୍ଗାପୂଜା ବେଳେ ମା'ଙ୍କୁ ସନ୍ନ୍ୟାସ ଦୀକ୍ଷା ଦେଇ ତାଙ୍କ ସନ୍ନ୍ୟାସ ନାମ ରଖିଲି ଆନନ୍ଦମୟୀ ସରସ୍ୱତୀ । ସନ୍ନ୍ୟାସାଶ୍ରମରେ ପ୍ରବେଶ କଲା ପରେ ମା ସମ୍ପୂର୍ଣ୍ଣ ଅଧୀନା ହେଲେ । ତାଙ୍କ ସ୍ୱାମୀ ପଠାଉଥିବା ଅର୍ଥ ସାହାଯ୍ୟ ଆଉ ଗୃହୀତ ହେଲନାହିଁ । ଉଭୟେ ଉଭୟଙ୍କ ବନ୍ଧନରୁ ସବୁଦିନ ପାଇଁ ମୁକ୍ତ ହୋଇଗଲେ ।

## ନୂତନ ରୂପ

ଏଥର ମା'ଙ୍କର ଏକ ନୂତନ ସ୍ୱରୂପ ପ୍ରକାଶ ପାଇଲା । ପ୍ରଥମ ପର୍ଯ୍ୟାୟରେ ସେ ଥିଲେ ମୋର ଭକ୍ତ, ପରେ ମୋର ସେବିକା, ପାଳୟିତ୍ରୀ

ଏବଂ ଶେଷରେ ସେ ହେଲେ ମୋର ସନ୍ନ୍ୟାସିନୀ ଶିଷ୍ୟା । କିନ୍ତୁ ଏହି ଶିଷ୍ୟାଙ୍କ ଦ୍ୱାରା ମୋଠାରୁ ମଧ୍ୟ ତାଙ୍କର ସମସ୍ତ ବନ୍ଧନ ଛିନ୍ନ ହେଲା । ଉଭୟେ ନାରାୟଣ ସ୍ୱରୂପରେ, ବ୍ରହ୍ମସ୍ୱରୂପରେ ପ୍ରତିଷ୍ଠିତ ହେଲୁ । ତଥାପି ମା'ଙ୍କୁ ବାଦ ଦେଇ ମୁହୂର୍ତ୍ତକ ପାଇଁ ମଧ୍ୟ ଏହି କ୍ଷୁଦ୍ର ଆଶ୍ରମଟିର ଅବସ୍ଥିତି ମୁଁ ଚିନ୍ତା କରିପାରେ ନା । ଆଶ୍ରମର ପ୍ରତିଟି ବସ୍ତୁ ପାଇଁ ତାଙ୍କର ସେହି ସଶ୍ରଦ୍ଧ ସ୍ନେହ ଏଣିକି ଏକ ଦିବ୍ୟ ଆବରଣରେ ରୂପାନ୍ତରିତ ହୋଇ ଉଠିଛି । ଆଶ୍ରମର ଆୟବ୍ୟୟ, ହାନି ଲାଭ ସେ ସେପରି କିଛି ଜାଣନ୍ତି ନାହିଁ; ଅଥଚ ମୋ ସାଙ୍ଗକୁ ଆଜି ଦୁଇ ତିନି ମୂର୍ତ୍ତି ସାଧୁ ଓ ଅନେକ ସେବକ, ଅଭ୍ୟାଗତ, ଶିଷ୍ୟ ଓ ଭକ୍ତ ତାଙ୍କରି ଅନୁଗ୍ରହରୁ ଅମୃତୋପମ ପ୍ରସାଦ ଲାଭ କରୁଛନ୍ତି । ମା ସ୍ୱରୂପତଃ ସନ୍ନ୍ୟାସିନୀ କିନ୍ତୁ ସ୍ଥୂଳ ଭାବରେ କରୁଣାମୟୀ ଅନ୍ନପୂର୍ଣ୍ଣା । ସଂସାରକୁ ଆଶ୍ରୟ କରି ଗୋଟିଏ ପାଗଳ ସନ୍ତାନର ମୋହ ତାଙ୍କର ସମୂଳେ ଛିନ୍ନ ହେଲା, କିନ୍ତୁ ଆଶ୍ରମାନ୍ତେବାସୀ ସାଧୁ, ବ୍ରହ୍ମଚାରୀ, ଅତିଥି, ଅଭ୍ୟାଗତଙ୍କ ସଙ୍ଗେ ମୋର ଶତାଧିକ ଶିଷ୍ୟଙ୍କର ମାତୃତ୍ୱର ସେ ଅଧିକାରିଣୀ ହେଲେ । ତଦବଧି ତାଙ୍କ ପାଦରେ ଅବନତ ହୋଇ ସମସ୍ତେ ତାଙ୍କର ଆଶୀର୍ବାଦ ଲାଭ କରି ଆସିଛନ୍ତି । ଅନ୍ୟ ପରମହଂସ ମା'ଙ୍କର କୃପା ବିଭୂତି ଜୀବନର ଛନ୍ଦେ ଛନ୍ଦେ ଅନୁଭବ କରି ମୁଁ କୃତାର୍ଥ ହୋଇପାରିଛି । ମୁଁ ତାଙ୍କୁ ଭୁଲିଯାଉଥିଲେ ମଧ୍ୟ ସେ ମୋତେ କ୍ଷଣକ ପାଇଁ ଭୁଲି ନାହାନ୍ତି—ଜୀବନର ଚରମ ପର୍ଯ୍ୟାୟରେ ପହଞ୍ଚି ମୋର ଏହି ସିଦ୍ଧାନ୍ତ, ସୁଦୃଢ଼ ହୋଇପାରିଛି । ଯଦି ମୋପରି ଆଉ କେହି ନିଜ ଜୀବନରେ ମାତୃବିୟୋଗଜନିତ ବିଡ଼ମ୍ବନା ଭୋଗିଛନ୍ତି ସେମାନଙ୍କ ପାଇଁ ମୋ ଜୀବନକଥାରୁ କିଞ୍ଚିତ ଆଲୋକ ରେଖା ମିଳିପାରିଲେ ମୋର ଏହି ଉଦ୍ୟମ ସାର୍ଥକ ହେଲା ବୋଲି ମନେ କରିବି ।



# ଅଷ୍ଟାଦଶ ଅଧ୍ୟାୟ

## ଶ୍ରେୟ-ସ୍ମୃତି

### ପ୍ରବାହର ମାଧ୍ୟମ

ମଦୀୟ ବ୍ରହ୍ମଚର୍ଯ୍ୟ ଦୀକ୍ଷାଦାତା ଗୁରୁଦେବ ମହାସମାଧି ଲାଭ କରିବାର କିଛି କାଳ ପୂର୍ବେ ଶେଷଥର ପାଇଁ ଝଡ଼ୁକୁସମା ଆଶ୍ରମକୁ ସ୍ୱାଗତ କରିଥିଲେ । ଏହି ଅବସରରେ ଯେଉଁ କେତେଜଣ ଭାଗ୍ୟବାନ ଯୁବକଙ୍କୁ ଶ୍ରୀ ଶ୍ରୀ ଠାକୁର ସ୍ୱୟଂ କୃପାକରି ଦୀକ୍ଷା ପ୍ରଦାନ କରିଥିଲେ ତା ଭିତରୁ କିଛି ଅନିଚ୍ଛା, କିଛି ଆଶଙ୍କା, କିଛି ଦୁର୍ବଳତା ଅଥଚ କିଛି ଜିଜ୍ଞାସା ମଧ୍ୟରେ ଜୋର ପୂର୍ବକ ମୋତେ ବ୍ରହ୍ମଚର୍ଯ୍ୟ ମିଳିଥିଲା । ଏହି ଅହୈତୁକୀ ଗୁରୁକୃପା ପୂର୍ବ ଜନ୍ମର କେତେ ପୁଞ୍ଜୀଭୂତ ପୁଣ୍ୟର ପ୍ରଭାବ ଆକର୍ଷଣ କରି ପାରିଥିଲା ଏବଂ କେଉଁ ସୁଦୂରପ୍ରସାରୀ ଇଂଗିତ ଏହା ବହନ କରିଥିଲା ତାହାର କଥଞ୍ଚିତ୍ ଆଭାସ ଏବେ ମିଳିଲାଣି ବୋଲି କହିବାକୁ ହେବ । କେଉଁ ପ୍ରାଚୀନ ଋଷି ପରମ୍ପରାରେ ଆଗତ ରାଜଯୋଗ-କ୍ରିୟାଭ୍ୟନ୍ତରସ୍ଥ ଅଙ୍କୁଶ ପ୍ରାପ୍ତ ସୂତ୍ର ମୋ ମାଧ୍ୟମରେ ଭବିଷ୍ୟତକୁ ଅଖଣ୍ଡିତ ଭାବେ ପ୍ରବାହିତ ହେବାକୁ ଗଲା । ମୋର ଆମାର୍ଜ୍ଜିତ କ୍ଷୁଦ୍ର ବ୍ୟକ୍ତିତ୍ୱ-ରୂପୀ ମାଧ୍ୟମକୁ ଉପଯୁକ୍ତ କରିବା ପାଇଁ ସ୍ତରେ ସ୍ତରେ ମୁଁ ବିଭିନ୍ନ ପରଶ-ମଣିଙ୍କର ସ୍ପର୍ଶ ଲାଭ କଲି—ପ୍ରଥମେ ମୋ ମାମୁଁଙ୍କର ସହାନୁଭୂତି ଏବଂ ଦୂରଦୃଷ୍ଟି ମନକୁ ଆସେ, ପ୍ରଥମ ଜୀବନରେ ତାଙ୍କର ପଦେ କଥା "ଆମ ପିଲାଦ୍ୱାରା ମହତ୍ କର୍ମ ସାଧିତ ହେବ" ମୋ ମନକୁ ଗଭୀର ଭାବେ ପ୍ରଭାବିତ କଲା । କିଏ ଭଲ କାମ ଓ କିଏ ମନ୍ଦ କାମ, ସାଧୁମାନେ କି କାମ କରନ୍ତି

ଏଇ ସମସ୍ତ ସେତେବେଳେ ମୋ ଚେତ୍ନାକୁ ଆଚ୍ଛନ୍ନ କରି ରଖିଲା । ଏହା ଫଳରେ ମୁଁ ସାଧୁଙ୍କ ସଙ୍ଗ ଲାଭ କଲି ଓ ମୋର ଗୁରୁଦେବ ନିଗମାନନ୍ଦ ପରମହଂସଙ୍କ ବାଂଛିତ ସ୍ୱାମୀ ଚିଦାନନ୍ଦଜୀ, ମୋର ମାଈଁ, ନନ୍ଦକ୍ଷେପା (ଉଭୟ ବାଲ୍ୟାବସ୍ଥା ଓ ପରବର୍ତ୍ତୀ ସାଧକ ଜୀବନରେ ତାଙ୍କର ପ୍ରଭାବ ଓ ସାହାଯ୍ୟ ଅବିସ୍ମରଣୀୟ) ଓ ଶେଷରେ ମୋର ସନ୍ନ୍ୟାସ ଦୀକ୍ଷାଦାତା ଗୁରୁଦେବ ସ୍ୱାମୀ ପ୍ରଜ୍ଞାନନ୍ଦଜୀଙ୍କ କୃପାଶୀର୍ବାଦ ମୋର ଜୀବନର ପରିପୂର୍ଣ୍ଣତା ସଂପାଦନ କଲା । ଅନ୍ୟଥା, ଚରମ ଅବସ୍ଥାରେ ବିଗତମୋହ ପାର୍ଥ ଧନୁର୍ଦ୍ଧରଙ୍କର ସ୍ୱୀକାରୋକ୍ତି—

"ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ପ୍ରସାଦାତ୍ ମୟାଚ୍ୟୁତ
ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ ।"

ମୋ ନିଜ ଜୀବନର ହିଁ ଅନୁଭୂତ ସତ୍ୟସଙ୍କଳ୍ପ ବୋଲି ପ୍ରତୀତ ହୁଅନ୍ତା ନାହିଁ ।

## ସଦ୍‌ଗତିର ସୁଯୋଗ

ପୁନଶ୍ଚ, ଗତ କେତେ ବର୍ଷ ମଧ୍ୟରେ, ବଙ୍ଗ, ଓଡ଼ିଶା ତଥା ଆନ୍ଧ୍ର ପ୍ରଦେଶର ବିଭିନ୍ନ ସ୍ଥାନରେ ଭକ୍ତିମାନ୍ ସାଧନପ୍ରେମୀ ଯୁବକ ଓ ମା ମୋଠାରୁ ଦୀକ୍ଷା ଗ୍ରହଣ କରି ସାପ୍ତାହିକ ସଂଘାନୁଷ୍ଠାନରେ ନିୟମିତ ଗୁରୁପୂଜା, ସ୍ତୋତ୍ର ଓ ସଦ୍‌ଗ୍ରନ୍ଥ ପାଠରୁ ପାରମାର୍ଥିକ ଆନନ୍ଦର ଅଧିକାରୀ ହୋଇପାରୁଛନ୍ତି— ଅଧିକନ୍ତୁ ୧୯୭୫ ଠାରୁ ସଦ୍‌ଗୁରୁ ଦେବଙ୍କ ଜନ୍ମୋତ୍ସବ ପାଳନ ଅବସରରେ ସମସ୍ତ ଶିଷ୍ୟ ଭକ୍ତ ଏକତ୍ରିତ ହୋଇ ସ୍କୁଲ ଭବନରେ ଗୁରୁପାଦପଦ୍ମ ପୂଜା ତଥା ଭଜନ କୀର୍ତ୍ତନାଦି ଅନୁଷ୍ଠାନ ଦ୍ୱାରା ଆଧ୍ୟାତ୍ମିକ କଲ୍ୟାଣ ଲାଭ କରୁଅଛନ୍ତି ।

ଆଶ୍ରମ ପ୍ରତିଷ୍ଠା ପରଠାରୁ ଖଡ଼ଗ୍ରସମା ଆଶ୍ରମର ବିଦ୍ୟାର୍ଥୀ ତଥା ବ୍ରହ୍ମଚାରୀ (ମୋର ପୂର୍ବପରିଚିତ) ଗୁରୁଦାସ ମୋ ସହ ଯୋଗାଯୋଗ ରକ୍ଷା କରି ସାଧନ ଭଜନରେ ପ୍ରବୃତ୍ତ ଥିଲେ । ତାଙ୍କର ସ୍ୱଭାବସୁଲଭ ସରଳତା, ତ୍ୟାଗ, ଗୁରୁଗତପ୍ରାଣତା ତଥା ଶାସ୍ତ୍ରଜ୍ଞାନ ଦୃଷ୍ଟେ ୧୯୭୩ ମସିହା ଦୁର୍ଗା

ପୂଜାବସରରେ ବୈଦିକ ରୀତି ଅନୁଯାୟୀ ମସ୍ତକ ମୁଣ୍ଡନ, ପିତୃଶ୍ରାଦ୍ଧ ଓ ବିରଜା ହୋମାନୁଷ୍ଠାନ ପୂର୍ବକ ମହାବାକ୍ୟ ଶ୍ରବଣ କରାଇ ତାଙ୍କୁ ସନ୍ନ୍ୟାସାଶ୍ରମ ଭୁକ୍ତ କଲେ । ତାଙ୍କର ସନ୍ନ୍ୟାସ ନାମ ରଖାଗଲା ବିରଜାନନ୍ଦ ସରସ୍ୱତୀ । ବର୍ଷାଧିକ କାଳ ଭାରତ ପରିବ୍ରାଜନ ଓ ବେଦାଧ୍ୟୟନରେ ବ୍ୟାପୃତ ହେବା ପରେ ଇଦାନୀଂ ସ୍ୱାମୀ ବିରଜାନନ୍ଦ ସ୍ୱାମୀ ସଦାନନ୍ଦ ପ୍ରତିଷ୍ଠିତ ଗ୍ରୈଟବଡ଼ୁଆ ଆଶ୍ରମର ଉପାଧ୍ୟକ୍ଷ ରୂପେ ଆଶ୍ରମ ପରିଚାଳନା ଓ ସାଧନ ଭଜନରେ ଲିପ୍ତ ରହିଛନ୍ତି ।

ପରବର୍ତ୍ତୀ ଅକ୍ଷୟ ତୃତୀୟା ଅବସରରେ ଶ୍ରୀମତ୍ କୁମୁଦ ବ୍ରହ୍ମଚାରୀ ମୋଠାରୁ ସନ୍ୟାସ ଦୀକ୍ଷା ଲଭ କରନ୍ତି । ତାଙ୍କର ସନ୍ୟାସ ନାମ ରଖାଯାଏ ସ୍ୱାମୀ ଦୟାନନ୍ଦ ସରସ୍ୱତୀ । ୧୯୬୭ ମସିହାରେ ମେଦିନୀପୁର ଗ୍ରୈଟବଡ଼ୁଆ ଆଶ୍ରମସ୍ଥ ଶ୍ରୀ ଗୋବିନ୍ଦ ବ୍ରହ୍ମଚାରୀ ମୋଠାରୁ ସନ୍ୟାସ ଦୀକ୍ଷା ଗ୍ରହଣ କରି ଶ୍ରୀ ଗମ୍ଭୀରାନନ୍ଦ ସରସ୍ୱତୀ ନାମରେ ପରିଚିତ ହୁଅନ୍ତି ।

ଆଶ୍ରମର ବ୍ରହ୍ମଚାରୀ ସେବକ ଭାବେ ବ୍ରହ୍ମଚାରୀ ଫଲ୍ଗୁନି ଚୈତନ୍ୟ ୧୯୬୫ ମସିହାରୁ ଯୋଗ ଦେଇଥିଲେହେଁ ପ୍ରଜ୍ଞାନନ୍ଦ ମହାରାଜଙ୍କ ଶିଷ୍ୟ ଭାବରେ ସେ ମୋର ସତୀର୍ଥ । ସ୍ୱାମୀ ପ୍ରଜ୍ଞାନନ୍ଦଜୀଙ୍କ ଜୀବିତାବସ୍ଥାରେ ତାଙ୍କର ଐକାନ୍ତିକ ସେବା ଓ ପରିଚର୍ଯ୍ୟା ଦ୍ୱାରା ସେ ଗୁରୁଦେବଙ୍କର ଅପାର ସ୍ନେହ ଓ କରୁଣା ଭାଜନ ହୋଇପାରିଛନ୍ତି ।

ଆଶ୍ରମ ପ୍ରତିଷ୍ଠାରମ୍ଭରୁ ପ୍ରତ୍ୟେକ ବର୍ଷ ସାରସ୍ୱତ ମଠର ଆଦର୍ଶ ସ୍ମୃତି ତଥା ଉଦ୍ଦେଶ୍ୟ ରକ୍ଷାଲାଗି ଅକ୍ଷୟ ତୃତୀୟା ଦିନ ମଠ ପ୍ରତିଷ୍ଠାର ସ୍ମୃତି ଉତ୍ସବ ଏବଂ ଶ୍ରାବଣ ପୂର୍ଣ୍ଣିମା ଦିନ ଶ୍ରୀ ଶ୍ରୀ ଠାକୁରଙ୍କ ଜନ୍ମୋତ୍ସବ ଯଥାବିଧି ପାଳିତ ହୋଇ ଆସୁଅଛି । ଏହି ଉଭୟ ଉତ୍ସବ ଉପଲକ୍ଷେ ସ୍ଥାନୀୟ ତଥା ବହିରାଗତ ବହୁ ସଂଖ୍ୟକ ଶିଷ୍ୟ ଓ ଭକ୍ତଙ୍କର ସମାଗମ ଆଶ୍ରମ ପରିବେଶକୁ ଦିବ୍ୟ ଆନନ୍ଦ ଧାମରେ ପରିଣତ କରୁଅଛି । ଶ୍ରୀ ଶ୍ରୀ ଠାକୁରଙ୍କ ଆସନ ସମ୍ମୁଖରେ ସାରସ୍ୱତ ମଠାଶ୍ରମ ପ୍ରଚଳିତ ନିୟମାନୁଯାୟୀ ପ୍ରଭାତୀ କୀର୍ତ୍ତନ, ସନ୍ଧ୍ୟା ବନ୍ଦନା, ଆରତି ଓ ସ୍ତୋତ୍ର ପାଠ ଇତ୍ୟାଦି ବ୍ରହ୍ମଚାରୀ ସେବକଙ୍କ ଦ୍ୱାରା ପ୍ରତ୍ୟହ ଅନୁଷ୍ଠିତ ହୋଇ

ଆସୁଅଛୁ । ଏତଦ୍‌ବ୍ୟତୀତ, ଆଶ୍ରମ ସଲଗ୍ନ ପ୍ରାୟ ଅର୍ଦ୍ଧ ଏକର ପରିମିତ ଜମିରେ କୃଷିକର୍ମ ଓ ଗୋସେବା ଇତ୍ୟାଦି ବ୍ରହ୍ମଚାରୀମାନେ ନିର୍ବାହ କରି ଆସୁଛନ୍ତି ।

## କଲ୍ୟାଣ କାମନା

ଏହିପରି ଭାବେ ଶ୍ରୀ ଶ୍ରୀ ଗୁରୁ ପରମେଶ୍ୱରଙ୍କର ଶାଶ୍ୱତୀ ଜଗଦ୍ଧିତ-କର ଇଚ୍ଛାର ରୂପାୟନ ପାଇଁ ଗତ ପ୍ରାୟ ଦଶବର୍ଷ ଧରି ମୁଁ ଯଥାସମ୍ଭବ ଉଦ୍ୟମ ଚଳାଇ ଆସିଛି । ସନାତନ କାଳରୁ ଗୁରୁପରମ୍ପରା ଲବ୍ଧ ସାଧନ ପ୍ରଣାଳୀ ଶିକ୍ଷା କରିବା ନିମିତ୍ତ ଯଦି କେହି ଜିଜ୍ଞାସୁ ଭକ୍ତ ମୋ ପାଖରେ ଉପସ୍ଥିତ ହୁଅନ୍ତି, ତେବେ ତାଙ୍କର ଅଧିକାରିତ୍ୱ ବିବେଚନା କରି ସହଜ ଲୟ ଯୋଗର କ୍ରିୟା ଅନୁଷ୍ଠାନ ଦ୍ୱାରା ଗୃହସ୍ଥାଶ୍ରମୀଙ୍କ ପକ୍ଷରେ କିପରି ଶାନ୍ତିପୂର୍ଣ୍ଣ ଜୀବନ ଯାପନ କରିହେବ ସେହି ଉପଦେଶ ପ୍ରଦାନ କରିବା ପାଇଁ ମୁଁ ସତତ ପ୍ରସ୍ତୁତ ହୋଇ ରହିଛି । ସାଂପ୍ରତିକ ଜଡ଼ ସଭ୍ୟତା ପ୍ରଭାବରେ ପୀଡ଼ିତ କଳି କଳୁଷ କଳୁଷିତ ଜୀବମାନେକେ ଏହି ସୁଯୋଗରେ ସଦ୍‌ଗୁରୁ ଆଶ୍ରିତ ହୋଇ ଜୀବନର ଶ୍ରେୟ ସମ୍ପାଦନ କରନ୍ତୁ, ଏତିକି କାମନା ।



ମୁଦ୍ରଣ :
ସିଦ୍ଧାର୍ଥ ଶଙ୍କର ପ୍ରେସ୍,
ବ୍ରହ୍ମପୁର-୯ (ଗଞ୍ଜାମ)

# ଦ୍ୱିତୀୟ ସଂସ୍କରଣର ଭୂମିକା

ପରିବର୍ଦ୍ଧିତ ସଂସ୍କରଣର ଆମୂଳ ସଂଶୋଧନ ଓ କେତେକ ପ୍ରାସଙ୍ଗିକ ପରିବର୍ତ୍ତନ କରାଯାଇ ଏହି ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ଏହି ସଂସ୍କରଣରେ ଅଧ୍ୟାୟଗୁଡ଼ିକର ନୂତନ ନାମକରଣ କରାଯାଇ ଅଛି । ଆଶାକରୁ ପୂର୍ବଭଳି, ପାଠକପାଠିକାଗଣ ଏହି ନୂତନ ସଂସ୍କରଣରୁ ସ୍ପଷ୍ଟ ଆଧ୍ୟାତ୍ମିକ ପ୍ରେରଣା ଲାଭ କରି ପାରିବେ ।

ବ୍ରହ୍ମପୁର ସିଦ୍ଧାର୍ଥ ଶଙ୍କର ପ୍ରେସର ପରିଚାଳକ ମୋର ପ୍ରିୟ ଶିଷ୍ୟ ଶ୍ରୀ ହରିକୃଷ୍ଣ ପାଢ଼ୀ ଓ ତାହାଙ୍କ ପୁତ୍ର ଡ଼ାକ୍ତର ତାରିଚରଣ ପାଢ଼ୀ ସ୍ୱେଚ୍ଛାରେ ସମସ୍ତ ବ୍ୟୟଭାର ବହନ କରି ଏହି ନୂତନ ଦ୍ୱିତୀୟ ସଂସ୍କରଣଟିକୁ ମୁଦ୍ରିତ କରି ଦେଇଥିବାରୁ ତାଙ୍କ ଉପରେ କୃପାମୟ ସଦ୍‌ଗୁରୁଙ୍କର ଶୁଭାଶୀର୍ବାଦ ବର୍ଷିତ ହେଉ, ଏତିକି ପ୍ରାର୍ଥନା । ଇତି ।

—ପ୍ରକାଶକ